

କାଳଜୟୀ ପ୍ରତିଭା

# କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ

ଡକ୍ଟର ପ୍ରେମାନନ୍ଦ ମହାପାତ୍ର

# କାଳଜୟୀ ପ୍ରତିଭା
# କବିସମ୍ରାଟ ଉପେନ୍ଦ୍ର ଭଞ୍ଜ

ଡକ୍ଟର ପ୍ରେମାନନ୍ଦ ମହାପାତ୍ର
ପ୍ରାଧ୍ୟାପକ ଓଡ଼ିଆ ବିଭାଗ,
ରେଭେନ୍‌ସା ବିଶ୍ୱବିଦ୍ୟାଳୟ, କଟକ



ଚିନ୍ମୟ ପ୍ରକାଶନ
ବିନୋଦ ବିହାରୀ, କଟକ - ୨

କାଳଜୟୀ ପ୍ରତିଭା

# କବିସମ୍ରାଟ ଉପେନ୍ଦ୍ର ଭଞ୍ଜ

ଲେଖକ :
**ଡକ୍ଟର ପ୍ରେମାନନ୍ଦ ମହାପାତ୍ର**
ଏମ୍.ଏ.,ଏମ୍.ଫିଲ୍.,ପିଏଚ୍.ଡି., O.E.S.(1)
ପ୍ରାଧ୍ୟାପକ, ସ୍ନାତକୋତ୍ତର ଓଡ଼ିଆ ବିଭାଗ,
ରେଭେନ୍‌ସା ବିଶ୍ୱବିଦ୍ୟାଳୟ, କଟକ

ପ୍ରକାଶକ :
**ଚିନ୍ମୟ ପ୍ରକାଶନ**
ବିନୋଦବିହାରୀ, କଟକ-୨

ପ୍ରଥମ ସଂସ୍କରଣ : ୨୦୨୦

ଅକ୍ଷରସଜ୍ଜା :
ମା' ଶାରଳା ଡିଟିପି ସେଣ୍ଟର
ସିଡିଏ, ସେକ୍ଟର-୬, କଟକ

ମୁଦ୍ରଣ :
ମଜ୍‌ଦୁର ପ୍ରିଣ୍ଟର୍ସ
କଟକ

ମୂଲ୍ୟ : ଟ. ୧୯୭/-

KALAJAYI PRATIVA

# KABISAMRAT UPENDRA BHANJA

*Written by :*
**Dr. Premananda Mohapatra**
M.A., M.Phil., Ph.D., O.E.S.(1)
Reader, P.G. Department of Odia,
Ravenshaw University, Cuttack

*Published by :*
**CHINMAYA PRAKASHAN**
Binodbihari, Cuttack-2

*Second Edition :* **2020**

*Laser Typeset :*
**Maa Sarala DTP Centre**
CDA, Sec-6, Cuttack

*Printed at :*
**Majdur Printers**
Cuttack

***Price :* Rs. 197/-**



# ସମର୍ପଣ

ଶ୍ରୀ ଶ୍ରୀ ରଘୁନାଥଜୀଉଙ୍କ ଚରଣକମଳରେ ସମର୍ପିତ

## କବିସମ୍ରାଟ ଉପେନ୍ଦ୍ର ଭଞ୍ଜ

ଗାଏ ତୁମ୍ଭ ଗୀତ ସଭାରେ ପଣ୍ଡିତ
ପଥେ ପାନ୍ଥ ହୃଷ୍ଟମନା
ବିଲେ ବୋଲେ ଚଷା ଅନ୍ତଃପୁରେ ଯୋଷା
ନୃତ୍ୟରଙ୍ଗେ ବାରାଙ୍ଗନା ।

–ପଣ୍ଡିତ ଗୋପବନ୍ଧୁ ଦାସ

# ଉପକ୍ରମଣିକା

କବିସମ୍ରାଟ ଉପେନ୍ଦ୍ର ଭଞ୍ଜ ଓଡ଼ିଶାର କବିମାନଙ୍କ ମଧ୍ୟରେ ଅଗ୍ରଗଣ୍ୟ । ସେ କବିଗୁରୁ । ସଂପ୍ରତି ଓଡ଼ିଶାର ବହୁଚର୍ଚ୍ଚିତ କବିମାନଙ୍କ ମଧ୍ୟରେ ସେ ପ୍ରମୁଖ ସ୍ଥାନ ଅଧିକାର କରନ୍ତି । ଭଞ୍ଜସାହିତ୍ୟ ଓଡ଼ିଆ ସାରସ୍ୱତ ଭଣ୍ଡାରର ପରମ ସମ୍ପଦ । ଭଞ୍ଜ ସାହିତ୍ୟ ଏତେ ଜୀବନଧର୍ମୀ, ବୁଧବୋଧକ ଏବଂ ରସାଳ ଯେ ଏହାର ନିୟମିତ ଚର୍ଚ୍ଚା ଏବେ ମଧ୍ୟ ଓଡ଼ିଶାରେ ଅପ୍ରତିହତ । ବିଭିନ୍ନ ସ୍ଥାନରେ ଭଞ୍ଜଜୟନ୍ତୀ ପାଳନ ଯୋଗୁଁ ଭଞ୍ଜସାହିତ୍ୟ ପ୍ରତି ଲୋକମାନଙ୍କର ଆଗ୍ରହ ଅତୁଟ ରହିଛି । ମୋର ପ୍ରିୟ ଗାଁ ଭଞ୍ଜପୀଠ ମାଳିସାହିରେ ମୁଁ ଜାଣିବାରେ ଦୀର୍ଘ ପଚାଶ ବର୍ଷରୁ ଊର୍ଦ୍ଧ୍ୱ ଦିନ ଧରି ଭଞ୍ଜଜୟନ୍ତୀ ପାଳିତ ହୋଇଆସୁଛି । ପିଲାଦିନରୁ ଭଞ୍ଜଜୟନ୍ତୀପାଳନ ଦେଖି ଉପେନ୍ଦ୍ର ଭଞ୍ଜଙ୍କ ପ୍ରତି ଆଗ୍ରହ ଓ ସମ୍ମାନ ବଢ଼ିବା ସ୍ୱାଭାବିକ କଥା । ତେଣୁ ଉପେନ୍ଦ୍ର ଭଞ୍ଜଙ୍କ ଉପରେ ପୁସ୍ତକଟିଏ ରଚନା କରିବାର ପ୍ରଗାଢ଼ ଆଗ୍ରହ ସୃଷ୍ଟି ହୋଇଥିଲା । ଏହି ପୁସ୍ତକଟି ସେହି ଆଗ୍ରହ ଓ ଅନ୍ୱେଷାର ଅମୃତମୟ ଫଳ । ଉପେନ୍ଦ୍ର ଭଞ୍ଜଙ୍କ କତିପୟ କାବ୍ୟଗ୍ରନ୍ଥ ପଢ଼ି ମୁଁ ବେଶ୍ କାବ୍ୟିକ ଆନନ୍ଦ ଲାଭ କରିଥିଲି । ଉପେନ୍ଦ୍ର ଭଞ୍ଜଙ୍କ ଶ୍ରେଷ୍ଠ କାବ୍ୟଗ୍ରନ୍ଥ 'ବୈଦେହୀଶ ବିଳାସ' ମୋତେ ବେଶି ପରିମାଣରେ ଅଭିଭୂତ କରିଛି ।

ଉପେନ୍ଦ୍ରଭଞ୍ଜଙ୍କ ଜୀବନୀ ଓ ସାହିତ୍ୟ ସମ୍ବଳିତ ପୁସ୍ତକଟି ରଚନା କରିବା ପାଇଁ ମନରେ ପ୍ରଗାଢ଼ ଆଗ୍ରହ ଥିଲା । ମୁଁ ରେଭେନ୍‌ସା ମହାବିଦ୍ୟାଳୟରେ ଅନର୍ସଶ୍ରେଣୀ ଛାତ୍ର ଥିଲାବେଳେ ଡକ୍ଟର ବିଚିତ୍ରାନନ୍ଦ ମହାନ୍ତି ସାର 'ଲାବଣ୍ୟବତୀ' କାବ୍ୟକୁ ସୁନ୍ଦର ଭାବରେ ପଢ଼ାଉଥିଲେ । ସେ ତ ଥିଲେ ଭଞ୍ଜରସିକ ଅଧ୍ୟାପକ । ସେହିପରି ବାଣୀବିହାରରେ ଏମ୍.ଏ. ଶ୍ରେଣୀର ଛାତ୍ର ଥିଲାବେଳେ ମୋର ପୂଜ୍ୟଗୁରୁ ପ୍ରଫେସର ବାସୁଦେବ ସାହୁ 'ବୈଦେହୀଶ ବିଳାସ' କାବ୍ୟକୁ ଯେପରି ପଢ଼ାଉଥିଲେ, ତାହା ଏବେ ବି ଆଖି ଆଗରେ ନାଚିଯାଉଛି । ମୁଁ ଆମ ଗାଁ ମାଳିସାହିରେ ବହୁବାର ଭଞ୍ଜଜୟନ୍ତୀ ଅବସରରେ ଅଧ୍ୟାପକ ହୃଦାନନ୍ଦ ରାୟ, ଅଧ୍ୟାପକ ରଜତକୁମାର କର, ଅଧ୍ୟାପକ ଗୌରୀକୁମାର ବ୍ରହ୍ମା, ଅଧ୍ୟାପକ ନିମାଇଁ ଚରଣ ପଟ୍ଟନାୟକ, ଅଧ୍ୟାପକ ହରିହର ମିଶ୍ର, ଅଧ୍ୟାପକ ପୂର୍ଣ୍ଣଚନ୍ଦ୍ର ମହାପାତ୍ର ବାଗ୍ମୀ ଶରତ କର, ପ୍ରଶାସକ ହରିଶ୍ଚନ୍ଦ୍ର ବେହେରା, ପ୍ରଭାତକୁମାର ନନ୍ଦଙ୍କ ପରି ବହୁ ଭଞ୍ଜ-ବିଶାରଦଙ୍କ ଠାରୁ ଭଞ୍ଜ ସାହିତ୍ୟ ଶୁଣିଥିଲି । ସେମାନେ ଭଞ୍ଜ ସାହିତ୍ୟରୁ ଅମୃତ ଝରାଉଥିଲେ । ସତରେ ଭଞ୍ଜ ସାହିତ୍ୟର ପଟାନ୍ତର ନାହିଁ ।

ବାଣୀପୁତ୍ର ଉପେନ୍ଦ୍ର ଭଞ୍ଜ ଉତ୍କଳୀୟ ସାରସ୍ୱତ ଜଗତରେ ମହାକବି । ତାଙ୍କର ଜୀବନୀ ଓ ସାହିତ୍ୟ ସମ୍ପର୍କରେ ଲେଖିବା ଏକ ଦୁରୂହ ବ୍ୟାପାର । ତଥାପି ଆଗ୍ରହ ଓ ଉପେନ୍ଦ୍ର ଭଞ୍ଜଙ୍କ ପ୍ରତି ପ୍ରବଣତା ହେତୁ ଏହି କାର୍ଯ୍ୟରେ ମୁଁ ମନ ବଳାଇଛି । ଯେଉଁମାନେ ଏହି କାର୍ଯ୍ୟ ପାଇଁ ମୋତେ ବରାବର ପରାମର୍ଶ ଓ ପ୍ରେରଣା ଦେଇଆସିଛନ୍ତି, ସେହି ବିଜ୍ଞଜନଙ୍କୁ ମୋର ପ୍ରଣିପାତ ଜଣାଉଛି ।

ସର୍ବପ୍ରଥମେ ସାହିତ୍ୟାନୁରାଗୀ ଡକ୍ଟର ଅରୁଣ କୁମାର ସାହୁ, ମାନ୍ୟବର ମନ୍ତ୍ରୀ, ଆଇନ ଓ ପଞ୍ଚାୟତିରାଜ ବିଭାଗ, ଓଡ଼ିଶାଙ୍କ ନିକଟରେ ମୁଁ ବିଶେଷ ଭାବରେ କୃତଜ୍ଞ। ତାଙ୍କର ସାହାଯ୍ୟ, ପରାମର୍ଶ ଓ ସଦିଚ୍ଛା ମୋତେ ନୂତନ ଦିଗ୍‌ଦର୍ଶନ ଦେଇଛି।

ମୋର ଶୁଭାନୁଧ୍ୟାୟୀ ବିଜ୍ଞଜନମାନେ ହେଉଛନ୍ତି – ଶ୍ରୀଯୁକ୍ତ ରଘୁନାଥ ରଥ (ବାଲିଗୁଡ଼ା), ଡାକ୍ତର ଶ୍ରୀଯୁକ୍ତ (ପଣ୍ଡିତ) ଅନନ୍ତ ଚରଣ ମିଶ୍ର (ଫୁଲବାଣୀ), ଚାରଣ ଶ୍ରୀଯୁକ୍ତ ରାମକୃଷ୍ଣ ପତି (ବେଲଗୁଣ୍ଠା), ଶ୍ରୀଯୁକ୍ତ ବିକ୍ରମକେଶରୀ ବର୍ମା, ଶ୍ରୀଯୁକ୍ତ ପ୍ରଦୀପ କୁମାର ରଥ, ଶ୍ରୀଯୁକ୍ତ ଲକ୍ଷ୍ମୀନାରାୟଣ ମିଶ୍ର, ଡକ୍ଟର କୃଷ୍ଣକୁମାର ପଟ୍ଟନାୟକ, ପୁରୀ, ପ୍ରଫେସର ଡକ୍ଟର ସୁରେଶ ଚନ୍ଦ୍ର ପଟ୍ଟନାୟକ, ଡକ୍ଟର ପ୍ରଦୀପ କୁମାର ଦାଶ, ଶ୍ରୀଯୁକ୍ତ ଗୋସ୍ୱାମୀ ଗୋଲାମ ଦେବତା, ଶ୍ରୀଯୁକ୍ତ ଆଲୋକ କୁମାର କର, ପ୍ରଫେସର ଡକ୍ଟର ବାଉରୀବନ୍ଧୁ କର, ଡକ୍ଟର ବାବାଜୀ ଚରଣ ପଟ୍ଟନାୟକ, ପ୍ରଫେସର ଡକ୍ଟର ପୂର୍ଣ୍ଣଚନ୍ଦ୍ର ମିଶ୍ର, ପ୍ରଫେସର ଡକ୍ଟର ଉଦୟନାଥ ସାହୁ, ଡକ୍ଟର ପୂର୍ଣ୍ଣଚନ୍ଦ୍ର ମହାନ୍ତି, ଡକ୍ଟର ସିତାଂଶୁ କୁମାର ଦାଶ, ପ୍ରଫେସର ଶ୍ରୀଯୁକ୍ତ ରାଧାମୋହନ ମିଶ୍ର (ଫୁଲବାଣୀ), ପ୍ରଫେସର ଡକ୍ଟର ବାଉରୀବନ୍ଧୁ ସାହୁ, ଅଗ୍ରଜ ପ୍ରତିମ ଡକ୍ଟର ଋଙ୍କାଧର ନାୟକ ।

ଯେ ସବୁଠାରୁ ବେଶି ଖୁସିହେବେ ସେ ହେଉଛନ୍ତି ମୋର ପୂଜ୍ୟନନା ଓ ଶିକ୍ଷକକୁଳର ଗୌରବ ଶ୍ରୀଯୁକ୍ତ ତ୍ରିନାଥ ମହାପାତ୍ର । ତାଙ୍କୁ ଏ ଅବସରରେ ମୋର ପ୍ରଣିପାତ ଜଣାଉଛି ।

ଏହି ପୁସ୍ତକଟିକୁ ଲୋକଲୋଚନକୁ ଆଣିବାପାଇଁ ଯେ ବେଶି ଆଗ୍ରହ ପ୍ରକାଶ କରିଛନ୍ତି, ସେହି ସହୃଦୟ ବ୍ୟକ୍ତି ହେଉଛନ୍ତି ଶ୍ରୀଯୁକ୍ତ ସତ୍ୟନାରାୟଣ ଚୌଧୁରୀ । ଏହି ପୁସ୍ତକଟି ପ୍ରକାଶନ ଭାର ସେ ବିନା ଦ୍ୱିଧାରେ ବହନ କରିଥିବାରୁ ମୁଁ ତାଙ୍କୁ ଯଥେଷ୍ଟ ବଧେଇ ଓ କୃତଜ୍ଞତା ଜଣାଉଛି ।

ପ୍ରଭୁ ମର୍ଯ୍ୟାଦାପୁରୁଷୋତ୍ତମ ଶ୍ରୀରାମଚନ୍ଦ୍ର ସମସ୍ତଙ୍କର ମଙ୍ଗଳବିଧାନ କରନ୍ତୁ । ସମାଜରେ ଶାନ୍ତି, ମୈତ୍ରୀ ଓ ପ୍ରୀତି ପ୍ରତିଷ୍ଠା ହେଉ । ଭଞ୍ଜ ସାହିତ୍ୟର ଆଦର ହେଉ ।

– ଜୟଶ୍ରୀରାମ – ॥ ଇତି ॥

କଟକ — ପ୍ରେମାନନ୍ଦ ମହାପାତ୍ର

ଶ୍ରୀଗୁଣ୍ଡିଚା, ୨୦୧୪

# ସୂଚୀପତ୍ର

| ପରିଚ୍ଛେଦ | ବିଷୟ | ପୃଷ୍ଠା |
|---|---|---|





## ପ୍ରଥମ ପରିଚ୍ଛେଦ

# ଉପେନ୍ଦ୍ର ଭଞ୍ଜଙ୍କ ସାରସ୍ୱତ ଜୀବନୀ

"ଜନ୍ମିରାଜକୁଳେ ବଇଭବ କୋଳେ
ଅତୁଳ ସୁଖ ସଦନେ
ତେଜି ସେ ସମ୍ଭୋଗ ଆଚରିଲ ଯୋଗ
ବୀଣାପାଣି ଆରାଧନେ ।"

(ପଣ୍ଡିତ ଗୋପବନ୍ଧୁ ଦାସ)

ବାଣୀ-ବୀଣା-ବାଦକ କବିସମ୍ରାଟ ଉପେନ୍ଦ୍ର ଭଞ୍ଜ ଓଡ଼ିଆ କାବ୍ୟଯୁଗର ଅନନ୍ୟ ଓ ଅସାଧାରଣ କାବ୍ୟଶିଳ୍ପୀ । ସେ ରୀତି କବି । ରୀତିଯୁଗୀୟ କବିମାନଙ୍କ ମଧ୍ୟରେ ସେ ସର୍ବୋତ୍ତମ, ସର୍ବପ୍ରଧାନ ଓ ଶ୍ରେଷ୍ଠ କାବ୍ୟକାର ଅଟନ୍ତି । ସେ ପୁନଶ୍ଚ ଆଳଙ୍କାରିକ କବି । ସର୍ବୋପରି ସେ ଜୀବନ ଓ ଯୌବନର କବି । ଓଡ଼ିଆ ରୀତିଯୁଗର ସେ ଶ୍ରେଷ୍ଠ କବି । ସେ କବିସମ୍ରାଟ ନିଶ୍ଚୟ । ଏତଦ୍‌ଭିନ୍ନ ସେ ମଧ୍ୟ ହେଉଛନ୍ତି ଶବ୍ଦସମ୍ରାଟ, ସଙ୍ଗୀତସମ୍ରାଟ ଓ ଭାବସମ୍ରାଟ । ଉପେନ୍ଦ୍ର ହେଉଛନ୍ତି ଯଥାର୍ଥରେ କବିଗୁରୁ, ବୀରବର, ମଙ୍ଗରାଜ ଏବଂ ସର୍ବୋପରି ଉତ୍କଳୀୟ ସାରସ୍ୱତ ପରିମଣ୍ଡଳରେ ମହାକବି । ଉପେନ୍ଦ୍ର ଭଞ୍ଜ ଓଡ଼ିଆ ସାହିତ୍ୟ ଆକାଶରେ ପ୍ରଚଣ୍ଡ ମାର୍ତ୍ତଣ୍ଡ ନିଶ୍ଚୟ । ସେ ପୁଣି ଆମ୍ଭମାନଙ୍କର କବି କୁଳଚନ୍ଦ୍ର । ଉତ୍କଳ ଭାରତୀଙ୍କର ସେ ପ୍ରିୟ ବରପୁତ୍ର । ଅଗଣିତ ଓଡ଼ିଆମାନଙ୍କର ହୃଦୟ ସିଂହାସନରେ ଯଦି କେଉଁ କବି ଆସନପାତି ବସିଛନ୍ତି, ସେ ହେଉଛନ୍ତି କବିସମ୍ରାଟ । ଉପେନ୍ଦ୍ରଭଞ୍ଜ ଅସାଧାରଣ ପ୍ରତିଭା ସମ୍ପନ୍ନ କବି । ସେ ନବ ନବ ଉନ୍ମେଷଶାଳିନୀ ପ୍ରଜ୍ଞାର ଅଧିକାରୀ ଥିଲେ । ସଂସ୍କୃତ କାବ୍ୟାଦର୍ଶକୁ ଗ୍ରହଣ କରି ରସାଳ, ସୁମନାସୁଖଦାୟୀ ଭଞ୍ଜୀୟ କାବ୍ୟସଂପଦ ସୃଷ୍ଟିକରି ସେ ଚିରସ୍ମରଣୀୟ ହୋଇଛନ୍ତି । ବିଦଗ୍ଧ କାବ୍ୟାମୋଦୀ, ରସଗ୍ରାହୀ କୋବିଦ ଜନମାନଙ୍କର ମନକୁ ରସାଣିତ କରିବାପାଇଁ ସେ ଦେଇଛନ୍ତି ଦିବ୍ୟପ୍ରେରଣା । ଅପାର କାବ୍ୟ ସଂସାର ସୃଷ୍ଟିକରି କାବ୍ୟକାର ଉପେନ୍ଦ୍ର ପ୍ରଜାପତି ଆସନରେ ଆସୀନ ।

ଭଞ୍ଜ ସାହିତ୍ୟର ପଟାନ୍ତର ନାହିଁ । ଭଞ୍ଜ ସାହିତ୍ୟର ସର୍ବକାଳୀନ ଆବେଦନ ପାଇଁ ଓଡ଼ିଶା ତଥା ଓଡ଼ିଶା ବାହାରେ ଏବଂ ସୁଦୂର ଆମେରିକାରେ ବହୁ ଭଞ୍ଜପ୍ରେମୀ ସୃଷ୍ଟି ହୋଇପାରିଛନ୍ତି । ଉପେନ୍ଦ୍ର ବାସ୍ତବିକ୍ ସର୍ବକାଳୀନ କବି । କାବ୍ୟରେ ପାଣ୍ଡିତ୍ୟର ପ୍ରକର୍ଷ, ଶବ୍ଦ ଓ ଅର୍ଥର ଯଥାଯଥ ବିନ୍ୟାସ, ରସ ଓ ଅଳଙ୍କାରର ପ୍ରୟୋଗ, ବିଷୟ ଚୟନରେ ଯୁଗୀୟ ପ୍ରବଣତା ଏବଂ ସର୍ବୋପରି କାବ୍ୟରେ ମନୋହାରିତା ତଥା ଚମତ୍କାରିତା ସୃଷ୍ଟି କରି କବିଗୁରୁ ଉପେନ୍ଦ୍ର ସମଯୁଗୀୟ ପ୍ରମୁଖ କବି ଦୀନକୃଷ୍ଣ ଦାସ, ଅଭିମନ୍ୟୁ ସାମନ୍ତସିଂହାର, ସଦାନନ୍ଦ କବିସୂର୍ଯ୍ୟବ୍ରହ୍ମା, କବିସୂର୍ଯ୍ୟ ବଳଦେବ ରଥ, ବ୍ରଜନାଥ ବଡ଼ଜେନା, ଯଦୁମଣି ମହାପାତ୍ର ପ୍ରଭୃତିଙ୍କୁ ଅତିକ୍ରମ କରିଯାଇଛନ୍ତି । ଉପେନ୍ଦ୍ର ଥିଲେ ଅପୂର୍ବ ସର୍ଜନଶୀଳ କବି । ତାଙ୍କର କବି ପ୍ରତିଭାର ପଟାନ୍ତର ନାହିଁ । ଯଥାର୍ଥରେ ଉତ୍କଳୀୟ ସାରସ୍ୱତ ଜଗତରେ ଉପେନ୍ଦ୍ର ଏକ ଅମ୍ଳାନ ପ୍ରତିଭା ।

ଉପେନ୍ଦ୍ରଭଞ୍ଜ ଘୁମୁସର ଭଞ୍ଜ ରାଜବଂଶଜ । ଘୁମୁସରର ପ୍ରଖ୍ୟାତ ନରପତି ପ୍ରତାପଧନଞ୍ଜୟ ଭଞ୍ଜଙ୍କର ସେ ପୌତ୍ର ଏବଂ ତଦୀୟ ପୁତ୍ର ନରେଶ ନୀଳକଣ୍ଠ ଭଞ୍ଜଙ୍କର ସେ ଜ୍ୟେଷ୍ଠ ପୁତ୍ର ଥିଲେ । ଉପେନ୍ଦ୍ର ନିଜର ବଂଶ ପରିଚୟ ଦେଇ ଲେଖିଛନ୍ତି –

"ଯେ ବଂଶେ ଇଷ୍ଟ ଦୁର୍ଗାଦେବୀ । ବରହି କୋଷରୁ ସମ୍ଭବି ॥
ମନୁଷ୍ୟ ଏହି ଅଦଭୁତ । ଭଞ୍ଜାନୁଭଞ୍ଜ ନାମ ସତ ॥
ବିଶିଷ୍ଟ ବଶିଷ୍ଠ ପାଳକା । ଶ୍ରୀରାମେ ଦତ୍ତ ରାଜଟୀକା ॥
ସେ କୁଳେ ରାଜା ଧନଞ୍ଜୟ । ସମସ୍ତ ଗୁଣର ନିଳୟ ॥
ଘୁମୁସର ଅଧିପ ପଣେ । ଲୋକେ ବିଖ୍ୟାତ କବି ଗୁଣେ ॥
ତଦ୍‌ବତ ତାହାଙ୍କ ତନୁଜ । ନରେଶ ନୀଳକଣ୍ଠ ଭଞ୍ଜ ॥
ତାହାଙ୍କ ଜ୍ୟେଷ୍ଠ ସୁତ ମୁହିଁ । ଉପେନ୍ଦ୍ର ଭଞ୍ଜ ନାମ ବହି ॥"

(ଲାବଣ୍ୟବତୀ-୧୬ଶ ଛାନ୍ଦ)

କବି ତାଙ୍କର 'ବୈଦେହୀଶ ବିଳାସ' କାବ୍ୟରେ ଲେଖିଛନ୍ତି –

"ବରହୀ ବଂଶେ ଉଭବ ନୃପ ଧନଞ୍ଜୟ
ବିଶିଷ୍ଟେ ଘୁମୁସର ଅଧିପ ଗୁଣାଳୟ ଯେ ।
ବେନି ଅର୍ଥେ ସେ କବି ଗଣେଶ ବୋଲି ଜାଣ
ବନ୍ଦନ ତଦ୍‌ବତ ତାଙ୍କ ନନ୍ଦନ ପ୍ରମାଣ ଯେ ।
ବସୁଧାପତି ସେ ନୀଳକଣ୍ଠ ନାମେ ଖ୍ୟାତ
ବିଧାନରେ ମୁହିଁ ତାହାଙ୍କର ଜ୍ୟେଷ୍ଠ ସୁତ ଯେ ।" (୫୨ ଛାନ୍ଦ)

ସେହି ପରି କବିଗୁରୁ ଉପେନ୍ଦ୍ର 'ରସ ପଞ୍ଚକ' କାବ୍ୟରେ ସ୍ୱୀୟ ରାଜବଂଶର ପରିଚୟ ପ୍ରଦାନ କରିବା ସହିତ ନିଜର କବିତ୍ୱ ଓ ବିଦ୍‌ବତ୍ତା ବର୍ଣ୍ଣନା କରିଛନ୍ତି । କବି ସ୍ୱୟଂ ଲେଖିଛନ୍ତି –

"କଞ୍ଜେଶ ବଂଶ ହୋଇ ପ୍ରକାଶ । କ୍ରମେ ଘୁମୁସରେ ହେଲେ ନରେଶ ॥
କୁନ୍ଦେନ୍ଦୁ କୀର୍ତ୍ତିରଣ ରଣକାନ୍ତି । ରଣେଶ୍ୱର ରଣଭଞ୍ଜ ନୃପତି ॥
କୃଶାନୁତେଜ ତାଙ୍କ ତନୁଜ । କୃତରୁ ପ୍ରାପତ ପ୍ରତାପ ଭଞ୍ଜ ॥
କନିଷ୍ଠ ସୁତ ତାଙ୍କ ଭୁଭୃତ । କବି ଗୋପୀନାଥ ନାମ ବିଦିତ ॥
କବି ନୃପବର ତାଙ୍କ କୁମର । କବି ଧନଞ୍ଜୟ ନାମ ତାଙ୍କର ॥
କାଶ୍ୟପୀକାନ୍ତ ତାହାଙ୍କ ସୁତ । କୃତଜ୍ଞ ନୀଳକଣ୍ଠ ଭଞ୍ଜ ସୁତ ॥
କୁମର ଜ୍ୟେଷ୍ଠ ତାଙ୍କର ଶ୍ରେଷ୍ଠ । କବି ପଣରେ ଅତି ପରିନିଷ୍ଠ ॥
କାବ୍ୟ ନାଟକ ଅଳଙ୍କାର ଯାକ । କୋବିଦେ କେବଳ ବୋଲନ୍ତି ଏକ ॥
କୋଷାଭିଧାନ ସାକ୍ଷାତ ଜନ । କବିତ୍ୱ ଛନ୍ଦବନ୍ଧେ କେ ସମାନ ॥
କଥିତ କୀର୍ତ୍ତି ଗୀତେ ଏ ମତି । କାଳିଦାସ ବାଣୀ ପରାୟ ସ୍ଫୁର୍ତ୍ତି ॥
କଳାପିଙ୍ଗଳ ଶାସ୍ତ୍ରେ ଅନର୍ଗଳ । କେତେ ପ୍ରବନ୍ଧେ ପୂରାଇ ଭୂତଳ ॥
କୃତକେ ଯଶ ଲୋକ ପ୍ରକାଶ । କବି ଗର୍ବ ପର୍ବତକୁ କୁଳିଶ ॥
କରିଣ ଚିତ୍ତେ ପଞ୍ଚବିଧିଗୀତେ । କଳିସାକ୍ଷାତେ ରସିକଙ୍କ ହିତେ ॥
କୁତର୍କୀଭଞ୍ଜ ଉପେନ୍ଦ୍ର ଭଞ୍ଜ । କରେ ଧ୍ୟାନ ତାଙ୍କ ଚରଣ କଞ୍ଜ ।"

(ରସ ପଞ୍ଚକ)

ଉପେନ୍ଦ୍ର ଭଞ୍ଜଙ୍କ ପିତାମହ ପ୍ରତାପ ଧନଞ୍ଜୟ ଭଞ୍ଜ (ଖ୍ରୀ. ୧୬୧୧-୧୭୦୧) ଜଣେ ପ୍ରଜାବତ୍ସଳ ରାଜା ଏବଂ ଉଚ୍ଚକୋଟୀର କବି ଥିଲେ । ଧନଞ୍ଜୟ ଭଞ୍ଜ ରାଜକବି ଥିଲେ । ଗୋପୀନାଥ ଭଞ୍ଜ ଥିଲେ ତାଙ୍କର ପିତା । ଧନଞ୍ଜୟ ଭଞ୍ଜ ଥିଲେ ବହୁଶାସ୍ତ୍ରଦର୍ଶୀ । କାବ୍ୟ, ବ୍ୟାକରଣ, ଅଳଙ୍କାର, ଦର୍ଶନ, ସଙ୍ଗୀତ, ଧନୁର୍ବିଦ୍ୟା, ଆୟୁର୍ବେଦ, ନ୍ୟାୟ, ରାଜନୀତି ସାହିତ୍ୟଦର୍ପଣ ପ୍ରଭୃତି ଶାସ୍ତ୍ରରେ ସେ ପାରଦର୍ଶିତା ଲାଭ କରିଥିଲେ । ଓଡ଼ିଆ ସାହିତ୍ୟକୁ ତାଙ୍କ ମହାର୍ଘ କୃତି ଗୁଡ଼ିକ ହେଉଛି – ରଘୁନାଥବିଳାସ, ତ୍ରିପୁରସୁନ୍ଦରୀ, ମଦନମଞ୍ଜରୀ, ଅନଙ୍ଗରେଖା ଓ ଇଚ୍ଛାବତୀ । ଏତଦ୍‌ଭିନ୍ନ ସେ ବହୁ ଚଉତିଶାର ସ୍ରଷ୍ଟା । ତାଙ୍କ ରଚିତ ଚଉତିଶା ଗୁଡ଼ିକ ମଧ୍ୟରେ ମରୁତ ଚଉତିଶା, ପଣ୍ଡିତବୋଧ ଚଉତିଶା, ହଂସଦୂତ ଚଉତିଶା, କେଳିକଳ୍ପଦ୍ରୁମ ଚଉତିଶା, ଅନୁଚିନ୍ତା ଚଉତିଶା ପ୍ରଭୃତି

ଉଲ୍ଲେଖଯୋଗ୍ୟ । ତାଙ୍କ ଦ୍ୱାରା ରଚିତ 'ଚଉପଦୀଭୂଷଣ' ଏକ ମନୋଜ୍ଞ ସୃଷ୍ଟି । ସେହିପରି ସେ ବହୁ ମଙ୍ଗଳଗୀତିକା ରଚନା କରି ଓଡ଼ିଆ ଗୀତିକବିତା ଭଣ୍ଡାରକୁ ସମୃଦ୍ଧ କରିଛନ୍ତି । ଏହିପରି ଜଣେ ପ୍ରଥିତଯଶା ପିତାମହଙ୍କର ପୌତ୍ରଥିଲେ ଉପେନ୍ଦ୍ର । ତେଣୁ ସେ ସ୍ୱୟଂ ତାଙ୍କ ଲାବଣ୍ୟବତୀ, ବୈଦେହୀଶବିଳାସ ଓ ରସପଞ୍ଚକ କାବ୍ୟରେ ଏହି ଗୌରବମୟ ପୁରୁଷ ଧନଞ୍ଜୟ ଭଞ୍ଜଙ୍କର ନାମୋଲ୍ଲେଖ କରିଛନ୍ତି ।

ଧନଞ୍ଜୟ ଭଞ୍ଜ ଘୁମୁସର ରାଜବଂଶର ପଚାଶତମ ରାଜା ଥିଲେ । ସେ ୧୫୫୮ ଶକାବ୍ଦ ବା ୧୬୩୬ ଖୀଷ୍ଟାବ୍ଦରେ ଘୁମୁସର ରାଜ୍‌ସିଂହାସନ ଆରୋହଣ କରିଥିଲେ । ତାଙ୍କର ରାଜତ୍ୱ କାଳ ହେଉଛି ଖ୍ରୀ. ୧୬୩୬ରୁ ଖ୍ରୀ. ୧୭୦୧ । ନରେଶ ଧନଞ୍ଜୟ ଭଞ୍ଜ ଅତ୍ୟନ୍ତ କଳାପ୍ରିୟ ଓ କାବ୍ୟରସିକ ବ୍ୟକ୍ତି ଥିଲେ । ସେ ବହୁ କୀର୍ତ୍ତି ସ୍ଥାପନ କରିଯାଇଛନ୍ତି । ଘୁମୁସର ଅଞ୍ଚଳ ଏବେ ବି ଏହି ମହୀୟାନ୍ ମହୀପତିଙ୍କର ଗୁଣ କୀର୍ତ୍ତନ କରୁଅଛି । ଧନଞ୍ଜୟ ଭଞ୍ଜଙ୍କ ବିଷୟରେ ସୂର୍ଯ୍ୟମଣି ଚ୍ୟାଉ ପଟ୍ଟନାୟକ 'ଘୁମୁସର ଭଞ୍ଜ ବଂଶାବଳୀ'ରେ ନିମ୍ନମତେ ଲେଖିଛନ୍ତି –

"ଏଥୁଅନ୍ତେ ଶୁଣ ସୁବୁଦ୍ଧି ନିଚୟ ।
ଗୋପୀନାଥ ଭଞ୍ଜଙ୍କର ତନୟ ।
ଧନଞ୍ଜୟ ଭଞ୍ଜ ନାମ ବିଖ୍ୟାତ
ତେଜରେ ସେ ଧନଞ୍ଜୟ ସାକ୍ଷାତ ।
ସେ ନୃପତି ହେଲେ
ପୁତ୍ର ପରି ପରଜାୟେ ପାଳିଲେ ।
× × ×
କାବ୍ୟ ଶାସ୍ତ୍ରମାନଙ୍କରେ ଗୁରୁପରି
ସଙ୍ଗୀତ ବିଦ୍ୟାରେ ଗନ୍ଧର୍ବ ସରି ।
ଶିଳ୍ପ ବିଦ୍ୟାରେ ଯେ
ବିଶ୍ୱକର୍ମା ଅଟନ୍ତି ସାକ୍ଷାତରେ ଯେ ।
ଜଗନ୍ନାଥ ପ୍ରସାଦରେ ଆପଣ
ଦିବ୍ୟ ମଣ୍ଡପ କରି ନିରିମାଣ ।
ଶ୍ରୀ ଦଧିବାମନଙ୍କୁ ବସାଇଲେ ।
ପୁଷ୍କରିଣୀଟିଏ ନିର୍ବାହ କଲେ ।

ମଙ୍ଗରାଜପୁର ଯେ
ନାମେ ଶାସନ କଲେ ଧୀରବର ।

× × ×

ନିଜ ବୁଗୁଡ଼ାରେ ତକତ କଲେ
ଜଗନ୍ନାଥ ଦେବଙ୍କୁ ବସାଇଲେ ।
ହରିଶରଣପୁର ଦେଇ ନାମ ।
ଶାସନ କଲେ ସେ ନର ଉତ୍ତମ ।"

ରାଜା ଧନଞ୍ଜୟ ଭଞ୍ଜଙ୍କର ଏକାଧିକ ରାଣୀଙ୍କ ମଧ୍ୟରେ ନୟାଗଡ଼ (ନବଦୁର୍ଗ) ରାଜନନ୍ଦିନୀ ମଣ୍ଡାଦେବୀ ତାଙ୍କର ପ୍ରିୟତମା ରାଣୀ ଥିଲେ । ମଣ୍ଡାଦେବୀଙ୍କ ଗର୍ଭରୁ ନୀଳକଣ୍ଠ ଭଞ୍ଜ ଜାତ ହୋଇଥିଲେ । ସୂର୍ଯ୍ୟମଣି ଚ୍ୟାଉପଟ୍ଟନାୟକ ଲେଖିଛନ୍ତି –

"ନବଦୁର୍ଗରେ ବିଭା ହୋଇଥିଲେ ।
ମଣ୍ଡାଦେଇ ତାଙ୍କ ନାମଟି ଭଲେ ।
ତାଙ୍କ ଠାରେ ନୃପଙ୍କର ବହୁତ ।
ହୃଦରେ ସ୍ନେହ ହୋଇଥାଏ ଜାତ
ତାହାଙ୍କର ସୁତ, ନୀଳକଣ୍ଠ ଭଞ୍ଜ ନାମଟି ଖ୍ୟାତ ।"

ମଣ୍ଡାଦେବୀ ଥିଲେ ନୟାଗଡ଼ର ରାଜକନ୍ୟା । ତେଣୁ ଘୁମୁସର ରାଜବଂଶ ଓ ନୟାଗଡ଼ ରାଜବଂଶ ମଧ୍ୟରେ ଉତ୍ତମ ସଂପର୍କ ରହିଥିଲା । ନୀଳକଣ୍ଠ ଭଞ୍ଜ ମଣ୍ଡାଦେବୀଙ୍କ ପୁତ୍ରଥିବାରୁ ଧନଞ୍ଜୟ ଭଞ୍ଜଙ୍କର ସେ ବିଶେଷ ପ୍ରିୟଭାଜନ ଥିଲେ । ନୀଳକଣ୍ଠ ଭଞ୍ଜ ମଧ୍ୟ କବି ଥିଲେ । ତାଙ୍କ ଭଣିତା ଥାଇ କେତେଗୋଟି କବିତା ଦୃଷ୍ଟିଗୋଚର ହୁଏ । ଉପେନ୍ଦ୍ର ନୀଳକଣ୍ଠଙ୍କର ଜ୍ୟେଷ୍ଠ ପୁତ୍ର ଥିଲେ । ତାଙ୍କର କୁମୁଦରଞ୍ଜନ ଓ ନଳିନୀରଞ୍ଜନ ଦୁଇଭାଇ ଥିଲେ ବୋଲି ଜନଶ୍ରୁତିରୁ ଜଣାପଡ଼େ । ସୁତରାଂ ଉପେନ୍ଦ୍ର ଭଞ୍ଜ ଧନଞ୍ଜୟ ଭଞ୍ଜଙ୍କର ପୌତ୍ର ଓ ନୀଳକଣ୍ଠ ଭଞ୍ଜଙ୍କର ପୁତ୍ରଥିଲେ ।

## ଜନ୍ମ ଓ ଜାତକ –

ଉପେନ୍ଦ୍ର ଭଞ୍ଜଙ୍କ ଜୀବନକାଳ ନିରୂପଣରେ ଭିନ୍ନ ଭିନ୍ନ ମତାମତ ପରିଦୃଷ୍ଟ ହୁଏ । ଉପେନ୍ଦ୍ରଙ୍କ ଜୀବନକାଳ ନିରୂପଣରେ ନିମ୍ନ ସମ୍ଭାବ୍ୟ ମତାମତଗୁଡ଼ିକୁ ଉପସ୍ଥାପନ କରାଯାଇପାରେ –

(୧) **ପଣ୍ଡିତ ଶ୍ରୀଧର ଶତପଥୀ କହନ୍ତି** – "ରତ୍ନାବତୀଙ୍କ ଗର୍ଭରୁ ପ୍ରଥମ ପୁତ୍ର ରୂପେ ୧୫୯୮ ଶକାବ୍ଦ ଅର୍ଥାତ୍ ୧୬୭୪ ଖ୍ରୀଷ୍ଟାବ୍ଦ ମାଘ ଶୁକ୍ଳ ପଞ୍ଚମୀ ତିଥିରେ ଉପେନ୍ଦ୍ର ଜନ୍ମଗ୍ରହଣ କରିଥିଲେ ।"

(୨) **ଅନନ୍ତ ପଦ୍ମନାଭ ପଟ୍ଟନାୟକ କହନ୍ତି** – "ଉପେନ୍ଦ୍ର ଭଞ୍ଜ ୧୬୭୦ ଖ୍ରୀଷ୍ଟାବ୍ଦରେ କୁଳାଡ଼ଗଡ଼ରେ ଜନ୍ମଗ୍ରହଣ କରିଥିଲେ । ସେ ପଚାଶ ବର୍ଷ ବୟସରେ ୧୭୨୦ ସାଲରେ ମାନବଲୀଳା ସମ୍ବରଣ କରିଥିଲେ ।"

(୩) **ତାରିଣୀ ଚରଣ ରଥ କହନ୍ତି** – "ସମ୍ଭବତଃ ଉପେନ୍ଦ୍ରଭଞ୍ଜ ୧୬୮୫ ଖ୍ରୀଷ୍ଟାବ୍ଦରେ ଜନ୍ମଗ୍ରହଣ କରିଥିଲେ ।"

(୪) **ଡକ୍ଟର ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ମତରେ** – "ଉପେନ୍ଦ୍ର ସମ୍ଭବତଃ ୧୬୭୦ ଖ୍ରୀଷ୍ଟାବ୍ଦରୁ ୧୭୨୦ ପର୍ଯ୍ୟନ୍ତ ଜୀବିତ ଥିଲେ ।"

(୫) **ପଣ୍ଡିତ ଦାମୋଦର ଦାସ ଲେଖିଛନ୍ତି** – "ଜନ୍ମକାଳ ୧୬୭୦ ସାଲ ଧରାଗଲେ ଅଷ୍ଟବିଂଶତି ବୟସ ସମୟରେ ବୈଦେହୀଶ ବିଳାସ ପରି ମହାକାବ୍ୟ ରଚନା ହୋଇଥିବା ତାତ୍ପର୍ଯ୍ୟ ପୂର୍ଣ୍ଣ ।"

(୬) **ଡକ୍ଟର ହରେକୃଷ୍ଣ ମହତାବଙ୍କ ମତରେ** – "ଉପେନ୍ଦ୍ରଙ୍କ ଆନୁମାନିକ ସମୟ ୧୬୮୫-୧୭୨୦ ଖ୍ରୀଷ୍ଟାବ୍ଦ ।"

(୭) **କେଦାର ନାଥ ମହାପାତ୍ରଙ୍କ ମତରେ** – "xxx ଉପେନ୍ଦ୍ର ପ୍ରାୟ ୧୬୭୧ ଖ୍ରୀଷ୍ଟାବ୍ଦରେ ଜନ୍ମଗ୍ରହଣ କରିଥିବେ ।"

(୮) **ଗୌରୀକୁମାର ବ୍ରହ୍ମା କହନ୍ତି** – "ବିଭିନ୍ନ ଯୁକ୍ତିର ବହୁ ଆଲୋଚନା କରି ମୁଁ ଉପଲବ୍ଧି କରିଛି ଯେ ୧୬୭୫/୭୬ ପାଖାପାଖି ଭଞ୍ଜେ ଜନ୍ମଗ୍ରହଣ କରିଥିଲେ । ମୋର ବିଶ୍ୱାସ, ଏହି ଅବ୍ଦ ଅତିବେଶି ହେଲେ ଦୁଇବର୍ଷ ଆଗକୁ କିମ୍ବା ଦୁଇବର୍ଷ ପଛକୁ ନିଆଯାଇପାରେ ।"

(୯) **ଡକ୍ଟର ବିଚିତ୍ରାନନ୍ଦ ମହାନ୍ତି** – "ତାଙ୍କର ଜୀବନକାଳ ଖ୍ରୀ. ୧୬୮୫ - ୧୭୫୦ ମଧ୍ୟରେ ବୋଲି ଧରାଯାଇପାରେ ।"

(୧୦) **ଦୁଃଖୀଶ୍ୟାମ ପଟ୍ଟନାୟକଙ୍କ ମତରେ** – "ମହାକବି ଉପେନ୍ଦ୍ର ଭଞ୍ଜ ଜନ୍ମଗ୍ରହଣ କରିଥିଲେ ଖ୍ରୀ. ୧୬୭୭ରେ xxx ଏବଂ ପରଲୋକ ହୋଇଥିଲେ ଖ୍ରୀ: ୧୭୫୦ରେ ।"

(୧୧) **ପଣ୍ଡିତ ନୀଳମଣି ମିଶ୍ର** – "ଉପେନ୍ଦ୍ର ଭଞ୍ଜ ଖ୍ରୀ.ଅ. ୧୬୮୫ରେ ଜନ୍ମଗ୍ରହଣ କରିଥିବାର କିମ୍ବଦନ୍ତୀ ମୂଳକ ପ୍ରମାଣ ଉପଲବ୍ଧ ହୁଏ ।"

(୧୨) ବିଚ୍ଛନ୍ଦ ଚରଣ ପଟ୍ଟନାୟକ – "ଆଜକୁ ୨୬୮ ବର୍ଷତଳେ ଅର୍ଥାତ୍ ୧୬୮୫ ଖ୍ରୀଷ୍ଟାବ୍ଦରେ ଗଞ୍ଜାମ ଜିଲ୍ଲାର ନିଖିଳ – ନିସର୍ଗ – ଲାବଣ୍ୟ ମଣ୍ଡିତ ଘୁମୁସର ରାଜ୍ୟର କୁଳାଡ଼ ଦୁର୍ଗରେ କଳିଙ୍ଗ ମଉଡ଼ମଣି କବି ସାର୍ବଭୌମ କବି ସମ୍ରାଟ୍ ଉପେନ୍ଦ୍ର ଭଞ୍ଜଙ୍କ ଆବିର୍ଭାବ ହୋଇଥିଲା ।"

(୧୩) ପ୍ରଫେସର.ଡକ୍ଟର କୃଷ୍ଣଚରଣ ସାହୁଙ୍କ ମତରେ – "ଉପେନ୍ଦ୍ରଙ୍କ ଆନୁମାନିକ ସମୟ ୧୬୭୦-୧୭୪୦ ଖ୍ରୀଷ୍ଟାବ୍ଦ ।"

(୧୪) ଡକ୍ଟର ଦଣ୍ଡପାଣି ବେହେରା– ତାଙ୍କର ପିଏଚ୍.ଡି. ସନ୍ଦର୍ଭ "Freedom Movement in the state of Ghumsar in Orissa (1836-1866) ରେ ଉପେନ୍ଦ୍ର ଭଞ୍ଜଙ୍କ ସମୟସୀମା ୧୭୦୩ ଖ୍ରୀଷ୍ଟାବ୍ଦରୁ ୧୭୫୩ ଖ୍ରୀଷ୍ଟାବ୍ଦ ବୋଲି ଉଲ୍ଲେଖ କରିଛନ୍ତି ।"

(୧୫) ଜ୍ୟୋତିର୍ବିଦ୍ୟାବାଚସ୍ପତି ଦଣ୍ଡପାଣି ପଣ୍ଡା– ଉପେନ୍ଦ୍ର ଭଞ୍ଜଙ୍କ ଜାତକ ଓ ଜୀବନ କାଳ ପ୍ରସ୍ତୁତ କରି ନିମ୍ନ ଭାବରେ ଉପସ୍ଥାପିତ କରିଛନ୍ତି –
ଆବିର୍ଭାବ – ଖ୍ରୀଷ୍ଟାବ୍ଦ ୧୬୭୭, ଶକାବ୍ଦ ୧୫୧୮
ମାଘ ଶୁକ୍ଳ ପଞ୍ଚମୀ ରାତ୍ରିଦୁଇଦଣ୍ଡ
ବୁଧ ମହାଦଶା ବାକି ଥିଲା ବ. ୧୦.୧୦.୧୨ ଦିନ
ତିରୋଭାବ – ୧୭୨୫ ଖ୍ରୀଷ୍ଟାବ୍ଦ




ଦଣ୍ଡପାଣି ପଣ୍ଡା ପୁନଶ୍ଚ ଲେଖିଛନ୍ତି – "ଉପେନ୍ଦ୍ରଭଞ୍ଜଙ୍କର କର୍କଟ ଲଗ୍ନ ଓ ମୀନ ରାଶି । କର୍କଟ ଲଗ୍ନ ବ୍ୟକ୍ତିଙ୍କ ଶରୀର ସୁନ୍ଦର ଓ ଆକର୍ଷଣୀୟ । ଏମାନେ ସମ୍ମାନ ଓ ପ୍ରତିଷ୍ଠା ଲାଭ କରନ୍ତି । ନିଜର ଜନ୍ମଭୂମି ଛାଡ଼ି ଅନ୍ୟତ୍ର ବାସ କରନ୍ତି । ଏମାନଙ୍କର ପାରିବାରିକ ଜୀବନ ଦୁଃଖପୂର୍ଣ୍ଣ ହୁଏ । ମୀନରାଶି ବ୍ୟକ୍ତି ବିଦ୍ୱାନ,

ପଣ୍ଡିତ, ଶାସ୍ତ୍ରଜ୍ଞ, ଧାର୍ମିକ ଓ ପରୋପକାରୀ ହୁଅନ୍ତି । ଭଞ୍ଜଙ୍କର ଏହି ସବୁ ଗୁଣ ଥିଲା ।”

ଉପର୍ଯ୍ୟୁକ୍ତ ମତାମତରୁ ଜଣାଯାଏ ଯେ ଉପେନ୍ଦ୍ର ଭଞ୍ଜ ସପ୍ତଦଶ ଶତାବ୍ଦୀର ଅଷ୍ଟମ ଦଶନ୍ଧିରେ ଜନ୍ମଗ୍ରହଣ କରିଥିବା ସୁନିଶ୍ଚିତ । ଉପେନ୍ଦ୍ର ଭଞ୍ଜ ପୁରୀ ଗଜପତି ଦିବ୍ୟ ସିଂହଦେବ (୧୬୮୮ ଖ୍ରୀ-ଖ୍ରୀ୧୭୧୪)ଙ୍କ ସମସାମୟିକ ଥିଲେ ।

‘ରସଲେଖା’ କାବ୍ୟରେ କବି ଲେଖିଛନ୍ତି –

“ଦିବ୍ୟସିଂହ ଗଜପତି ଅଙ୍କ ସପତ ବିଂଶତି
ଶେଷ ଦିନେ ଶେଷ ଏହୁ ଗୀତ
ଦେଶେଦେଶେ ହେଉ ଖ୍ୟାତ ମୋହୁ ଏ ରସିକ ଚିତ୍ତ
ହରିହର କରନ୍ତୁ ଏମନ୍ତ ହେ ।” (ଦ୍ୱାବିଂଶ ଛାନ୍ଦ)

ଗଜପତି ଦିବ୍ୟସିଂହ ଦେବଙ୍କ ସପ୍ତବିଂଶତି ଅଙ୍କ ତା ୨୩।୮।୧୭୧୦ରେ ଶେଷ ହୋଇଛି । ସୁତରାଂ ‘ରସଲେଖା’ କାବ୍ୟଟି ୧୭୧୦ ଖ୍ରୀଷ୍ଟାବ୍ଦରେ ସମାପ୍ତ ହୋଇଛି ବୋଲି ଗ୍ରହଣ କରାଯାଇଛି ।

**ବାଲ୍ୟ କାଳ ଓ ଶିକ୍ଷା :**

ଉପେନ୍ଦ୍ରଙ୍କର ବାଲ୍ୟକାଳ ରାଜକୀୟ ବିଳାସ ଓ ଐଶ୍ୱର୍ଯ୍ୟ ଭିତରେ ଅତିବାହିତ ହୋଇଥିଲା । ରାଜା ଧନଞ୍ଜୟ ଭଞ୍ଜଙ୍କର ପ୍ରିୟତମା ପତ୍ନୀ ମଣ୍ଡାଦେବୀଙ୍କ ପୁତ୍ର ନୀଳକଣ୍ଠଙ୍କ ଜ୍ୟେଷ୍ଠପୁତ୍ର ହୋଇଥିବାରୁ ପୌତ୍ର ଭାବରେ ପିତାମହ ଧନଞ୍ଜୟ ଭଞ୍ଜଙ୍କର ଅତ୍ୟନ୍ତ ପ୍ରିୟଭାଜନ ଥିଲେ । ଉପେନ୍ଦ୍ରଙ୍କ ବାଲ୍ୟକାଳ ଅତ୍ୟନ୍ତ ସୁଖମୟ ଥିଲା । କେହି କେହି ମତ ପ୍ରଦାନ କରନ୍ତି ସେ ରାମଚନ୍ଦ୍ର ରାଜଗୁରୁ ତାଙ୍କର ଶିକ୍ଷାଗୁରୁ ଥିଲେ । ଉପେନ୍ଦ୍ର ଥିଲେ ବହୁ ଶାସ୍ତ୍ରଦର୍ଶୀ ।

‘କାବ୍ୟାଳଙ୍କାର’ ଗ୍ରନ୍ଥରେ କବିର ଜ୍ଞାତବ୍ୟ ବିଷୟ ସମ୍ପର୍କରେ କୁହାଯାଇଛି–

“ଶବ୍ଦଛାନ୍ଦୋଭିଧାନାର୍ଥ ଇତିହାସାଶ୍ରୟାଃ କଥାଃ
ଲୋକୋଯୁକ୍ତିଃ କଳାଶ୍ଚେତି ମନ୍ତବ୍ୟା କାବ୍ୟଗୈର୍ହ୍ୟମୀ ।”

ଅର୍ଥାତ୍ କାବ୍ୟ ରଚନା ପାଇଁ କବି ବ୍ୟାକରଣ, ଛନ୍ଦ, କୋଷ, ଅର୍ଥ, ଇତିହାସଆଶ୍ରୟୀ କଥା, ଲୋକବ୍ୟବହାର, ତର୍କଶାସ୍ତ୍ର ଏବଂ କଳା ମନନ କରିବା ଆବଶ୍ୟକ ।

ପୁନଶ୍ଚ କୁହାଯାଇଛି–

“ଶବ୍ଦାଭିଧେୟେ ବିଜ୍ଞାୟ କୃତ୍ୱାତଦ୍ ବିଦୁପାସନାମ
ବିଲୋକ୍ୟାନ୍ୟନିବନ୍ଧାଶ୍ଚ କାର୍ଯ୍ୟାଃ କାବ୍ୟକ୍ରିୟାଦରଃ ।”

ଅର୍ଥାତ୍– ଶବ୍ଦ ଓ ଅର୍ଥର ଯଥାର୍ଥ ଜ୍ଞାନଲାଭ ପରେ କାବ୍ୟଜ୍ଞଙ୍କ ନିର୍ଦ୍ଦେଶ ପାଳନ କରି ଏବଂ ଅନ୍ୟାନ୍ୟ ଲେଖକଙ୍କ ରଚନାକୁ ଅନୁଶୀଳନ କରି କାବ୍ୟରଚନା କାର୍ଯ୍ୟରେ ପ୍ରବୃତ୍ତ ହେବା ବିଧେୟ । ସୁତରାଂ ଏହି ସୂତ୍ରରେ ଅନୁଶୀଳନ କଲେ ଜଣାଯାଏ ଯେ ଉପେନ୍ଦ୍ର ଭଞ୍ଜ ପୁରାଣ, ଇତିହାସ, ଭୂଗୋଳ, ଜ୍ୟୋତିଷ, ଆୟୁର୍ବେଦ, ଧନୁର୍ବିଦ୍ୟା, ତନ୍ତ୍ର, ଅଭିଧାନ, ଛାନ୍ଦ, ଅଳଙ୍କାର, ବ୍ୟାକରଣ, କାମସୂତ୍ର, କଳାବିଦ୍ୟା, ସ୍ମୃତିଶାସ୍ତ୍ର ପ୍ରଭୃତି ଅଧ୍ୟୟନ କରିଥିଲେ । ସେ ଷଟ୍‌କାବ୍ୟ କୁମାରସମ୍ଭବ, ରଘୁବଂଶ, ମେଘଦୂତ (ଲଘୁତ୍ରୟୀ), କିରାତାର୍ଜ୍ଜୁନୀୟ, ଶିଶୁପାଳବଧ, ନୈଷଧୀୟଚରିତ (ଗୁରୁତ୍ରୟୀ), ଋତୁସଂହାର, ଗୀତଗୋବିନ୍ଦ, ଏବଂ ଷଟ ଦର୍ଶନ (ନ୍ୟାୟ, ସାଂଖ୍ୟ, ଯୋଗ, ବୈଶେଷିକ, ପୂର୍ବମୀମାଂସା, ଉତ୍ତରମୀମାଂସା) ଅଧ୍ୟୟନ କରିଥିଲେ । ଷଟ୍‌କୋଷ (ଅମର ସିଂହଙ୍କର ଅମର କୋଷ, ଶାଶ୍ୱତଙ୍କର ଅନେକାର୍ଥ ସମୁଚ୍ଚୟ, ଯାଦବପ୍ରକାଶଙ୍କର ବୈଜୟନ୍ତୀ, ମହେଶ୍ୱର ଆଚାର୍ଯ୍ୟଙ୍କର ବିଶ୍ୱପ୍ରକାଶ, ମେଦିନୀକରଙ୍କର ମେଦିନୀକୋଷ, ପୁରୁଷୋତ୍ତମଙ୍କର ତ୍ରିକାଣ୍ଡକୋଷ) ଗ୍ରନ୍ଥଗୁଡ଼ିକୁ ଉପେନ୍ଦ୍ର ଅଧ୍ୟୟନ କରି ଅସାଧାରଣ ଶବ୍ଦକବି ଭାବରେ ନିଜକୁ ପ୍ରତିଷ୍ଠିତ କରିପାରିଛନ୍ତି । ଏହା ବ୍ୟତୀତ କବି ଉପେନ୍ଦ୍ର ବିଭିନ୍ନ ଆଳଙ୍କାରିକ ଗ୍ରନ୍ଥଗୁଡ଼ିକୁ ଅଧ୍ୟୟନ କରିବାର ଅପୂର୍ବ ସୁଯୋଗ ଲାଭ କରିଥିଲେ । ଏହି ଆଳଙ୍କାରିକ ଓ ସେମାନଙ୍କର ଗ୍ରନ୍ଥଗୁଡ଼ିକୁ ନିମ୍ନରେ ଉଲ୍ଲେଖ କରାଗଲା –

ନାଟ୍ୟଶାସ୍ତ୍ର – ଭରତମୁନି
ଭାମହ – କାବ୍ୟାଳଙ୍କାର
ଦଣ୍ଡୀ – କାବ୍ୟାଦର୍ଶ
ବାମନ – କାବ୍ୟାଳଙ୍କାର ସୂତ୍ରବୃତ୍ତି
ରୁଦ୍ରଟ – କାବ୍ୟାଳଙ୍କାର
ରାଜଶେଖର – କାବ୍ୟମୀମାଂସା
ଭୋଜରାଜ – ସରସ୍ୱତୀ କଣ୍ଠାଭରଣମ୍
କୁନ୍ତକ – ବକ୍ରୋକ୍ତି ଜୀବିତମ୍
ବିଶ୍ୱନାଥ କବିରାଜ – ସାହିତ୍ୟଦର୍ପଣ
ପଣ୍ଡିତ ଜଗନ୍ନାଥ – ରସଗଙ୍ଗାଧର
ମମ୍ମଟ – କାବ୍ୟ ପ୍ରକାଶ

ହେମଚନ୍ଦ୍ର – କାବ୍ୟାନୁଶାସନ
କ୍ଷେମେନ୍ଦ୍ର – କବିକଣ୍ଠାଭରଣ
ଆନନ୍ଦବର୍ଦ୍ଧନ – ଧ୍ୱନ୍ୟାଲୋକ
ଭାନୁଦତ୍ତ – ରସତରଙ୍ଗିଣୀ (ଇତ୍ୟାଦି)

ସେହି ସମୟରେ ଘୁମୁସର ରାଜଦରବାର ସାହିତ୍ୟ ଓ ସଙ୍ଗୀତ ଚର୍ଚ୍ଚାର ଏକ ପ୍ରଧାନପୀଠ ଭାବରେ ଖ୍ୟାତି ଲାଭ କରିଥିଲା । ଓଡ଼ିଶାର ବିଭିନ୍ନ ଗଡ଼ଜାତରୁ କବି, ପଣ୍ଡିତ, ଜ୍ୟୋତିଷ ଏବଂ ସଙ୍ଗୀତଜ୍ଞମାନେ ଘୁମୁସର ରାଜଦରବାରକୁ ଆଗମନ କରୁଥିଲେ । ସେମାନଙ୍କର କବିତ୍ୱ, କାବ୍ୟଚର୍ଚ୍ଚା ଓ ପାଣ୍ଡିତ୍ୟର ପରଖ ତଥା ସାଧନାର ପରିଚୟ ଉପେନ୍ଦ୍ରଙ୍କୁ ଅନେକ ପରିମାଣରେ ପ୍ରଭାବିତ କରିଥିଲା । ଉପେନ୍ଦ୍ରଙ୍କର ପିତା ନୀଳକଣ୍ଠ ଭଞ୍ଜ ଏବଂ ପିତାମହ ଧନଞ୍ଜୟ ଭଞ୍ଜ କବିପଣରେ ଖ୍ୟାତି ଅର୍ଜନ କରିଥିଲେ । ତେଣୁ ଜୀବନର ପୁରୋଭାଗରେ ଉପେନ୍ଦ୍ରନିଜକୁ ଜଣେ ଉଚ୍ଚକୋଟୀର କବି ହେବାର ସ୍ୱପ୍ନ ଦେଖୁଥିଲେ । ଏଥିନିମନ୍ତେ ଗଭୀର ଅଧ୍ୟବସାୟ ବଳରେ ସେ ଅସାଧାରଣ ପାଣ୍ଡିତ୍ୟର ଅଧିକାରୀ ହୋଇଥିଲେ । ଅନନ୍ତ ପଦ୍ମନାଭ ପଟ୍ଟନାୟକ ଏହି ପ୍ରସଙ୍ଗରେ ଲେଖିଛନ୍ତି – "କବିତା ସାମ୍ରାଜ୍ୟରେ ପାରଦର୍ଶିତା ଲାଭ ପାଇଁ ପ୍ରଧାନତଃ ଲୋଡ଼ା ନାନାବିଧ ଶାସ୍ତ୍ରଜ୍ଞାନ, ଅଳଙ୍କାର ଶାସ୍ତ୍ର ଦର୍ଶିତା ଏବଂ ଅସାଧାରଣ ପାଣ୍ଡିତ୍ୟ । ତାହା ତାଙ୍କର ଥିଲା ।" ଉପେନ୍ଦ୍ର ତାଙ୍କର ପିତାମହ ଧନଞ୍ଜୟ ଭଞ୍ଜଙ୍କ ରାଜତ୍ୱକାଳରେ 'ପାଟକୁମାର' ନାମରେ ପରିଚିତ ଥିଲେ । ଧନଞ୍ଜୟ ଭଞ୍ଜଙ୍କପରେ ନୀଳକଣ୍ଠ ଭଞ୍ଜ ଘୁମୁସରର ରାଜା ହୋଇଥିଲେ । ପିତା ନୀଳକଣ୍ଠ ଭଞ୍ଜଙ୍କ ରାଜତ୍ୱକାଳରେ ଉପେନ୍ଦ୍ର ଯୁବରାଜ ପଦରେ ଅଧିଷ୍ଠିତ ହୋଇଥିଲେ ।

ରାଜକବି ଧନଞ୍ଜୟ ଭଞ୍ଜଙ୍କର ପ୍ରଭାବ ଉପେନ୍ଦ୍ରଙ୍କ ସ୍ରଷ୍ଟାମାନସକୁ ଗଭୀର ଭାବରେ ପ୍ରଭାବିତ କରିଥିଲା । ଧନଞ୍ଜୟ ଭଞ୍ଜ ପାଞ୍ଚଗୋଟି କାବ୍ୟର ସ୍ରଷ୍ଟାଥିଲେ । ସେ 'ଇଚ୍ଛାବତୀ', 'ଅନଙ୍ଗରେଖା', 'ତ୍ରିପୁରମୋହିନୀ', 'ମଦନମଞ୍ଜରୀ' ଓ 'ଶ୍ରୀରାମ ବିଳାସ' ନାମକ ପାଞ୍ଚଗୋଟି ଉତ୍କୃଷ୍ଟ କାବ୍ୟର କାବ୍ୟକାର । ଉପେନ୍ଦ୍ରଙ୍କ ବାଲ୍ୟଜୀବନ ଘୁମୁସରର ସାହିତ୍ୟିକ ପରିବେଶରେ ଅତିବାହିତ ହୋଇଥିଲା । ଉପେନ୍ଦ୍ର ବାଲ୍ୟକାଳରୁ ଧର୍ମାନୁରାଗୀ ଥିଲେ । ଘୁମୁସରର ରାଜପରିବାରର ଘନଘଟା ତାଙ୍କୁ ବିଚଳିତ କରି ପାରିନଥିଲା । ଚିନ୍ତାଶୀଳ ଉପେନ୍ଦ୍ର ଆଧ୍ୟାତ୍ମିକ ଚିନ୍ତନରେ ନିରନ୍ତର ବ୍ୟାପୃତ ରହୁଥିଲେ । ଉପେନ୍ଦ୍ର

ମଧ୍ୟ ପ୍ରକୃତିର ଉପାସକ ଥିଲେ । ମୁନିଜନବାଞ୍ଛିତ ଶ୍ୟାମ ପ୍ରକୃତିର ନିର୍ଜନ କୋଳ ଉପେନ୍ଦ୍ରଙ୍କ ଅତୀବ ପ୍ରିୟ ଥିଲା । ତେଣୁ ଉପେନ୍ଦ୍ର ଅଶ୍ୱ ପୃଷ୍ଠାରୋହଣ କରି କୁଲାଡ଼ଗଡ଼ ନିକଟବର୍ତ୍ତୀ 'ଢାମଣ ଝୋଲି' ବା 'ବାଘଦଳି' ସ୍ଥଳୀକୁ ବିଜେ କରୁଥିଲେ । 'ଢାମଣଝୋଲି'ର ପ୍ରାକୃତିକ ଦୃଶ୍ୟ ଅତୀବ ରମଣୀୟ । କୁଲାଡ଼ଗଡ଼ ଠାରୁ ଏକମାଇଲ ଦୂରରେ ଅବସ୍ଥିତ ଏହି ସ୍ଥଳୀର ଚତୁର୍ଦ୍ଦିଗରେ ଅନୁଚ୍ଚ ଢିମିରା ପାହାଡ଼ ଭଙ୍ଗୀଳ ରୀତିରେ ଚକ୍ରାକାରରେ ଘେରି ରହି ଅପୂର୍ବ ପ୍ରାକୃତିକ ଦୃଶ୍ୟ ବିଭବ ସୃଷ୍ଟି କରିଛି । ସେହିପରି କଳିଙ୍ଗା ପର୍ବତ ଶ୍ରେଣୀର ପାଦଦେଶରେ ଅବସ୍ଥିତ ପ୍ରକୃତିର ନିତ୍ୟସ୍ଥଳୀ 'ଅନ୍ଧାରକୋଟ' ଯୁବରାଜ ଉପେନ୍ଦ୍ରଙ୍କର ଅନ୍ୟତମ ବିହାରସ୍ଥଳୀ ଥିଲା । ଅନ୍ଧାରକୋଟର ଦୃଶ୍ୟ ବର୍ଣ୍ଣନା କରିବାକୁ ଯାଇ ଲେଖକ ଲେଖିଛନ୍ତି – "କଳିଙ୍ଗା ପାଦଦେଶରେ ଶୋଭିତ ଅନ୍ଧାରକୋଟ ପ୍ରକୃତିଦେବୀଙ୍କ ଲୀଳାସ୍ଥଳୀ ଥିଲା । ଏକ ଦିଗରେ ଶ୍ୟାମାୟମାନ ଅନନ୍ତ କାନନଶ୍ରେଣୀ, ଅନ୍ୟଦିଗରେ ବିଭିନ୍ନ ବିହଙ୍ଗମକୁଳର ମଧୁର - ରୁତ - ସଙ୍ଗୀତ – ସୁଧାସ୍ୟନ୍ଦୀ ନିର୍ଝରିଣୀ, ଝଙ୍କାର ମିଶି କବିପ୍ରାଣକୁ ଅହରହ ସ୍ୱାଗତ କରିବା ସ୍ୱାଭାବିକ ।" ଏହିପରି ଭାବରେ ଘୁମୁସରର ଶ୍ୟାମ ପ୍ରକୃତି ଉପେନ୍ଦ୍ରଙ୍କର ମନୋରାଜ୍ୟରେ ଦେଇଛି ଭାବ ଓ ଭାବନା ଏବଂ ମୁଖରେ ଦେଇଛି କବିତାର ଭାଷା । ଉପେନ୍ଦ୍ରଙ୍କ ପାଇଁ ପ୍ରକୃତି ଥିଲା ଶିକ୍ଷକ, ଧାତ୍ରୀ ତଥା ସବୁକିଛି ।

### ବିବାହ ଓ ଦାମ୍ପତ୍ୟ ଜୀବନ :

ଉପେନ୍ଦ୍ର ଭଞ୍ଜ ବାଣପୁରର ରାଜା ଅଚ୍ୟୁତ ହରିଚନ୍ଦନରାୟଙ୍କ କନ୍ୟାଙ୍କୁ ପ୍ରଥମେ ବିବାହ କରିଥିଲେ । ଏହାଙ୍କର ନାମ 'ଲାବଣ୍ୟନିଧି' ଥିଲା ବୋଲି ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତି ଉଲ୍ଲେଖ କରିଛନ୍ତି । ଏହା ବ୍ୟତୀତ ବାଣପୁର ରାଜଯେମାଙ୍କର ନାମ 'କସ୍ତୁରୀକା' ଥିଲା ବୋଲି ନାଟ୍ୟକାର ଦେବେନ୍ଦ୍ର ସିଂହ ଉଲ୍ଲେଖ କରିଛନ୍ତି ।

ଉପେନ୍ଦ୍ରଙ୍କର ଦାମ୍ପତ୍ୟ ଜୀବନ ଅତ୍ୟନ୍ତ ସୁଖମୟ ଥିଲା । କିନ୍ତୁ ବିଧିର ବିଧାନ ବିଚିତ୍ର । ତାଙ୍କର ପତ୍ନୀ ବାଣପୁର ରାଜନନ୍ଦିନୀଙ୍କର ଅକାଳ ବିୟୋଗ ଘଟିଲା । ବାଣପୁର ରାଜଯେମାଙ୍କର ଅକାଳ ମୃତ୍ୟୁ ଘଟଣାମୂଳରେ କିମ୍ବଦନ୍ତୀ ରହିଛି ଯେ ଦାମ୍ପତ୍ୟପ୍ରେମର ଗଭୀରତା ପରଖିବା ପାଇଁ ଉପେନ୍ଦ୍ର ମୃଗୟାଛଳରେ ଯାଇଥିଲେ ଏବଂ ପରିକର ହସ୍ତରେ ସମ୍ବାଦ ଦେଇଥିଲେ ଯେ ତାଙ୍କୁ ବଣରେ ବ୍ୟାଘ୍ର ଆକ୍ରମଣ କରିଛି । ଏହାକୁ ଦୁଃସମ୍ବାଦ ମନେ କରି ତାଙ୍କ ପତ୍ନୀଙ୍କର ମୃତ୍ୟୁ

ଘଟିଲା । ରାଜକୀୟ ବୈଭବ ଭିତରେ ଥାଇ ମଧ୍ୟ ପ୍ରିୟା ବିନା ଉପେନ୍ଦ୍ରଙ୍କ ଜୀବନ ଶୂନ୍ୟପ୍ରାୟ ଓ ଯନ୍ତ୍ରଣା ଜର୍ଜରିତ ହୋଇପଡ଼ିଲା । ତେଣୁ ତାଙ୍କର ଏ ଦୁଃଖଦ ଅନୁଭୂତି ଓ ବିରହ ଯନ୍ତ୍ରଣା ନିମ୍ନ ପଂକ୍ତିମାନଙ୍କରେ ପ୍ରତିଫଳିତ ହୋଇଛି ।

(କ) "ସୁଖୀ ହୋଇଥିବେ ନୃପ ଉପଜୀବୀ ନୋହି
ବିଦ୍ୟାଥିବ ଦିବ୍ୟସ୍ତିରୀ ମିଳିଥିବ ତହିଁ ଯେ ।
କି ହେବ ଇନ୍ଦ୍ର ହୋଇଲେ ସର୍ବ ସମ୍ପଦେ ସେ
ସ୍ତିରୀ ହୀନ ଠାରୁ ପାପୀ ନାହିଁ ମହୀଦେଶେ ଯେ ।"

(ଲାବଣ୍ୟବତୀ – ୨୮ ଛାନ୍ଦ)

(ଖ) "ବନଜାକ୍ଷୀ ମୋ ଜୀବ ଜୀବନ
ବନ ପ୍ରାୟେ ତା ବିନା ଭବନ
ବନ ନରହଇ ଦଣ୍ଡେ
ନୟନରୁ, କରି କରି ତା ଭାବଭାବନା ।"(ପ୍ରେମସୁଧାନିଧି – ୧୧ଶ ଛାନ୍ଦ)

(ଗ) "ତୁ ମୋ ପ୍ରତିଚକ୍ଷୁ ଯେଣୁ ହୋଇଛୁ ଅନ୍ତର
ଦିଶୁ ନାହିଁ କିଛି କାହିଁ ଆନ ପ୍ରତିକାର
ନୂଆ ଅନ୍ଧପ୍ରାୟ ହୋଇ
ଅନୁକ୍ଷଣେ ଆକୁଳ ବଢୁଛି ପ୍ରାଣ ସହି ।" (ପ୍ରେମ ସୁଧାନିଧି – ୧୪ଶ ଛାନ୍ଦ)

ପୁନଶ୍ଚ ଉପେନ୍ଦ୍ର ଦ୍ୱିତୀୟା ପତ୍ନୀ ରୂପେ ନବଦୁର୍ଗ ରାଜଯେମାଙ୍କୁ ଲାଭ କରିଥିଲେ । ଉପେନ୍ଦ୍ରଙ୍କର ଏହି ଦ୍ୱିତୀୟା ପତ୍ନୀଙ୍କ ନାମ 'ମାଳବିକା' ବୋଲି ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତି ଉଲ୍ଲେଖ କରିଛନ୍ତି । ସେହିପରି ନାଟ୍ୟକାର ଦେବେନ୍ଦ୍ର ସିଂହ ମଧ୍ୟ ତାଙ୍କର ନାମ 'ମାଳବିକା' ଥିଲା ବୋଲି ଉଲ୍ଲେଖ କରିଛନ୍ତି । ଯୁବକ ଉପେନ୍ଦ୍ରଙ୍କର ତପ୍ତ ବିକଳ ପ୍ରାଣକୁ ନବଦୁର୍ଗ ରାଜନନ୍ଦିନୀ ଶୀତଳତା ପ୍ରଦାନ କରିଥିଲେ । କିନ୍ତୁ ସେ ମଧ୍ୟ ଅକାଳରେ ମୃତ୍ୟୁବରଣ କରିଥିଲେ । ସ୍ୱଳ୍ପକାଳ ପାଇଁ ହେଲେ ମଧ୍ୟ ଉପେନ୍ଦ୍ରଙ୍କ ଜୀବନ ଦାମ୍ପତ୍ୟସୁଖରେ ପୂରି ଉଠିଥିଲା । କିନ୍ତୁ ଏହି ଦୁଃଖଦ ଘଟଣା ଉପେନ୍ଦ୍ରଙ୍କୁ ଘୋର ବ୍ୟଥା ଓ କଷ୍ଟ ଦେଇଥିଲା । ମାତ୍ର ଉପେନ୍ଦ୍ର ଥିଲେ ଧୈର୍ଯ୍ୟଶୀଳ ଓ ସ୍ଥିତପ୍ରଜ୍ଞ । ଏହି ଦୁଇଗୋଟି ଅକାଳ ଚଡ଼କକୁ ସେ ସହ୍ୟ କରିଗଲେ ସିନା, କିନ୍ତୁ ତାଙ୍କ ପ୍ରାଣପକ୍ଷୀ କୁରର ପରି ବିଳାପ କରିବାକୁ ଲାଗିଲା । ଏହି ଦୁଃଖାନୁଭୂତି ନିମ୍ନ ପଂକ୍ତିରେ ଅଙ୍କିତ –

"ରାଜାଙ୍କୁ ହେବାର ରାଜ୍ୟଭ୍ରଷ୍ଟ, ଯୁବାଙ୍କୁ ହେବାର ପତ୍ନୀକଷ୍ଟ
କହେ ଉପଇନ୍ଦ୍ର ଭଞ୍ଜ ବୀରବର ଏଥୁ ବଳି ନାହିଁ ଆନ କଷ୍ଟ ।"
(ରସିକ ହାରାବଳୀ – ୮ମ ଛାନ୍ଦ)

ଏହିପରି ଉପେନ୍ଦ୍ର ଦାମ୍ପତ୍ୟସୁଖରୁ ବଞ୍ଚିତ ହୋଇ ଗଭୀର ମର୍ମ ବେଦନା ଅନୁଭବ କରିଛନ୍ତି । ପରବର୍ତ୍ତୀକାଳରେ ଏହି ବିରହ ଜନିତ ମର୍ମବେଦନା ଉପେନ୍ଦ୍ରଙ୍କ ସାହିତ୍ୟକୁ ଜୀବନ୍ତ ଓ ହୃଦ୍ୟ କରିପାରିଛି ।

## ଉପେନ୍ଦ୍ର ଭଞ୍ଜ ଓ ନୟାଗଡ଼ :

ଧନଞ୍ଜୟ ଭଞ୍ଜଙ୍କର ରାଜତ୍ୱ କାଳ (ଖ୍ରୀ ୧୬୩୬ - ଖ୍ରୀ ୧୭୦୧) ମଧ୍ୟରେ ଉପେନ୍ଦ୍ର ଭଞ୍ଜ ଜନ୍ମ ଗ୍ରହଣ କରିଥିବା କଥା ଐତିହାସିକ ମାନଙ୍କ ଦ୍ୱାରା ସମର୍ଥିତ । ଧନଞ୍ଜୟ ଭଞ୍ଜଙ୍କ ରାଣୀଥିଲେ ମଣ୍ଡାଦେଈ । ମଣ୍ଡାଦେଈ ଥିଲେ ନୟାଗଡ଼ ରାଜଯେମା । ଉପେନ୍ଦ୍ର ମଣ୍ଡାଦେଈଙ୍କ ପୁତ୍ର ନୀଳକଣ୍ଠ ଭଞ୍ଜଙ୍କ ଜ୍ୟେଷ୍ଠ ସନ୍ତାନ ହେତୁ ଧନଞ୍ଜୟଙ୍କର ଅତ୍ୟନ୍ତ ପ୍ରିୟ ଥିଲେ । ସେ ରତ୍ନାବତୀଙ୍କ ଗର୍ଭରୁ ଜନ୍ମ ହୋଇଥିଲେ । ପଣ୍ଡିତ ଶ୍ରୀଧର ଶତପଥୀଙ୍କ ମତରେ ନଳିନୀରଞ୍ଜନ ଓ କୁମୁଦରଞ୍ଜନ ନାମରେ ତାଙ୍କର ଦୁଇଗୋଟି ସାନ ଭାଇ ଥିଲେ । ଉପେନ୍ଦ୍ରଙ୍କ ବାଲ୍ୟକାଳ ରାଜକୀୟ ବିଳାସର ସମସ୍ତ ଆଡ଼ମ୍ବର ଭିତରେ ଅତିବାହିତ ହୋଇଥିଲା ।

ଭଞ୍ଜରାଜବଂଶରେ ରାଜଗାଦିକୁ ନେଇ ସେତେବେଳେ ଅମାନୁଷିକ କାଣ୍ଡମାନ ଘଟିଥିବାର ପ୍ରବାଦ ରହିଛି । ଜନଶ୍ରୁତିରୁ ଜଣାପଡ଼େ ଯେ ରାଣୀମଣ୍ଡାଦେଈ ବ୍ରାହ୍ମଣୀ ନାନୀ ଦ୍ୱାରା ଚକୁଳି ପିଠାରେ ବିଷ ମିଶାଇ ନିଜ ସ୍ୱାମୀଙ୍କୁ ହତ୍ୟା କଲେ । ଫଳରେ ନୀଳକଣ୍ଠ ଘୁମୁସରର ରାଜା ହେଲେ । ନୀଳକଣ୍ଠଙ୍କ ଶାସନ କାଳ ମାତ୍ର ତିନିବର୍ଷ (୧୭୦୧ଖ୍ରୀ -୧୭୦୪ଖ୍ରୀ) ଥିଲା । କାରଣ ଧନଞ୍ଜୟ ଭଞ୍ଜଙ୍କ ସାନଭାଇ ଗୋବିନ୍ଦ ଭଞ୍ଜଙ୍କ ପୁତ୍ର ଘନଭଞ୍ଜ ନୀଳକଣ୍ଠକୁ ଆକ୍ରମଣ କଲେ ଓ ରାଜ୍ୟରୁ ବିତାଡ଼ିତ କଲେ । ଏଣୁ ନୀଳକଣ୍ଠ ଭଞ୍ଜ ୧୭୦୪ ଖ୍ରୀ.ରେ ରାଜ୍ୟରୁ ନିର୍ବାସିତ ହୋଇ ତାଙ୍କର ମାତୁଳାଳୟ ନୟାଗଡ଼ ରାଜାଙ୍କ ନିକଟରେ ଆଶ୍ରୟ ନେଲେ । ଏହି ସମୟରେ ନୟାଗଡ଼ରେ ରାଜା ଥିଲେ ଚନ୍ଦ୍ରଶେଖର ସିଂହ ମାନଧାତା । ନୟାଗଡ଼ ରାଜା ମାନଧାତା ନୀଳକଣ୍ଠ ଓ ତାଙ୍କ ପୁତ୍ର ଉପେନ୍ଦ୍ରଙ୍କ ଅବସ୍ଥାନ ପାଇଁ ବ୍ୟବସ୍ଥା କରିଥିଲେ । ଏହାପରେ ନୟାଗଡ଼ର ରାଜଗାଦିରେ ପୁରୁଷୋତ୍ତମ ସିଂହ ମାନଧାତା ଆସୀନ ହେଲେ । ସେ ଥିଲେ

ନବଦୁର୍ଗ ବଘେଲ ରାଜବଂଶର ଅଷ୍ଟାଦଶ ରାଜପୁରୁଷ । ପୁରୁଷୋତ୍ତମ ସିଂହ ମାନଧାତାଙ୍କ କନ୍ୟାଙ୍କ ସହ ଉପେନ୍ଦ୍ରଙ୍କର ବିବାହ କାର୍ଯ୍ୟ ସମ୍ପନ୍ନ ହେଲା । ଗଡ଼ ନିକଟବର୍ତ୍ତୀ ମାଳିସାହି ଗ୍ରାମକୁ ଉପେନ୍ଦ୍ର ଯୌତୁକରୂପେ ଲାଭ କରିଥିଲେ ।

ଉପେନ୍ଦ୍ରଙ୍କର ମାଳିସାହି ଆଗମନ ଏକ ଜଣାଶୁଣା ବିଷୟ । ମାଳିସାହି ଗ୍ରାମର ଶ୍ରୀଗତୀଶ୍ୱର ମହାଦେବଙ୍କର ପଶ୍ଚିମ ଦିଗରେ ଅବସ୍ଥିତ ଥିବା ଖମାର କୋଠିରେ ଉପେନ୍ଦ୍ର ଅବସ୍ଥାନ କରୁଥିଲେ । ଏହି ଖମାର କୋଠିରେ ବ୍ରହ୍ମଚାରିଣୀଙ୍କ ଆଶ୍ରମ ଥିଲା । ଏହି ବ୍ରହ୍ମଚାରିଣୀ ହେଉଛନ୍ତି ନବଦୁର୍ଗର କୌଣସି ରାଜକନ୍ୟା ଏବଂ ସେ ବୌଦ୍ଧ ରାଜ୍ୟର କୌଣସି ରାଜପୁତ୍ରଙ୍କୁ ବାଲ୍ୟବିବାହ କରିଥିଲେ । ସ୍ୱାମୀଙ୍କର ଅକାଳ ମୃତ୍ୟୁ ହେଲା, ତେଣୁ ଏହି ରାଜକୁମାରୀ ବ୍ରହ୍ମଚାରିଣୀ ବ୍ରତ ଅବଲମ୍ବନ କରି ମାଳିସାହି ଠାରେ ଅବସ୍ଥାନ କରୁଥିଲେ । ମାଳିସାହି ଗ୍ରାମ ହେଉଛି ଉପେନ୍ଦ୍ରଙ୍କ ସାଧନାର କ୍ଷେତ୍ର । ଏଠାରେ ଉପେନ୍ଦ୍ର ଦିବ୍ୟ ଜୀବନ ଅତିବାହିତ କରି ସାଧନା ମାର୍ଗରେ ରହି ଅପୂର୍ବ କାବ୍ୟାନନ୍ଦ ଭିତରେ ନିଜକୁ ହଜାଇ ଦେଇଥିଲେ । ତେଣୁ ମାଳିସାହି ଗ୍ରାମକୁ 'ଭଞ୍ଜଗ୍ରାମ' ବା 'ଭଞ୍ଜପୀଠ ମାଳିସାହି' ବୋଲି କୁହାଯାଏ ।

ମାଳିସାହି ଗ୍ରାମର ପରିଚୟ ଦେବାକୁ ଯାଇ ପଣ୍ଡିତ ଦାମୋଦର ଦାସ 'ଉପେନ୍ଦ୍ର ଭଞ୍ଜ ଜୀବନୀ', ୧୯୬୬, ପୃଷ୍ଠା - ୧୦୦-୧୦୧ରେ ଲେଖିଛନ୍ତି – "ସ୍ୱନାମଧନ୍ୟା ମାଳିସାହି ସୁନ୍ଦରୀର ପରିଚୟ ବିବୃତ୍ତି ଦିଆଯାଉଛି । ନୂଆଗଡ଼ ରାଜଧାନୀର ଉତ୍ତର – ପଶ୍ଚିମ କୋଣରେ ବାଘମାରୀ ଓ ଡାହୁକା ତଟିନୀ ତଟରେ ଗ୍ରାମଟି ଅବସ୍ଥିତ । ନୂଆଗଡ଼ଠାରୁ ଖଣ୍ଡପଡ଼ା ରାଜପଥର ଚାରିମାଇଲ ଦୂରରେ ବାଲୁଗାଁ ନାମରେ ସୁନ୍ଦର ପଲ୍ଲୀଟିଏ ଅଛି । ସେଠାରୁ ଦୁଇମାଇଲ ପଶ୍ଚିମକୁ ଗଲେ ନୁଣିଝରା ଶାଖାନଦୀ ଦେଖାଯାଏ । ଶାଖାନଦୀଟି ପାର ହେବା ସଙ୍ଗେ ସଙ୍ଗେ ବାଘମାରୀ ନଦୀ ଦେଖିବାକୁ ମିଳେ । କିୟତ୍ ଦୂରରେ ଆମ୍ରକାନନ ବିମଣ୍ଡିତ ମନୋମୁଗ୍ଧକର ଦୃଶ୍ୟରାଜି ମଧ୍ୟରେ ଶସ୍ୟଶାମଳା ତଥା ଶାନ୍ତକାନ୍ତ ପ୍ରକୃତି କୋଳରେ ଗତୀଶ୍ୱର ମନ୍ଦିରକୁ ନେଇ ମାଳିସାହି ଅବସ୍ଥିତ ।

ଗତୀଶ୍ୱର ମନ୍ଦିରଟିର ଗଠନ ପରିପାଟୀ ଏପରି ମଜଭୁତ ଓ ଗାମ୍ଭୀର୍ଯ୍ୟପୂର୍ଣ୍ଣ ଯେ ବହୁଯୁଗ ଅତୀତ ହୋଇଥିଲେ ହେଁ ଏବେ ସୁଦ୍ଧା ଦେଖିବାକୁ ନବନର୍ମିତ ହେଲାପରି ଆଶଙ୍କା ଜନ୍ମାଏ । କେବଳ ଦୁଇଟି ଶିଳାଲିପି ତାହାର ଆବହମାନ ଐତିହ୍ୟ ପ୍ରକାଶ କରିବାକୁ ସ୍ଥାଣୁ ବକ୍ଷରେ ଉଦ୍‌ଗ୍ରୀବ ରହିଛନ୍ତି । ଗୋଟିଏ

ମନ୍ଦିର ସଂଲଗ୍ନ ଉତ୍ତର ଦିଗସ୍ଥ ସେବାକୁଣ୍ଡ ମଧ୍ୟରେ ଓ ଅପରଟି ଦକ୍ଷିଣକୁ ପ୍ରସ୍ତର ସ୍ତମ୍ଭରେ ଖୋଦିତ ଲିପି ଦେଖାଯାଏ । ତାହା ଅତି ପୁରାତନ ଓ ଖ୍ରୀଷ୍ଟପୂର୍ବ ଲେଖାପରି ପ୍ରତ୍ୟୟ ହୁଏ । କେତେକ ପାଷାଣ ମୂର୍ତ୍ତିକୁ ଅନୁଧ୍ୟାନ କଲେ ତାହାର ପ୍ରାଚୀନତ୍ୱ ସହଜରେ ଉପଲବ୍ଧି କରିହୁଏ । ପ୍ରତ୍ନତତ୍ତ୍ୱ ବିଭାଗ ସେହିସବୁ ପ୍ରତି ଦୃଷ୍ଟି ଦେବା ଉଚିତ । ସେଠାରେ ଏପରି କେତେକ ମୂର୍ତ୍ତି ଇତସ୍ତତଃ ଭାବେ ପଡ଼ି ରହିଛି ଯେ ସେ ସବୁ ପ୍ରଦେଶର ସଂଗ୍ରହାଳୟରେ ସଂରକ୍ଷିତ ହେବା ଆବଶ୍ୟକ ମନେ ହୁଏ ।

ଗତୀଶ୍ୱର ମନ୍ଦିରର ଦକ୍ଷିଣରେ ଗୋଟିଏ ସାହି ଅବସ୍ଥିତ । ତହିଁରେ ମାଳୀ ଜାତିର ଲୋକ ବସତି ସ୍ଥାପନ କରି ରହିଛନ୍ତି – ଅର୍ଚ୍ଚକ ଓ ଅଧିବାସୀ ହିସାବରେ । ଶୁଣାଯାଏ ମନ୍ଦିରର ପଶ୍ଚିମ କବିସମ୍ରାଟଙ୍କ ସାଧନାଶ୍ରମ ଓ କିୟତ୍‌ଦୂରରେ ନାରିକେଳ କାନନ ମଧ୍ୟରେ ବ୍ରହ୍ମଚାରିଣୀଙ୍କ ଦିବ୍ୟାଶ୍ରମ ଥିଲା ।

× × ×

ମାଳିସାହି ସୀମାକୁ ଲାଗି କିଞ୍ଚିତ୍ ଦୂରରେ ନୈଋତକୁ ଦଧିନଉତା ମୁଣ୍ଡିଆ – ଯାହାର ପାଦ ଦେଶରେ ଢେଙ୍କଣା ରଘୁନାଥ ମଠ ବିଦ୍ୟମାନ । କ୍ରୋଶାଧିକ ଦୂରରେ ବାୟବ୍ୟ ଦିଗରେ ରାଜଗିରି ପର୍ବତ ଶ୍ରେଣୀ ଏକମାଇଲ ଯାଏ ପରିବ୍ୟାପ୍ତ ସମତଳ ଅଖଣ୍ଡ ଚାଞ୍ଚରାକୁ ନେଇ ଯାତ୍ରୀଙ୍କ ମନୋହରଣ କରିନେବା ନିମନ୍ତେ ଉଦ୍‌ଗ୍ରୀବ ରହିଛି – ଯେଉଁଠାରେ ଦିନେ ଉପେନ୍ଦ୍ର ତାହାଙ୍କ ଦଳବଳ ସହିତ ବର୍ଷର ବହୁସମୟ କଟାଇ ସାହିତ୍ୟଚର୍ଚ୍ଚା କରୁଥିବା ପ୍ରମାଣ ରହିଛି । ଶୁଣାଯାଏ ସେଠାରେ ସହସ୍ର ସହସ୍ର ସାଧୁ ସନ୍ନ୍ୟାସୀଙ୍କ ସମ୍ମେଳନ ହେଉଥାଏ ଓ ରାଜ୍ୟରେ ଯୁଦ୍ଧକାଳୀନ ସୈନ୍ୟନିବାସ ରୂପେ ବ୍ୟବହୃତ ହେଉଥିବା ପ୍ରବାଦ ମଧ୍ୟ ରହିଛି । କାଳର କୁଟୀଳ ଗତି ମଧ୍ୟରେ ବିଜିତ ରାଜଗିରି ସିଦ୍ଧିପୀଠ ରୂପେ ତା'ର ସ୍ୱଚ୍ଛ ଝରପ୍ରପାତ ଓ ଝରକୁଣ୍ଡାଦିକୁ ନେଇ ପୂର୍ବଗୌରବର ପରିଚୟ ଦେବାପାଇଁ ସୁବିସ୍ତୃତ ବକ୍ଷ ବିସ୍ତାର କରି ରହିଛି ।"

ଏହି ମାଳିସାହି ଗ୍ରାମରେ ନୟାଗଡ଼ର ରାଜା ମୃତ୍ୟୁଞ୍ଜୟ ସିଂହ ମାନଧାତା ପୂର୍ବେ ନିଜ ନାମରେ ଗୋଟିଏ ବ୍ରାହ୍ମଣ ଶାସନ ପ୍ରତିଷ୍ଠା କରିଥିଲେ । ଏହାର ନାମ ହେଉଛି ମୃତ୍ୟୁଞ୍ଜୟପୁର ଶାସନ । ରାଜା ନିଜ ରାଣୀଙ୍କ ନାମରେ ମଧ୍ୟ ଏହି ଗ୍ରାମଠାରୁ ଦେଢ଼କିଲୋମିଟର ଦୂରତାରେ 'ହୀରାଦେଈପୁର' ନାମରେ ଗ୍ରାମଟିଏ ମଧ୍ୟସ୍ଥାପନ କରିଥିଲେ ।

ରାଜ୍ୟହରା ନୃପତି ନୀଳକଣ୍ଠ ଭଞ୍ଜ ଓ ପୁତ୍ର ଉପେନ୍ଦ୍ରଙ୍କର ନିରାପଦ ଆଶ୍ରୟସ୍ଥଳ ହେଲା ଏହି ମାଳିସାହି ଗ୍ରାମ । ଘୁମୁସରର ଏହି ଭାଗ୍ୟହୀନ ନରପତି ରାଣୀ ରତ୍ନାବତୀଙ୍କ ସହିତ ମାଳିସାହିଠାରେ ଥିବା ଖମାର କୋଠି ପରିସରରେ ଅବସ୍ଥାନ କରି ଦୁଃଖ ଓ ନୈରାଶ୍ୟରେ କାଳ କଟାଇଥିଲେ । ସେ ଗତୀଶ୍ୱର ମହାଦେବଙ୍କର ଶରଣାପନ୍ନ ହୋଇ କାଳାତିପାତ କରିବାକୁ ଲାଗିଲେ । କୁମାର ଉପେନ୍ଦ୍ର ପିତା ଓ ମାତାଙ୍କୁ ଦର୍ଶନ କରିବା ପାଇଁ ହସ୍ତୀ ପୃଷ୍ଠ ଆରୋହଣ କରି ନୟାଗଡ଼ ରାଜବାଟୀରୁ ସାମୟିକ ଭାବରେ ମାଳିସାହି ଗ୍ରାମକୁ ଆସୁଥିଲେ । ମାଳିସାହି ଗ୍ରାମର ପ୍ରାକୃତିକ ପରିବେଶ ଓ ସୁଷମା ଉପେନ୍ଦ୍ରଙ୍କ ମନକୁ ଆକର୍ଷିତ କରୁଥିଲା । ଅଦୂରରେ ରାଜଗିରି ପର୍ବତର ଶୋଭା, ଗାଁ ନିକଟରେ ବାଘମାରୀ ନିର୍ଝରିଣୀର ପ୍ରବାହ, ଦିଗନ୍ତ ବିସ୍ତାରୀ ସବୁଜଶ୍ରୀ – ଏ ସମସ୍ତ ଉପେନ୍ଦ୍ରଙ୍କ ମନରେ ଗଭୀର ରେଖାପାତ କରିଥିଲା ।

ନବଦୁର୍ଗେଶ୍ୱରଙ୍କ ଜାମାତା ଉପେନ୍ଦ୍ର ଭଞ୍ଜଙ୍କ ଭାଗ୍ୟାକାଶରେ ଅକାଳ ବାଦଲ ଦେଖାଦେଲା । ନବଦୁର୍ଗ ରାଜଯେମା ତଥା ଉପେନ୍ଦ୍ରଙ୍କର ପତ୍ନୀଙ୍କର ଅକସ୍ମାତ୍ ମୃତ୍ୟୁ ଘଟିଲା । ଏହି ଆକସ୍ମିକ ବିୟୋଗ ଉପେନ୍ଦ୍ରଙ୍କୁ ଗଭୀର ଭାବରେ ମର୍ମାହତ କଲା । ଯେମାଦେଈଙ୍କର ମଧୁକ୍ଷରା ସ୍ମୃତି ଯୁବକ ଉପେନ୍ଦ୍ରଙ୍କୁ ଗଭୀର ଧକ୍କା ହେଲା । ତାଙ୍କ ପ୍ରାଣ କେବଳ କୁରର ପକ୍ଷୀପରି ବିଳାପ କରିବାକୁ ଲାଗିଲା । ନବଦୁର୍ଗ ରାଜନବର ତାଙ୍କୁ ଶୂନାବୋଧ ହେଲା । ହୃଦୟର ଶୂନ୍ୟତାକୁ ନେଇ ବିରହୀ ଉପେନ୍ଦ୍ର ଭଞ୍ଜ ରାଜବାଟୀ ନିକଟରେ ରହିଥିବା ରୁକ୍ଷି ପର୍ବତକୁ ଚାହିଁ ଚାହିଁ ଦିନ କାଟିଲେ । ରୁକ୍ଷି ପାହାଡ଼ ପରି ସେ ହୃଦୟକୁ ଦୃଢ଼ କଲେ । ମାଳିସାହି ଖମାରରୁ ଚର ଆସି ଖବର ଦେଲା ଯେ ପିତା ନୀଳକଣ୍ଠ ଭଞ୍ଜ ଶଯ୍ୟାଶାୟୀ । ଉପେନ୍ଦ୍ରଙ୍କ ମନ ମାଳିସାହି ଉଡ଼ିଗଲା । ଅନନ୍ତର ଉପେନ୍ଦ୍ରଙ୍କର ଉପସ୍ଥିତି ରାଜା ନୀଳକଣ୍ଠଙ୍କୁ ଆଶ୍ୱସ୍ତି ଦେଲା ସିନା, କିନ୍ତୁ ତାଙ୍କର ଶରୀର ଘୋର ଅବନତି ଆଡ଼କୁ ଗତି କଲା । ପୁତ୍ର ଉପେନ୍ଦ୍ର ଓ ପତ୍ନୀ ରତ୍ନାବତୀଙ୍କୁ ସଂସାରରେ ଛାଡ଼ି ନୀଳକଣ୍ଠ ଭଞ୍ଜଙ୍କର ପ୍ରାଣରୂପକ ହଂସ ଦେହ ସରୋବର ଛାଡ଼ି ମାନସରୋବରକୁ ଉଡ଼ିଗଲା ।

ରାଜ୍ୟହରା, ପତ୍ନୀହରା, ପିତୃହରା ଉପେନ୍ଦ୍ର ଅସରନ୍ତି ଦୁଃଖର ସାଥୀ ହେଲେ । ଖମାରକୋଠିରେ ଅବସ୍ଥାନ କରୁଥିବା ବ୍ରହ୍ମଚାରିଣୀ ମାଳିସାହିର ଦେବଦେବ ମହାଦେବ ଶ୍ରୀ ଗତୀଶ୍ୱର ମହାପ୍ରଭୁଙ୍କର ଶରଣାପନ୍ନ ହେବାପାଇଁ

ଉପେନ୍ଦ୍ରଙ୍କୁ ପରାମର୍ଶ ଦେଲେ । ଉପେନ୍ଦ୍ର ସଂସାର ବିରାଗୀ ହେଲେ । ବ୍ରହ୍ମଚାରିଣୀଙ୍କ ଉପଦେଶକୁ ଶିରୋଧାର୍ଯ୍ୟ କରି ଗତୀଶ୍ୱର ମହାଦେବଙ୍କ ମନ୍ଦିର ପ୍ରାଙ୍ଗଣରେ ସେ ଦିନ କାଟୁଥିଲେ । ଶୁଣାଯାଏ ସେ ସମୟରେ ବିଭିନ୍ନସ୍ଥାନରୁ ବାବାଜୀ, ସାଧୁସନ୍ଥମାନେ ଗତୀଶ୍ୱରଙ୍କ ପୀଠକୁ ଆସୁଥିଲେ । ଉପେନ୍ଦ୍ର ମଧ୍ୟ ସେମାନଙ୍କର ସାନ୍ନିଧ୍ୟ ଲାଭ କଲେ । ଉପେନ୍ଦ୍ର ଗତୀଶ୍ୱରଙ୍କର କରୁଣା ଲାଭ କଲେ । ଦିନେ ଶ୍ରୀକ୍ଷେତ୍ରରେ ରାମାନନ୍ଦୀ ସମ୍ପ୍ରଦାୟ ଗୁଜୁରାଟୀ ସାଧୁ ବାବାଜୀ ରଘୁବର ଦାସଙ୍କ ସହିତ ଉପେନ୍ଦ୍ରଙ୍କର ଭେଟ ହେଲା ଏବଂ ବାବାଜୀ ତାଙ୍କୁ କହିଲେ – "ବତ୍ସ ! ରାମ ତାରକ ମନ୍ତ୍ରସିଦ୍ଧ କର । ତୁମେ ଅପୂର୍ବ କବିତ୍ୱର ଅଧିକାରୀ ହେବ ।" ବାବାଜୀ ରଘୁବର ଦାସ ଉପେନ୍ଦ୍ରଙ୍କୁ ସାଧନା ମାର୍ଗରେ ରହି ମନ୍ତ୍ର ସିଦ୍ଧ କରିବାର ମାର୍ଗ ଦର୍ଶନ କରାଇଲେ ।

"ଓଁ ରାମାୟ ରାମଚନ୍ଦ୍ରାୟ ରାମଭଦ୍ରାୟ ବେଧସେ
ରଘୁନାଥାୟ ନାଥାୟ ସୀତାୟାଃ ପତୟେ ନମଃ ।"

ପବିତ୍ର ରାମତାରକ ମନ୍ତ୍ରର ପ୍ରବର୍ତ୍ତକ ସ୍ୱୟଂ ଶିବ । ତେଣୁ ଗତୀଶ୍ୱରଙ୍କ ଦେବାଳୟ ପୀଠରେ ସାଧକ ଉପେନ୍ଦ୍ର ରାମ ତାରକ ମନ୍ତ୍ର ଜପକରିବା ଆରମ୍ଭ କରିଥିଲେ ।

ଉପେନ୍ଦ୍ର କତିପୟ କାବ୍ୟରେ ମାଳୀ / ମାଲୁଣୀଙ୍କ ସମ୍ପର୍କରେ ସୂଚନା ଦେଇଛନ୍ତି । ଏହି ଅନୁଭୂତି ସେ ମାଳିସାହି ଗ୍ରାମରୁ ପାଇଥିବା ପ୍ରମାଣିତ ହୁଏ । ଯଥା :

(କ) "ମାଳୀଆଳି ଦକ୍ଷିଣାବର୍ତ୍ତକ ବିନା କମ୍ବୁ
ନ ଘେନନ୍ତି ଦେବାକୁ ହରଚରଣେ ଅମ୍ବୁ ।" (ଲାବଣ୍ୟବତୀ)

(ଖ) "ବାରକରେ ଖ୍ୟାତ ଶିବପୁରେ ଉତ୍ସବେ
ବାଦନ ଯେ ଶଙ୍ଖ ମାଳୀ – ଗଣ ହିଁ ଭାବେ ।" (ବୈ.ବି.)

(ଗ) "ଏଥୁ ଅନନ୍ତରେ ରସ ଶୁଣ ହେ ମାଳିନୀ ବେଶ
ଟଭା ଫଳ ପରା ଖୋଷା, ଖୋଷିଛି ଯୋଷା ଯେ ।
ଗର୍ଭକ କଳା ଚଉଁରୀ ପ୍ରକାଶେ ରତ୍ନ ଭଉଁରୀ
ଖଞ୍ଜିଅଛି ଗୋଟି ଚମ୍ପା ଧଇର୍ଯ୍ୟ କମ୍ପା ଏ ।
ଅନ୍ଧାର ନିଶାରେ ନଭେ ନିର୍ମଳ ତାରା କି ଶୋଭେ
ଦିଶଇ ତେମନ୍ତ ପରା ଲୋଚନ କାରା ଏ ।

× × ×

ଶ୍ରବଣେ ଚାରୁ କୁଣ୍ଡଳ ଦୋହଲେ ଗଣ୍ଡ ମଣ୍ଡଳ
ସୁବର୍ଣ୍ଣ ଫାଶୀ ଉପରେ ଚିତ୍ତକୁ ହରେ ଏ ।
ଫୁଲଗୁଣା ମାଠ ଗୁଣା କରଇ ବିବେକ ବଣା
ନାସା ପୁଟକେ ପୁଟକେ ଥାଇ ଝଟକେ ଏ ।" (ଲାବଣ୍ୟବତୀ)

## ନବଦୁର୍ଗ ରାଜ୍ୟର ପବିତ୍ର ରଘୁନାଥ ପୀଠ – 'ଢେଙ୍କଣା' ଓ 'ଓଡ଼ଗାଁ'

ମାଳିସାହି ଗ୍ରାମଠାରୁ ଦୁଇ କିଲୋମିଟର ପଶ୍ଚିମରେ ଢ଼େଙ୍କଣା ଗ୍ରାମ ଅବସ୍ଥିତ । ଏହି ଗ୍ରାମରେ ଶ୍ରୀ ରଘୁନାଥ ମନ୍ଦିର ଓ ମଠ ରହିଛି । ଜନଶ୍ରୁତି ଅନୁସାରେ ଏଠାରେ ଶରଭଙ୍ଗ ଋଷିଙ୍କର ଆଶ୍ରମ ଥିଲା । ଏହି ମଠରେ ମଠାଧୀଶ ମହନ୍ତ ପରମ୍ପରା ରହିଆସିଛି । ରାମ ଉପସନା ପରମ୍ପରା ଏହି ଗ୍ରାମରେ ବହୁ ଅତୀତକାଳରୁ ପ୍ରଚଳିତ ହୋଇ ଆସିଛି ।

ସେହିପରି ଓଡ଼ଗାଁ ବା ଓଡ଼ଗ୍ରାମ ନୟାଗଡ଼ ସଦରଠାରୁ ୨୭ କିଲୋମିଟର ଦକ୍ଷିଣ ପଶ୍ଚିମରେ ଅବସ୍ଥିତ । ଏହା ହେଉଛି ରାମ ଉପାସନାର ଅନ୍ୟତମ ପ୍ରଧାନ ପୀଠ । ଏଠାରେ ଶ୍ରୀ ରଘୁନାଥଙ୍କର ମନୋରମ ମନ୍ଦିର ଉପରେ ସୁବର୍ଣ୍ଣ କଳସ ମାନ ବିଦ୍ୟମାନ । ଉଭୟ ଢେଙ୍କଣା ଓ ଓଡ଼ଗାଁର ଶ୍ରୀ ରଘୁନାଥଙ୍କୁ ଉପେନ୍ଦ୍ର ଉପାସନା କରୁଥିଲେ । ଉପେନ୍ଦ୍ର ରାମ ତାରକ ମନ୍ତ୍ର ସାଧନା କରୁଥିବାରୁ ନବଦୁର୍ଗ ରାଜ୍ୟର ଏହି ଉଭୟ ରାମପୀଠରେ ଉପାସନା କରି ସାଧକ ଶ୍ରେଷ୍ଠ ହୋଇପାରିଥିଲେ । ଉପେନ୍ଦ୍ରଙ୍କର ଆଧ୍ୟାତ୍ମିକ ଉତ୍ତରଣ କ୍ଷେତ୍ରରେ ଏହି ଉଭୟ ରଘୁନାଥ ପୀଠ ବେଶ୍ ସହାୟକ ହୋଇଥିଲେ । ଉପେନ୍ଦ୍ର ଓଡ଼ଗାଁ ନିକଟବର୍ତ୍ତୀ କୋମଣ୍ଡ ଗ୍ରାମ ଓ ଗଞ୍ଜାମର କେତେକ ସ୍ଥାନରେ ସାମୟିକ ସାଧନାରତ ଥିଲେ ବୋଲି କେହି କେହି ମତପୋଷଣ କରନ୍ତି ।

ରାମ ତାରକ ମନ୍ତ୍ରରେ ସିଦ୍ଧିଲାଭ କଲାପରେ ଉପେନ୍ଦ୍ର ମାଳିସାହି ଗ୍ରାମରେ ଅବସ୍ଥାନ କରି କାବ୍ୟକବିତା ରଚନାରେ ମନୋନିବେଶ କରିଥିଲେ । ଜନମୁଖରୁ ଶୁଣାଯାଏ ଯେ ଉପେନ୍ଦ୍ର ଭଞ୍ଜ ମାଳିସାହି ଗ୍ରାମରେ ବହୁଦିନ ପର୍ଯ୍ୟନ୍ତ ଅବସ୍ଥାନ କରିଥିଲେ । ନବଦୁର୍ଗ ରାଜ ଦରବାରରେ ସେ ବିଶେଷ ସ୍ଥାନ ଅଧିକାର କରିଥିଲେ । ତାଙ୍କ ଦ୍ୱାରା ରଚିତ କାବ୍ୟଗ୍ରନ୍ଥ ଗୁଡ଼ିକ ନବଦୁର୍ଗ ରାଜଦରବାରରେ ଚର୍ଚ୍ଚା ହେଉଥିଲା । ଏହି ଦରବାରରେ ଉପେନ୍ଦ୍ର ଭଞ୍ଜ ଉତ୍ତମ କବିଗୋଷ୍ଠୀ ଲାଭ କରିଥିଲେ । ମାଳିସାହି ଗ୍ରାମ ରହଣି କାଳରେ ଉପେନ୍ଦ୍ର ଭଞ୍ଜ ତାଙ୍କର ବହୁ କାବ୍ୟଗ୍ରନ୍ଥ ଯଥା ରସଲେଖା, ଭାବବତୀ, ଲାବଣ୍ୟବତୀ, ଲାବଣ୍ୟନିଧି,

ରସିକହାରାବଳୀ, କୋଟିବ୍ରହ୍ମାଣ୍ଡସୁନ୍ଦରୀ, ପ୍ରେମସୁଧାନିଧି, ସୁବର୍ଣ୍ଣରେଖା, ଅବନାରସ ତରଙ୍ଗ, ଯମକରାଜ ଚଉତିଶା ପ୍ରଭୃତି କାବ୍ୟ ରଚନା କରିଥିଲେ ।

ଏ ପ୍ରସଙ୍ଗରେ ଐତିହାସିକ କେଦାର ନାଥ ମହାପାତ୍ରଙ୍କ ଅଭିମତ ଏଠାରେ ଉଦ୍ଧାର କରାଯାଇଛି । ଶ୍ରୀ ମହାପାତ୍ର 'ଖୁରୁଧା ଇତିହାସ'ରେ ଲେଖିଛନ୍ତି– "କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ ଘୁମୁସରର ପ୍ରସିଦ୍ଧ ରାଜକବି ଧନଞ୍ଜୟ ଭଞ୍ଜଙ୍କର ପୌତ୍ର ଓ ନୀଳକଣ୍ଠ ଭଞ୍ଜଙ୍କର ପୁତ୍ର ଥିଲେ । ନୀଳକଣ୍ଠ ନିଜପିତା ନବତି ବର୍ଷ ବୟସ୍କ ବୃଦ୍ଧ ଧନଞ୍ଜୟଙ୍କୁ ମରାଇ ୧୭୦୧ରେ ରାଜପଦରେ ଅଭିଷିକ୍ତ ହୋଇଥିଲେ । କିନ୍ତୁ ତିନି ବର୍ଷକାଳ ରାଜସୁଖ ଉପଭୋଗ କରି ୧୭୦୪ରେ ଉକ୍ତ ବଂଶୀୟ ଘନଭଞ୍ଜଙ୍କ ଦ୍ୱାରା ରାଜ୍ୟରୁ ବିତାଡ଼ିତ ହୋଇଥିଲେ । ଘନଭଞ୍ଜ ୧୭୦୬ଖ୍ରୀ. ରୁ ୧୭୫୪ଖ୍ରୀ. ପର୍ଯ୍ୟନ୍ତ ଘୁମୁସର ଶାସନ କରିଥିଲେ । ବିତାଡ଼ିତ ନୀଳକଣ୍ଠ ଓ ତଦୀୟ ପୁତ୍ର ଉପେନ୍ଦ୍ର ନୟାଗଡ଼ର ମାଳିସାହି ଗ୍ରାମରେ ବାସ କରିଥିଲେ । ସେଠାରେ ଅବସ୍ଥାନ ସମୟରେ 'ରାମତାରକ' ମନ୍ତ୍ର ଜପଦ୍ୱାରା ସିଦ୍ଧିଲାଭ କରି ଅଦ୍ଭୁତ କବିତ୍ୱ ଶକ୍ତି ଲାଭ କରିଥିବାର ଜନଶ୍ରୁତି ରହିଛି । ନୟାଗଡ଼ର ତତ୍କାଳୀନ ରାଜା ପୁରୁଷୋତ୍ତମ ସିଂହ ମାନଧାତା ଉପେନ୍ଦ୍ର ଭଞ୍ଜଙ୍କ କବିତ୍ୱ ଓ ପାଣ୍ଡିତ୍ୟରେ ମୁଗ୍ଧ ହୋଇ ତାଙ୍କୁ ଆଶ୍ରୟ ଦେଇଥିଲେ ।"

ପଣ୍ଡିତ ନୀଳମଣି ମିଶ୍ରଙ୍କ ସମ୍ପାଦିତ A Descriptive Catalogue of Oriya Manuscripts – Vol-VI (1970) – (ପୃ ୧୩୦-୧୩୧)ରେ ଉଲ୍ଲେଖ ରହିଛି – "କବିସମ୍ରାଟ ଉପେନ୍ଦ୍ର ଭଞ୍ଜ ଘୁମୁସରର ପ୍ରସିଦ୍ଧ ରାଜା ଧନଞ୍ଜୟଙ୍କ ପୌତ୍ର ଓ ନୀଳକଣ୍ଠ ଭଞ୍ଜଙ୍କ ପୁତ୍ର ଥିଲେ । କବି ଉପେନ୍ଦ୍ର ପ୍ରାୟ ଖ୍ରୀ.ଅ. ୧୬୮୫ରେ ଜନ୍ମଗ୍ରହଣ କରିଥିଲେ ବୋଲି କେତେକ ଆଲୋଚକ ମତ ପ୍ରକାଶ କରନ୍ତି । ଉପେନ୍ଦ୍ରଙ୍କ ପିତା ନୀଳକଣ୍ଠ ଭଞ୍ଜ ଘୁମୁସରର ରାଜସିଂହାସନ ଲୋଭରେ ନିଜ ମାତା ମଣ୍ଡାଦେଈଙ୍କ ସାହାଯ୍ୟରେ ଏକ ପ୍ରଳୟଙ୍କରୀ ଝଞ୍ଜା ସୃଷ୍ଟି କରି ରାଜପଦରେ ଅଭିଷିକ୍ତ ହୋଇଥିଲେ । କିନ୍ତୁ ସେ ତିନିବର୍ଷ ମାତ୍ର ରାଜପଣ କରି ଖ୍ରୀ.ଅ. ୧୭୦୪ରେ ଉକ୍ତ ବଂଶର ଜନୈକ ଦାୟାଦ ଘନଭଞ୍ଜଙ୍କ ଦ୍ୱାରା ଚିରଦିନ ଲାଗି ଘୁମୁସରରୁ ନିର୍ବାସିତ ହୋଇଥିଲେ । ନୀଳକଣ୍ଠଙ୍କ ପୁତ୍ର ଯୁବକ ଉପେନ୍ଦ୍ରଙ୍କୁ ମଧ୍ୟ ନିର୍ବାସନ ଦଣ୍ଡ ଭୋଗ କରିବାକୁ ପଡ଼ିଥିଲା । ସେ ସେହି ସମୟରେ ନୟାଗଡ଼ର 'ମାଳୀସାହି'ରେ ରହି ରାମତାରକ ମନ୍ତ୍ର ଜପଦ୍ୱାରା ସିଦ୍ଧିଲାଭ କରି ଅଦ୍ଭୁତ ପ୍ରତିଭା ସମ୍ପନ୍ନ ହୋଇଥିଲେ । ତାହାରି ଫଳରେ ତାଙ୍କର

ଅମରଲେଖନୀରୁ 'ବ' ଆଦ୍ୟାନୁପ୍ରାସରେ ଲିଖିତ 'ବୈଦେହୀଶ ବିଳାସ', 'ଲାବଣ୍ୟବତୀ', 'କୋଟିବ୍ରହ୍ମାଣ୍ଡସୁନ୍ଦରୀ', 'ଅବନାରସତରଙ୍ଗ', 'ଷୋଳପୋଇ', 'ରାମଲୀଳାମୃତ' ଆଦି ବହୁକାବ୍ୟ ନିସୃତ ହୋଇଥିଲା ।"

ସେହିପରି କବିଭୂଷଣ ଆନନ୍ଦ ଚନ୍ଦ୍ର ମିଶ୍ର ତାଙ୍କର "କବି ଯଦୁମଣି ଓ ଅନ୍ୟାନ୍ୟ ଗଦ୍ୟ" ପୁସ୍ତକରେ ଲେଖିଛନ୍ତି – "କବି ଉପେନ୍ଦ୍ର ଭଞ୍ଜ ପ୍ରଥମେ ନୟାଗଡ଼ ରାଜଜେମାଙ୍କୁ ବିବାହ କରିଥିଲେ ଓ ଯୋତୁକ ସ୍ୱରୂପ ନୟାଗଡ଼ର ମାଳିସାହି ଗ୍ରାମକୁ ପାଇଥିଲେ । ତେଣୁ କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ ନୟାଗଡ଼ ରାଜବଂଶର ନାତି ଓ ତା'ପରେ ଜାମାତା । ନୟାଗଡ଼ ମାଟିର ରକ୍ତ ତାଙ୍କଦେହରେ ପ୍ରବାହିତ ହେଉଥିଲା । ଏହି ମାଳିସାହିରେ ବହୁକାଳ ଆମର କବିସମ୍ରାଟ ସୁଖଦୁଃଖ ଓ ସମ୍ପତ୍ତି ବିପତ୍ତିରେ କଟାଇ ଥିବାର ପ୍ରମାଣ ମିଳେ । ଏହି ମାଳିସାହିରେ ଅବସ୍ଥାନ କରୁଥିବା ସମୟରେ ରଘୁନାଥ ନାମକ ଜନୈକ ସିଦ୍ଧ ସନ୍ନ୍ୟାସୀ କବିଙ୍କୁ ରାମତାରକ ମନ୍ତ୍ର ଜପ କରି ସିଦ୍ଧ କରିବାକୁ ଦେଇଥିଲେ । ତାହା ଅନୁସାରେ କବି ଯେଉଁ ସିଦ୍ଧ ଗୁମ୍ଫାଠାରେ ରାମତରକ ମନ୍ତ୍ର ସିଦ୍ଧ କରିଥିଲେ, ତାହା ଏହି ନୟାଗଡ଼ ମଧ୍ୟରେ ଅବସ୍ଥିତ । କବି ଉପେନ୍ଦ୍ର ଭଞ୍ଜ ଏହି ନୟାଗଡ଼ ମାଳିସାହିରେ ଅବନାରସ ତରଙ୍ଗ, ଲାବଣ୍ୟବତୀ, ବଜାରବୋଲି, କଳାକଉତୁକ ପ୍ରଭୃତି କାବ୍ୟ କବିତା ଲେଖିଥିଲେ ବୋଲି ଲୋକ ମୁଖରୁ ଶୁଣାଯାଏ ।"

ପ୍ରଫେସର ଗଙ୍ଗାଧର ବଳ ମଧ୍ୟ ଲେଖିଛନ୍ତି – "ରାଜଅନ୍ତଃପୁରର ଷଡ଼ଯନ୍ତ୍ର ଓ ବିଦ୍ରୋହ ହେତୁ ଧନଞ୍ଜୟଙ୍କ ମୃତ୍ୟୁପରେ କବିଙ୍କ ପିତା ନୀଳକଣ୍ଠ ଶାନ୍ତିରେ ରାଜତ୍ୱ କରିପାରିଲେ ନାହିଁ । ବିଦ୍ରୋହୀଙ୍କ ଉତ୍ପୀଡ଼ନରେ ଅତିଷ୍ଠ ହୋଇ ନିରୁପାୟ ଅବସ୍ଥାରେ ଖ୍ରୀ. ୧୭୦୩ରେ ଘୁମୁସରରୁ ବତାଡ଼ିତ ହୋଇ ପୁତ୍ର ଉପେନ୍ଦ୍ରଙ୍କ ସହ ନୟାଗଡ଼ର ମାଳିସାହିରେ କିପରି ବାସ କଲେ ତା'ର ସୂଚନା ପୂର୍ବରୁ ଦିଆଯାଇଛି । ରାଜସିଂହାସନ ଦଖଲ ଓ କ୍ଷମତା ହାସଲ ଆଦିପ୍ରତି ଉପେନ୍ଦ୍ରଙ୍କର କୌଣସି ଆସକ୍ତି ନଥିବାରୁ ସେ .ପ୍ରତିରୋଧର ଭୂମିକା ଗ୍ରହଣ କରି ନ ଥିଲେ । ନୟାଗଡ଼ର ମାଳିସାହିରେ ସେ ବାସକରି ନିରୁଦବିଗ୍ନ ଓ ଅନାସକ୍ତ ଭାବରେ ତାଙ୍କର ବାଣୀ ସାଧନାରେ ଲାଗିପଡ଼ିଲେ । କୁଲାଡ଼ର ପାହାଡ଼ ପରିବେଷ୍ଟିତ, ନିକଟବର୍ତ୍ତୀ ପଶୁପକ୍ଷୀ ସେବିତ ଝରଣା ଓ ଝିଲ୍ଲୀଝଙ୍କାରିତ ଅରଣ୍ୟ ତାଙ୍କର ଲେଖନୀକୁ ଯେପରି ଚଳଚଞ୍ଚଳ କରିଥିଲା, ନୟାଗଡ଼ର ପ୍ରାକୃତିକ ପରିବେଶ ମଧ୍ୟ ତାଙ୍କର କବିତ୍ୱର ବିକାଶରେ କମ୍ ସହାୟକ ହୋଇନାହିଁ ।

ଏଇଠାରେ ବହୁ କାବ୍ୟ କବିତା, ସଙ୍ଗୀତ ଆଦି ତାଙ୍କ ଲେଖନୀରୁ ଝରିଛି ଏବଂ ନିଜ ଅପୂର୍ବ କବିତ୍ୱର ପ୍ରଶଂସା କେବଳ ଘୁମୁସର ଓ ନୟାଗଡ଼ ନୁହେଁ, କ୍ରମଶଃ ସମଗ୍ର ଓଡ଼ିଶାରେ ବ୍ୟାପିଯାଇଛି ।"

## ତାରକମନ୍ତ୍ର ପରସାଦେ :

ଉପେନ୍ଦ୍ର ଥିଲେ ଜଣେ ଅସାଧାରଣ ଐଶୀସମ୍ପନ୍ନ ମନୀଷୀ । ବାବାଜୀ ରଘୁବର ଦାସଙ୍କ ଠାରୁ ଶିଷ୍ୟତ୍ୱ ଗ୍ରହଣ କରି ସେ ବୈରାଗୀ ହେଲେ । ସାଧନାମାର୍ଗରେ କାଳାତିପାତ କଲେ । ସାଂସାରିକ ଭୋଗବିଳାସର ଆକର୍ଷଣଠାରୁ ଉପେନ୍ଦ୍ର ଥିଲେ ବହୁଦୂରରେ । ସଂସାରର ଅଳୀକତା ଓ ଜୀବନର ନଶ୍ୱରତା ଉପେନ୍ଦ୍ରଙ୍କୁ ଆଧ୍ୟାତ୍ମିକ ମାର୍ଗରେ ଯିବାପାଇଁ ପ୍ରବର୍ତ୍ତାଇ ଥିଲା । ଉପେନ୍ଦ୍ର ସଂଯମ ମାର୍ଗରେ ଜୀବନକୁ ଅତିବାହିତ କରି ନିତ୍ୟ ହରି ଓ ହରଙ୍କୁ ଉପାସନା କରିବାକୁ ଲାଗିଲେ ।

ଉପେନ୍ଦ୍ର ଅବଗତ ଥିଲେ ଯେ ରାମତାରକ ମନ୍ତ୍ରର ସ୍ରଷ୍ଟା ସ୍ୱୟଂ ଶିବ । ସୁତରାଂ ସେ ଗୁରୁଣାଂ ଗୁରୁ ଅର୍ଥାତ୍ ମହାଗୁରୁ ଶିବଙ୍କ ଦ୍ୱାରା ପ୍ରବର୍ତ୍ତିତ ଏହି ପବିତ୍ର ମନ୍ତ୍ର ପଠନ ଓ ସାଧନ ପୂର୍ବରୁ ଏହି ମନ୍ତ୍ରର ପ୍ରବର୍ତ୍ତକ ଶିବଙ୍କୁ ମଧ୍ୟ ଆରାଧନା କରିବା ବିଧେୟ । ଆଶୁତୋଷ ଶିବକୁ ସନ୍ତୁଷ୍ଟ କରିପାରିଲେ ରାମତାରକ ମନ୍ତ୍ରର ସଫଳତା ମିଳିଥାଏ । ତେଣୁ ଉପେନ୍ଦ୍ର ମହାଦେବ ଶିବଙ୍କ ଉଦ୍ଦେଶ୍ୟରେ ଲେଖିଥିଲେ –

"ଯେହୁ ତାରକ ପ୍ରବର୍ତ୍ତକ ଜଗତେ ତାରକ ସ୍ୱଭାବେ ଯେ ହିତ
ମହାଗୁରୁ ଭାବୁଁ ସେ କାଶୀଶ୍ୱରଙ୍କୁ ବନ୍ଦନା କରିବା ବିହିତ
ହୋଇଲା, କବି ଉପଇନ୍ଦ୍ର ଭଞ୍ଜର
କାମଦାୟକ ବିନାୟକ ଜନକ ସେ ଭାବେ ପୁଣି ତତପର ।"

(କୋ.ବ୍ର.ସୁ.)

ପ୍ରତ୍ୟହ ସାୟଂକାଳରେ ଉପେନ୍ଦ୍ର ଢେଙ୍କଣା ଗ୍ରାମର ଶ୍ରୀରଘୁନାଥଙ୍କୁ ଉପାସନା କରୁଥିଲେ । ଉପେନ୍ଦ୍ର ଯଦିଓ ଶିବ, ଦୁର୍ଗା, କୃଷ୍ଣ, ଜଗନ୍ନାଥଙ୍କୁ ସ୍ତୁତି କରିଛନ୍ତି ସେ ମୂଳତଃ ଥିଲେ ରାମାନନ୍ଦୀ ପନ୍ଥୀ ବୈଷ୍ଣବ । ସେ ରଘୁନାଥ ପୀଠରେ ରାମତାରକ ମନ୍ତ୍ର ସିଦ୍ଧ କରିଥିଲେ । ଭକ୍ତି ତଦଗତ ହୃଦୟରେ ଉପେନ୍ଦ୍ର ଧ୍ୟାନସ୍ଥ ହୋଇ ନୀଳାମ୍ବୁଜ ଶ୍ୟାମଳକାନ୍ତି ଶ୍ରୀରାମଚନ୍ଦ୍ରଙ୍କ ମନ୍ତ୍ର ଅନବରତ ଜପ କରୁଥିଲେ । ତାହା ଥିଲା 'ଓଁ ରାଂ ରାମାୟ ନମଃ ।' କବି ଉପେନ୍ଦ୍ର ଏହି

ରାମମନ୍ତ୍ର ସମ୍ପର୍କରେ 'ବୈଦେହୀଶ ବିଳାସ' କାବ୍ୟର ଚତୁର୍ଥ ଛାନ୍ଦ ସତେଇଶି ପଦରେ ସୂଚନା ଦେଇଛନ୍ତି –

'ବୋଲିବାର ରାମମନ୍ତ୍ର ଆଦ୍ୟ ବର୍ଣ୍ଣ ଭିନ୍ନ' ।

ଏଠାରେ ସେହି ରାମମନ୍ତ୍ରଟି ହେଉଛି 'ରାମାୟ ନମଃ' । ଏହା ସହିତ ବୀଜମନ୍ତ୍ର 'ଓଁ' ଯୁକ୍ତ କରାଯାଏ । ସେ ପୁଲକିତ ପ୍ରାଣରେ ସ୍ତୁତି କରୁଥିଲେ –

"ନୀଳାମ୍ବୁଜ ଶ୍ୟାମଳ କୋମଳାଙ୍ଗଂ
ସୀତା – ସମାରୋପିତ – ବାମଭାଗଂ
ପାଣୌ ମହାଶାୟକ ଚାରୁଚାପଂ
ନମାମି ରାମଂ ରଘୁବଂଶ ନାଥମ୍ ।"
"ରାମଂ ଲକ୍ଷ୍ମଣ ପୂର୍ବଜଂ ରଘୁବରଂ ସୀତାପତିଂ ସୁନ୍ଦରଂ
କାକୁତ୍ସ୍ଥଂ କରୁଣାର୍ଣ୍ଣବ ଗୁଣନିଧିଂ ବିପ୍ରପ୍ରିୟ ଧାର୍ମିକମ୍ ।"
ରାଜେନ୍ଦ୍ରଂ ସତ୍ୟସଂଧଂ ଦଶରଥ ତନୟଂ ଶ୍ୟାମଳଂ ଶାନ୍ତମୂର୍ତ୍ତିଂ
ବନ୍ଦେ ଲୋକଭିରାମଂ ରଘୁକୁଳତିଳକଂ ରାଘବଂ ରାବଣାରିମ୍ ।"
ରାମାୟ ରାମଭଦ୍ରାୟ ରାମଚନ୍ଦ୍ରାୟ ବେଧସେ
ରଘୁନାଥାୟ ନାଥାୟ ସୀତାୟାଃ ପତୟେ ନମଃ ।
ଶ୍ରୀରାମ ରାମ ରଘୁନନ୍ଦନ ରାମ ରାମ
ଶ୍ରୀରାମ ରାମ ଭରତାଗ୍ରଜ ରାମ ରାମ
ଶ୍ରୀରାମ ରାମ ରଣକର୍କଶ ରାମ ରାମ
ଶ୍ରୀରାମ ରାମ ଶରଣଂ ଭବ ରାମ ରାମ ।
ଶ୍ରୀରାମଚନ୍ଦ୍ର ଚରଣୌ ମନସା ସ୍ମରାମି
ଶ୍ରୀରାମଚନ୍ଦ୍ର ଚରଣୌ ବଚସା ଗୃଣାମି ।
ଶ୍ରୀରାମଚନ୍ଦ୍ର ଚରଣୌ ଶିରସା ନମାମି
ଶ୍ରୀରାମ ଚନ୍ଦ୍ର ଚରଣୌ ଶରଣଂ ପ୍ରପଦ୍ୟେ ।"
"ଦକ୍ଷିଣେ ଲକ୍ଷ୍ମଣୋ ଯସ୍ୟ ବାମେ ଚ ଜନକାତ୍ମଜା
ପୁରତୋ ମାରୁତି ଯସ୍ୟ ତଂ ବନ୍ଦେ ରଘୁନନ୍ଦନମ୍ ।"
"ଲୋକଭିରାମଂ ରଣରଙ୍ଗଧୀରଂ
ରାଜୀବ ନେତ୍ରଂ ରଘୁବଂଶ ନାଥମ୍
"କାରୁଣ୍ୟରୂପଂ କରୁଣାକରଂ ତଂ
ଶ୍ରୀରାମ ଚନ୍ଦ୍ରଂ ଶରଣଂ ପ୍ରପଦ୍ୟେ ।"

ଉପେନ୍ଦ୍ର ଥିଲେ ରାମପ୍ରାଣଗତ । ରାମୋପାସକ । ଅଯୋଧ୍ୟା ନରେନ୍ଦ୍ର ଦଶରଥ ତନୟ ରାମଚନ୍ଦ୍ରଙ୍କ ଜୀବନରେ ଆସିଥିବା ଦୁଃଖ ଉପେନ୍ଦ୍ରଙ୍କ ଜୀବନରେ ଆସିଥିବା ଦୁଃଖ ମଧ୍ୟରେ ସାମ୍ୟ ରହିଥିଲା । ଉପେନ୍ଦ୍ରଙ୍କ ଉକ୍ତିରେ ତାହା ପ୍ରତିପାଦିତ । 'ପ୍ରଭୁ ତୁମ୍ଭେ ବିରହ ବେଦନା ଅନୁଭବୀ, ନଘେନିଲେ ଆଉ କାହା ଆଗେ ଜଣାଇବି ।' ତେଣୁ ତାଙ୍କର ଦୁଃଖାନୁଭବକୁ ଅନୁଭବୀ ଉପେନ୍ଦ୍ର ଆଧ୍ୟାତ୍ମିକ ଭାବନାରେ ରୂପାନ୍ତରିତ କଲେ । ଏଥିରୁ ସେ ପ୍ରାପ୍ତ ହେଲେ ଦିବ୍ୟାନନ୍ଦ । ମର୍ଯ୍ୟାଦାପୁରୁଷୋତ୍ତମ ସୀତାପତି ଶ୍ରୀରାମଚନ୍ଦ୍ରଙ୍କର ସେବାରେ ସେ ନିଜକୁ ପୂର୍ଣ୍ଣରୂପେ ସମର୍ପଣ କରିଥିଲେ । ତେଣୁ ଉପେନ୍ଦ୍ର ଲେଖିଛନ୍ତି –

(କ) ବଳାଇ ଚିତ୍ତ ଅନବରତ
ଭାଗ୍ୟେ ଗ୍ରହଣ ତାରକ ମନ୍ତ୍ର । – ବୈଦେହୀଶ ବିଳାସ / ୧ମ ଛାନ୍ଦ

(ଖ) ବାମେରାମାବର ସ୍ଥିତି, ଦକ୍ଷିଣେ ଲକ୍ଷ୍ମଣ ଯତି
ମଧ୍ୟେ ବିଜେ ଯେଉଁ ଶ୍ୟାମଳସୁନ୍ଦର ତାଙ୍କୁ ଉପଇନ୍ଦ୍ର ଚିନ୍ତି ।
– ଲାବଣ୍ୟବତୀ / ୨୫ଶ ଛାନ୍ଦ

(ଗ) "ତାରକ ମନ୍ତ୍ର ନାମ ଯାହାର
ତ୍ରାଣ ସେହି ଉପେନ୍ଦ୍ର ଭଞ୍ଜର ।" – ଛାନ୍ଦ ଭୂଷଣ

(ଘ) "ଅଯୋଧ୍ୟା ଇନ୍ଦ୍ର ଧ୍ୟାନରେ ଉପଇନ୍ଦ୍ର ନାଶିବ ଅର୍ଜିତ ଆପଦ"
– ଲାବଣ୍ୟବତୀ – ୯/୨୪

(ଙ) "କବି ଉପଇନ୍ଦ୍ର ତବ କୃପାରେ ହୋଇଛି
ଏଥେ ମନୋରଥ ସାର୍ଥେ କି ସଂଶୟ ଅଛି ହେ ।" – କୋ.ବ୍ର.ସୁ. ୧/୬୩

(ଚ) "ନୀଳ ଲୋହିତ ଶରୀର ଦରହାରୀ
ଶ୍ରୁତି ନିସ୍ତାରକ କୀର୍ତ୍ତି ଖ୍ୟାତକାରୀ
ମୀନମୂର୍ତ୍ତି ରଘୁପତି ଶ୍ରୀପୟର
ଭାବେ ଉପଇନ୍ଦ୍ର ଭଞ୍ଜ ବୀରବର ।" – ଲାବଣ୍ୟବତୀ ୭/୯୬,୯୭

ଉପେନ୍ଦ୍ର ଥିଲେ ଉଜ୍ଜ୍ୱଳ ପୁରୁଷ । ସେ ଥିଲେ ଦୁର୍ଲଭ କବିତ୍ୱ ଶକ୍ତିର ଅଧିକାରୀ । ସେ ଥିଲେ ପ୍ରତିଭାବାନ ସ୍ରଷ୍ଟା । ଉପେନ୍ଦ୍ରଙ୍କର ଏହି ପ୍ରତିଭାକୁ ରାମୋପାସନା ଆହୁରି ତେଜୋବନ୍ତ କରିପାରିଥିଲା । ତେଣୁ ଉପେନ୍ଦ୍ର ଘୋଷଣା କରିଛନ୍ତି–

(ଛ) "କହେ ଉପଇନ୍ଦ୍ର ଉତ୍ତମ କବି ପୁଞ୍ଜ ଦୁର୍ଲଭମାର୍ଗେ ମୋ ସଞ୍ଚାର ସେ ।"
– କୋ.ବ୍ର.ସୁ. ୧୩/୨୮

(ଜ) "ବିଚିତ୍ର କର୍ମା ରଘୁନାଥ
ତାଙ୍କ ଧ୍ୟାନରେ ଉପଇନ୍ଦ୍ର ବିଚିତ୍ର ରଚିତ ରଚନେ ସମର୍ଥ ।"

– କୋ.ବ୍ର.ସୁ. ୧୦/୩୧

(ଝ) "ତରଣି କୁଳର ସାର ଆଶ୍ରୟରୁ ନିରନ୍ତର
କହେ ଉପେନ୍ଦ୍ର ଭଞ୍ଜ ମୁଁ ଲଭିଛି ଶବଦ ସମୁଦ୍ର ପାର ।"

– କୋ.ବ୍ର.ସୁ. ୧୪/୩୮

ସାଧକ ଉପେନ୍ଦ୍ର ମହାପ୍ରଭୁ ଶ୍ରୀରାମଚନ୍ଦ୍ରଙ୍କର ପ୍ରସାଦରୁ କବି ହୋଇଛନ୍ତି ବୋଲି ସ୍ୱୀକାର କରିଛନ୍ତି । ଉପେନ୍ଦ୍ର ଥିଲେ ବହୁଶାସ୍ତ୍ରଦର୍ଶୀ ବିଦ୍ୱାନ । ତେଣୁ ଏହି ସକଳ ପାଣ୍ଡିତ୍ୟ ଶ୍ରୀରଘୁନାଥଙ୍କର କୃପାରୁ ହୋଇଛି ବୋଲି ସେ ଭକ୍ତି ତଦ୍‌ଗତ ହୃଦୟରେ ଗାନ କରିଛନ୍ତି –

(ଞ) "ବୀରବର ପଦ ଉପଇନ୍ଦ୍ର ମୋ ନାମ
ବାରେ ବାରେ ସେବାରେ ମନାଇ ସୀତାରାମ ଯେ
ବିଚିତ୍ର କବିତ୍ୱ ମାର୍ଗେ ପ୍ରସରିଲା ବୁଦ୍ଧି
ବିରଚିଲି ରାମାୟଣ ଏ ମୋ ବଡ଼ ସିଦ୍ଧି ଯେ ।"

(ବୈଦେହୀଶ ବିଳାସ – ୫୨ ଛାନ୍ଦ)

(ଟ) "ଗଉତମ ନାରୀର ଉତ୍ତମ ଗତିଦାୟୀ
ଉପଇନ୍ଦ୍ର ବୀରବର ସେ ଶ୍ରୀରାମ ଧ୍ୟାୟି ଯେ ।"

(ଲାବଣ୍ୟବତୀ – ୩୫/୮୮)

(ଠ) "କହେ ଉପଇନ୍ଦ୍ର ମୋ ପ୍ରଭୁ ଶ୍ରୀରାମ ବୈକୁଣ୍ଠ ନାଥ ସାକ୍ଷାତ
ଜାତକଲେ କ୍ଷୀରାର୍ଣ୍ଣବୁଁ ସୁଧାମୋର ଗୀରାର୍ଣ୍ଣବୁଁ ରସଗୀତ
ସେ ସତ । ସେ ବିବୁଧ ଏ ବୁଧେ ରଞ୍ଜିତ
ଦୈତ୍ୟ ଖଳରେ ଅଧ ରକ୍ଷିତ । ଯେ ଗ୍ରାସିବ ହେବ ରାହୁ ମତ ।"

– କୋ.ବ୍ର.ସୁ. ୧୬/୩୨

(ଡ) "ଜରତ ବିମ୍ବଅଧର ଭରତ ଜ୍ୟେଷ୍ଠ ସୋଦର
ନିରତେ କର ମୋ ଚିତ୍ତେ ସଦ୍ମ ହେ
କହେ ଉପଇନ୍ଦ୍ର ଭଞ୍ଜ ପ୍ରଭୋ ରଘୁବଂଶ ରାଜ
ଅଯୋଧ୍ୟା ରାଜନ ପରଂବ୍ରହ୍ମ ହେ ।" – ଲାବଣ୍ୟବତୀ ୪୫/୩୦

(ଢ) "ଜାନକୀ କୁଚକୁଙ୍କୁମ ଅଙ୍କିତ ହୃଦୟ
ମୁନିଜନ ଚିତ୍ତେ କାମ ବିକାର ଉଦୟ ଯେ
ତାରକ ତାରକ ମନ୍ତ୍ର ଯାହା ନାମ ଶୁଣି
ଉପଇନ୍ଦ୍ର ବୀରବର ସେହି ରାମଗୁଣି ଯେ ।"

— ଲାବଣ୍ୟବତୀ ୩୩/୪୨

ସୀତାରାମଙ୍କୁ ହୃଦୟ ସିଂହାସନରେ ଆବିଷ୍ଟ କରାଇ ଉପେନ୍ଦ୍ର କାବ୍ୟରଚନା କରୁଥିଲେ । ତେଣୁ ସେ ଲେଖିଛନ୍ତି –

"କହେ କବି ଭଞ୍ଜ ବୀରବର ଦିବ୍ୟରସ
ଆହେ ରାମ ଅବିଘ୍ନେ ଏ ଗୀତ ହେଉ ଶେଷ ହେ ।
ସୀତା ସହିତ ମୋ ଚିତ୍ତୁଁ ନୋହିବ ଅନ୍ତର
ଏହି ଅଭୀଷ୍ଟକୁ କରିଅଛି ନିରନ୍ତର ହେ ।"

— ଲାବଣ୍ୟବତୀ – ୩୦/୮୩

ରାମଭକ୍ତିରେ ଉପେନ୍ଦ୍ର ଉଦ୍‌ବୁଦ୍ଧ ଥିଲେ । ଉପେନ୍ଦ୍ର ଥିଲେ ବିରହୀ କବି । ତେଣୁ ସେ ଲେଖିଛନ୍ତି –

"ଦିନ ବିରହୀ ଦୀନ ବିରହୀ ହେବାରୁ ଯୁଗ ପ୍ରାୟେ
ଦାଶରଥିର ଦାସରଥିର ଭକ୍ତି ଉପେନ୍ଦ୍ର ଧାୟେ ।"

— କୋ.ବ୍ର.ସୁ. ୧୭/୩୪

ଉପେନ୍ଦ୍ର ପତ୍ନୀ ବିୟୋଗ ଜନିତ ଦୁଃଖକୁ ଅନୁଭବ କରିଥିଲେ । ସେ ବିରହାନଳରେ ଦଗ୍ଧିଭୂତ ହୋଇଥିଲେ । ଏହି ବିରହାନୁଭୂତିକୁ ସେ କାବ୍ୟ ଗୁଡ଼ିକରେ ବ୍ୟକ୍ତ କରିଛନ୍ତି । ତାଙ୍କର ପ୍ରଭୁ ରାମଚନ୍ଦ୍ର ମଧ ସୀତାଙ୍କ ବିଚ୍ଛେଦରେ ବିରହ ଯନ୍ତ୍ରଣା ସ୍ୱୀକାର କରିଥିଲେ । ତେଣୁ କବି ଉପେନ୍ଦ୍ର ରାମଚନ୍ଦ୍ରଙ୍କୁ ସାକ୍ଷୀକରି କହିଛନ୍ତି–

(କ) "ହେ ରାମ କାମସୁନ୍ଦର ଗୁଣବନ୍ତ ଶିଳୀମୁଖ ଧନୁ ଧାରଣ
ସୀତାମ୍ବୁଜମୁଖୀ ରତି ପ୍ରମୋଦିତ ହରି ମିତ୍ର ପଣ ପ୍ରମାଣ ।
ଜାଣ ବିରହ । ବିପତ୍ତି ହର ତତପର
କହେ ଉପଇନ୍ଦ୍ର ଭଞ୍ଜ ବୀରବର ଏ ଛାନ୍ଦ ଅତି ମନୋହର ।"

— ଲାବଣ୍ୟବତୀ – ୧୨/୩୮

(ଖ) "ଆହେ ରାମ କରୁଣାସାଗର ଚାପଧର
ଖରପ୍ରଖର ଦୂଷଣ ତ୍ରିଶିର ପ୍ରହାର ହେ
ମୁନିଜନ ତୋଷ ଜନ ପଦସ୍ଥିତ କର
ଉପଇନ୍ଦ୍ର ଭଞ୍ଜ ବୀରବର ତାପ ହର ହେ ।" – ଲାବଣ୍ୟବତୀ (୨୮/୬)

(ଗ) "ଯେଉଁ ଅଭିରାମ ରାମ ବାମନ ମୂର୍ତ୍ତି
ଉପଇନ୍ଦ୍ର ଭଞ୍ଜର ସକଳ ସମ୍ପତ୍ତି ।"– କୋ.ବ୍ର.ସୁ ୯/୪୫

(ଘ) "ଦଶରଥ ରାଜା ପ୍ରିୟ ନନ୍ଦନ
ସୀତା ହୃଦଦେଶ ଚନ୍ଦ୍ର ଚନ୍ଦନ
ମୋର ମହା କଷଣ ମାନଭଞ୍ଜନ
ଭାବେ ଭଣଇ ଉପଇନ୍ଦ୍ର ଭଞ୍ଜ ।" (ଭାବବତୀ- ଚତୁର୍ଥଛାନ୍ଦ)

(ଙ) ସଦାନନ୍ଦ ସୁଖଦାତା ହେ କୃଷ୍ଣସୁନ୍ଦର
ସୁବାହୁ ବିଜୟୀ ଚନ୍ଦ୍ରହାସେ ଶୋଭାକର ଯେ ।
ସୀତାବ୍ଜ ବଦନ ମନୋହର ରୂପଧର
ସନ୍ତାପ ଉପଇନ୍ଦ୍ର ଭଞ୍ଜରମନୁ ହର ହେ । (ସୁ.ପ.- ପ୍ରଥମଛାନ୍ଦ)

ଉପେନ୍ଦ୍ର ହରି ଓ ହରଙ୍କର ଉପାସକ ଥିଲେ । ଏହା ତାଙ୍କର କାବ୍ୟରୁ ପ୍ରତିପାଦିତ ହୁଏ । ହରିହରଙ୍କ ପ୍ରତି ତାଙ୍କର ଭକ୍ତିଭାବ ଅତୁଟ ଥିଲା । 'ରସଲେଖା' କାବ୍ୟରେ କବିଙ୍କର ହରିହର ସ୍ତୁତି ବେଶ୍ ପ୍ରାଣସ୍ପର୍ଶୀ ଓ ଭକ୍ତିଭାବ ରଞ୍ଜକ ହୋଇପାରିଛି –

"ଜୟ ମକର କୁଣ୍ଡଳୀ କୁଣ୍ଡଳ କୁଣ୍ଡଳୀ
ଘନସାର ଶ୍ୟାମଘନ ସାରକାନ୍ତି ଝଳି ଯେ ।
ଜୟ ତ୍ରିପୁର ମୋହନ ତ୍ରିପୁର ଦହନ
ଖଗ ପୁଙ୍ଗବ ବାହନ ପୁଙ୍ଗବ ବାହନ ଯେ ।
ଜୟ ଚାମୀ କରାକୃତି ବାସ କୃତିବାସ
ପଞ୍ଚାସ୍ୟ ଜିତ ବିକ୍ରମ ଯେ ପୁଣି ପଞ୍ଚାସ୍ୟ ଯେ ।
ଜୟ କମଳ ଦଳ ଲୋଚନ ତ୍ରିଲୋଚନ
ମାର ଯାର କୁମାର କୁମାର ଯା ନନ୍ଦନ ଯେ ।
ଜୟ ପାଣ୍ଡବ ପକ୍ଷକ ତାଣ୍ଡବ ପଣ୍ଡିତ
ଚନ୍ଦ୍ର ମୁକୁଟଧର ଚନ୍ଦ୍ର ମୁକୁଟ ସେତ ଯେ ।

ଜୟ ଭବଶ୍ରମ ଦୂରକାରୀ ଭୀମ ଭୀମ
ନୀଳକଣ୍ଠ ପୁଚ୍ଛଚୂଡ଼ ନୀଳକଣ୍ଠ ନାମ ଯେ ।
ନୀଳକଣ୍ଠ ନୃପସୁତ ଭାବି ହରିହର
ମାନସ ବଳାଇ କରିବାକୁ ଗୀତ ସାର ଯେ ।"

(ରସଲେଖା – ୧ମ ଛାନ୍ଦ)

ଉପେନ୍ଦ୍ର ରାମଭକ୍ତିର ଶ୍ରେଷ୍ଠ ପରିପ୍ରକାଶ । ତାଙ୍କର ସର୍ଜନଶୀଳ ପ୍ରତିଭାର ମୂଳ ହେତୁ ରୂପେ ସେ ଶ୍ରୀରାମଚନ୍ଦ୍ରଙ୍କୁ ବିଚାର କରିଛନ୍ତି । ଏହା ହୁଏତ ସମର୍ପଣଭାବର ଶ୍ରେଷ୍ଠ ଦ୍ୟୋତକ ହୋଇପାରେ, ମାତ୍ର ଏକଥା ସତ୍ୟ ଯେ ଉପେନ୍ଦ୍ର ତାଙ୍କର ପ୍ରତ୍ୟେକ କାବ୍ୟର ସୃଜନସମୟରେ ଶ୍ରୀରାମଚନ୍ଦ୍ରଙ୍କର ଶୁଭାଶିଷ କାମନା କରିଛନ୍ତି । ଉପେନ୍ଦ୍ରଙ୍କ ସର୍ଜନଶୀଳ ମାନସ ରାମଭକ୍ତି ଭାବନାରେ ଉଦ୍‌ବୁଦ୍ଧ ଥିଲା । ତେଣୁ କାବ୍ୟସ୍ରଷ୍ଟା ଉପେନ୍ଦ୍ର ତାଙ୍କର ସମସ୍ତ ରଚନାକର୍ମକୁ ଶ୍ରୀରାମଙ୍କର ରଚନା ବୋଲି ସ୍ୱୀକାର କରି ତାଙ୍କର ଇଷ୍ଟଦେବଙ୍କର ଗୁଣାଗାନ କରିଛନ୍ତି –

"ହଂସ ବଂଶକୁ ତୋଷିତ ସର୍ବଦା ଶ୍ରୁତି ରଞ୍ଜିତ
କର୍ବୁରକାନ୍ତ ଗଞ୍ଜିତ କାନ୍ତି ଦୀପିତ ଏ
ସେ ରାମ ବିଧିରେ ଧାୟୀ ଭଞ୍ଜ ବୀରବର କହି
ତୁମ୍ଭ ରଚନା ସମସ୍ତ ପୁରୁ ଏ ଗୀତ ହେ ।"

– ଲାବଣ୍ୟବତୀ ୧୩/୬୯

ଉପେନ୍ଦ୍ରଙ୍କର ଦୁଃଖଥିଲା ଅସୀମ । ସେ ଥିଲେ ପିତୃହରା, ପତ୍ନୀହରା ଓ ରାଜ୍ୟହରା । ଏହି ଦୁଃଖକୁ ଲାଘବ କରିବା ପାଇଁ ସେ ଦୁର୍ଗତିନାଶିନୀ ଦୁର୍ଗାଙ୍କୁ ମଧ ସ୍ମରଣ କରିଛନ୍ତି । ବ୍ୟାଘ୍ରଦେବୀ ତାଙ୍କ ଇଷ୍ଟଦେବୀ ଥିଲେ । ଏହା ବ୍ୟତୀତ ମାଳିସାହି ଗ୍ରାମରେ ଗତୀଶ୍ୱର ମନ୍ଦିର ପ୍ରାଙ୍ଗଣରେ ଅଷ୍ଟଭୁଜା ନାରାୟଣୀ ସଂସ୍ଥିତା । ସେହି ଆଦିମାତାଙ୍କୁ ସ୍ମରଣ କରି ଉପେନ୍ଦ୍ର ଗାଇଛନ୍ତି –

"ମହିଷବିଜୟୀ ଅତି ସୁରଭି ସ୍ୱରୂପ
ସଦାଶିବ ସୁଖଦାନ କରଣେ ଲୋଲୁପ
ରାମ ଦୁର୍ଗା ଇଷ୍ଟଦେବୀ,
ଉପଇନ୍ଦ୍ର ବୀରବର ଦୁଃଖନାଶେ ଭାବି ।"

– ଲାବଣ୍ୟବତୀ ୧୭/୪୯

ଉପେନ୍ଦ୍ର ଭଞ୍ଜ ଥିଲେ ଉଚ୍ଚକୋଟୀର ସର୍ଜନଶୀଳ କବି । ତାଙ୍କ ସର୍ଜନଶୀଳତାର ପଟାନ୍ତର ନାହିଁ । ସୃଜନଶୀଳତା ଦିବ୍ୟ ଅଭିପ୍ରେରଣାରୁ ସୃଷ୍ଟି ହୁଏ । ସୃଜନାତ୍ମକ ରଚନା ମୁଖ୍ୟତଃ ଅସୀମ ଚେତନା ମଧ୍ୟରୁ ପ୍ରେରଣା ପାଏ । ସ୍ରଷ୍ଟା ଏକ ଅବତରଣ । ସୃଜନ କର୍ମ ସ୍ରଷ୍ଟାପୁରୁଷର ଅପୂର୍ବ ରସାନୁଭୂତିର ପରିପ୍ରକାଶ । ପ୍ରତ୍ୟେକ ସୃଷ୍ଟିକର୍ମର ଦୁଇଗୋଟି କାରଣ ରହିଛି । ଯଥା ଉପାଦାନ କାରଣ ଓ ନିମିତ୍ତ କାରଣ । ସର୍ଜନଶୀଳ ସ୍ରଷ୍ଟା ଜଣେ ଅନୁପ୍ରେରିତ ବ୍ୟକ୍ତି (Incspired person)। ମନୁଷ୍ୟର ମନୋଭୂମି ହେଉଛି ସୃଜନଶୀଳତାର ମୂଳାଧାର । ମନୋବିଜ୍ଞାନୀ ଉଇଲିୟମ୍ ଜେମ୍ସ୍ (୧୮୪୨-୧୯୧୦) ମନୁଷ୍ୟର ମନକୁ ଚେତନ (consciousness) ଅବଚେତନ (Sub-consciousness) ଓ ଅଚେତନ (Un- consciousness) – ଏହି ତିନି ସ୍ତରରେ ବିଭକ୍ତ କରିଥିଲେ । ପରବର୍ତ୍ତୀକାଳରେ ବିଶିଷ୍ଟ ମନୋବିଜ୍ଞାନୀ ସିଗମଣ୍ଡ ଫ୍ରଏଡ୍ (୧୮୫୬-୧୯୩୯) ମନୁଷ୍ୟମନର ଅବଚେତନ ସ୍ତର ଉପରେ ଗଭୀର ଅଧ୍ୟୟନ କରିଥିଲେ । ମନୁଷ୍ୟ ଜୀବନରେ ଅବଚେତନ ସ୍ତରର ଭୂମିକା ଗୁରୁତ୍ୱପୂର୍ଣ୍ଣ । ଏହି ଅବଚେତନ ସ୍ତରରେ ମନୁଷ୍ୟର ସକଳ କାମନା, ବାସନା, ଇଚ୍ଛା, ଅଭିଳାଷ ପ୍ରଭୃତି ନିହିତ ଥାଏ । ମଣିଷର ସମସ୍ତ ଅନୁଭୂତି ଏହି ସ୍ତରରେ ଗଚ୍ଛିତ ଥାଏ । ଏହି ଅବଚେତନ ସ୍ତରରେ ସୃଜନ ଶକ୍ତି ନିହିତ ଥାଏ । ସୃଜନ ପ୍ରକ୍ରିୟା ଅସୀମ । ସୃଜନ ପ୍ରକ୍ରିୟାର ମୂଳ ଉତ୍ସ ହେଉଛି ଅଭିପ୍ରେରଣା (Motivation) । ସୃଜନ ପ୍ରକ୍ରିୟାରେ କଳ୍ପନା (imagination), ପ୍ରେରଣା (Inspiration), ସଂବୋଧି (Intitution) ଏବଂ ସୌନ୍ଦର୍ଯ୍ୟବୋଧ (Aesthetic Sensibility) ର ଭୂମିକା ରହିଛି । ମନୁଷ୍ୟର ମଗ୍ନ ଅବଚେତନ ସର୍ଜନାତ୍ମକ ରଚନାର ପ୍ରାଣକେନ୍ଦ୍ର । ସୃଜନର ପ୍ରକ୍ରିୟା ହେଉଛି ପ୍ରତିଭା । ଏହା ନୈସର୍ଗିକ । ନୈସର୍ଗିକ ପ୍ରତିଭା ସର୍ଜନାତ୍ମକ ରଚନାର ଜନନୀ । ସୃଜନର ଉପାଦାନ ଗୁଡ଼ିକ ହେଉଛି ମେଧା ବା ବୁଦ୍ଧି, ପୂର୍ବାନୁଭୂତି, ବ୍ୟକ୍ତିତ୍ୱ, ଚିନ୍ତାରଶୈଳୀ, ସାହାଯ୍ୟକାରୀ ବାତାବରଣ, ଶ୍ରମ, ଆଗ୍ରହ ଓ ସାମର୍ଥ୍ୟ ।

ଆତ୍ମପ୍ରକାଶ କରିବା ସ୍ୱାଭାବିକ ପ୍ରବୃତ୍ତି । ଅତଳ ପଙ୍କ ଭିତରେ ବୀଜଟିଏ ଥିଲେ ସେ ଯେପରି ପଙ୍କ ଓ ପାଣିକୁ ଅତିକ୍ରମ କରି ଆତ୍ମପ୍ରକାଶ କରେ, ସେହିପରି ସ୍ରଷ୍ଟାପୁରୁଷର ମନଗହନର ଶକ୍ତିଶାଳୀ ଆବେଗଟି ମଧ୍ୟ ସମସ୍ତ ଆବରଣକୁ ଭେଦ କରି ଆତ୍ମପ୍ରକାଶ କରେ । ସୃଜନଶୀଳ ଲେଖକ ଜଣେ

ଏକେଲା ମନୁଷ୍ୟ । ସତ୍, ସାର ଓ ଦିବ୍ୟ ସୃଜନଶୀଳ ଏକେଲା ମନୁଷ୍ୟର ପ୍ରାଣ । ଐଶ୍ୱର୍ଯ୍ୟମୟ ଓ ଆଲୋକମୟ ହେଉଛି ଏକେଲା ମନୁଷ୍ୟର ହୃଦୟ । ସୃଜନଶୀଳତା କ୍ରାନ୍ତିକାରୀ ସୃଷ୍ଟି ବିଜୁଳି ଝଲକ ପରି ଆସେ । କ୍ରୋଚେଙ୍କ ଭାଷାରେ ଏହା ହେଉଛି – 'Intitutive knowledge'। ଏହାକୁ ମଧ୍ୟ 'Insight' କୁହାଯାଇପାରେ ।

ସୃଜନର ପ୍ରଥମ ଲକ୍ଷଣ ମୌଳିକତା । ଏହା ହେଉଛି ଅନନ୍ୟ । ସୁତରାଂ ଅନନ୍ୟତା ଏହାର ଦ୍ୱିତୀୟ ଲକ୍ଷଣ । ବ୍ୟକ୍ତିର ସ୍ମୃତି ଏକ ବିଶାଳ ଖଣ୍ଡର ଅଂଶବିଶେଷ । ପ୍ରତ୍ୟେକ ବ୍ୟକ୍ତିର ସ୍ମୃତି ଅବଚେତନ ସ୍ତରରେ ଗର୍ଭିତ । ପ୍ରତ୍ୟେକ ସ୍ମୃତି ଆବେଗ (Emotion) ସମନ୍ୱିତ । ସ୍ରଷ୍ଟାପୁରୁଷର ଅବଚେତନର ଶକ୍ତିଶାଳୀ ଆବେଗଟି ସମସ୍ତ ଆବରଣକୁ ଭେଦକରି ସ୍ୱତଃସ୍ଫୁର୍ତ୍ତ (Spontaneous) ଭାବରେ ଆତ୍ମପ୍ରକାଶ କରେ ।

କାବ୍ୟ ରଚନା ଏକ ସର୍ଜନା । ସର୍ଜନାତ୍ମକ ସାହିତ୍ୟ ନିରାଲମ୍ବ ସାହିତ୍ୟ । ଏହା ସ୍ୱୟଂକ୍ରିୟ, ସ୍ୱୟଂପ୍ରଭ ଓ ସ୍ୱୟଂ ସମ୍ପୂର୍ଣ୍ଣ । ସୃଜନ ସାହିତ୍ୟରେ ବ୍ୟକ୍ତି ନିଷ୍ଠତା, ବସ୍ତୁନିଷ୍ଠତା ଓ ସତ୍ୟନିଷ୍ଠତା – ଏହି ତ୍ରିଧାରା ଲକ୍ଷଣୀୟ । କବିର ଗଭୀର ଜୀବନାନୁଭୂତି ଯେତେବେଳେ କଳ୍ପନାରେ ରସାଣିତ ହୁଏ ଏବଂ ତାହା ଯେତେବେଳେ ଉଚିତ ଭାଷା ଓ ଶୈଳୀ ମାଧ୍ୟମରେ ପ୍ରକାଶିତ ହୁଏ, ତାହା ଅପୂର୍ବ ସୃଜନଶୀଳତାର ସ୍ୱାକ୍ଷର ବହନ କରେ । ସୃଜନଶୀଳତା ଏକ ବିରଳ ବ୍ୟାପାର । ତେଣୁ ଇଂରାଜୀରେ କୁହାଯାଇଛି – 'Creaters are rather rare' – ଜୀବନରେ ଏଭଳି ମୁହୂର୍ତ୍ତ ଆସେ ଯେତେବେଳେ ଅଲେଖକ ଲେଖକ ହୁଏ, ଅକବି କବି ହୁଏ । ଏହାକୁ ହିଁ ସ୍ରଷ୍ଟାପୁରୁଷର ଅବତରଣ ବୋଲି କୁହାଯାଏ । କବି କିନ୍ତୁ ଏହାକୁ ଭୂମାପୁରୁଷଙ୍କର ନିର୍ଦ୍ଦେଶ ବୋଲି ବ୍ୟକ୍ତ କରିଥାନ୍ତି । ଯେପରି –

(କ) "ଜନ୍ମରୁ ମୁରୂଖ ମୁହିଁ ନାହିଁ ଶାସ୍ତ୍ର ଜ୍ଞାନ
ତୁ ଯାହା କହୁଛୁ ମୁଁ ତାହା କରଇ ଲିଖନ ।" (ସାରଳା ଦାସ)

(ଖ) "କୋଟି ବ୍ରହ୍ମାଣ୍ଡ ପ୍ରଭୁ ଜଗନ୍ନାଥ
କରନ୍ତି ପୂର୍ଣ୍ଣ ଜନ ମନୋରଥ
କଲି ମୁଁ ଏହି ଘେନି ଅଭିମତ
କରିବାକୁ ରସକଲ୍ଲୋଳ ଗୀତ
କହିଲେ ସେ ଯେଣୁ
କରରେ ମାତ୍ର ଲେଖିଲି ମୁଁ ତେଣୁ ।" (ଦୀନକୃଷ୍ଣ ଦାସ)

(ଗ) "ହୟଗ୍ରୀବ ମହାପ୍ରଭୁ ପ୍ରତାପେ
ଥୋଡ଼ା ନୁହେଁ ଲୋଡ଼ା କରନ୍ତି ନୃପେ
ଯୋଡ଼ା ହେବା ମୋ ପ୍ରୌଢ଼ି କବିତାକୁ
ବଳି ବଳି ରସଦାନୀ କର୍ଣ୍ଣକୁ
ଭଲେ ଭଲ, ଖଣ୍ଡେ ଖଣ୍ଡ ଯେ
ନବଦୂର୍ବାଦଳ ଶ୍ୟାମଳ କୃପାରୁ
ମୋ ନାମ ଉତ୍କଳଘଣ୍ଟ ଯେ ।" (ଯଦୁମଣି ମହାପାତ୍ର)

ଉପେନ୍ଦ୍ର ଭଞ୍ଜ ମଧ୍ୟ ତଦନୁରୂପ ଲେଖିଛନ୍ତି –

"ତାରକ ମନ୍ତ୍ର ପରସାଦେ
ମୋହର କବି ପଣ ଉଦେ ।" (ଲାବଣ୍ୟବତୀ)

"କବି ଉପଇନ୍ଦ୍ର ତବ କୃପାରେ ହୋଇଛି
ଏଥେ ମନୋରଥ ସାର୍ଥେ କି ସଂଶୟ ଅଛି ଯେ ।" (କୋ.ବ୍ର.ସ୍ତୁ)

ପବିତ୍ର ରାମତାରକ ମନ୍ତ୍ର ସିଦ୍ଧକରି ଉପେନ୍ଦ୍ର 'ବିଚିତ୍ରକବିତ୍ୱ' ଶକ୍ତିର ଅଧିକାରୀ ହୋଇଥିଲେ । ଏହି ବିଚିତ୍ର କବିତ୍ୱ ଏକ ବିରଳ ବ୍ୟାପାର । ଓଡ଼ିଆ କାବ୍ୟଯୁଗର ଅନ୍ୟ କୌଣସି କବି 'ବିଚିତ୍ର କବିତ୍ୱ'ର କଥା କହି ନାହାନ୍ତି । ବିଚିତ୍ର କବିତ୍ୱ କହିଲେ ଭାବବୈଚିତ୍ର୍ୟ, କଳ୍ପନା ବୈଚିତ୍ର୍ୟ, ରଚନାବୈଚତ୍ର୍ୟ, ଶବ୍ଦ ବୈଚିତ୍ର୍ୟ ଓ ଅର୍ଥବୈଚିତ୍ର୍ୟକୁ ବୁଝାଇଥାଏ । ଉପେନ୍ଦ୍ର ଭଞ୍ଜ ବିଭୁଦତ୍ତ କବିତ୍ୱ ସହିତ ଗଭୀର ଅଧ୍ୟବସାୟ ଓ ଶାସ୍ତ୍ରାନୁଶୀଳନ ବଳରେ ଅଦ୍ଭୁତ କବିତ୍ୱ ଶକ୍ତିର ଅଧିକାରୀ ଥିଲେ । ଉପେନ୍ଦ୍ର ଭଞ୍ଜ ଯେଉଁ ଦୁଃଖାନୁଭୂତି ପାଇଥିଲେ, ତାହାକୁ ସେ ମନୋରାଜ୍ୟରେ ସୁରୁଚିପୂର୍ଣ୍ଣ ରୂପାନ୍ତରୀକରଣ (Sublimation) କରି ପାରିଥିଲେ । ଏହି ରୂପାନ୍ତରୀକରଣ ପ୍ରକ୍ରିୟାରୁ ସେ ଉଚ୍ଚକୋଟୀର କବିତ୍ୱ ଶକ୍ତି ଲାଭ କରିଥିଲେ । ବହୁକାବ୍ୟର ସ୍ରଷ୍ଟା ଉପେନ୍ଦ୍ର ଭଞ୍ଜ ଓଡ଼ିଆ ସାହିତ୍ୟ ଜଗତରେ ଅନନ୍ୟ ସ୍ଥାନ ଅଧିକାର କରନ୍ତି ।

## କବିଙ୍କର ଉପାଧି ପ୍ରାପ୍ତି :

ଉପେନ୍ଦ୍ର ଭଞ୍ଜ ନବଦୁର୍ଗ ରାଜଦରବାରରୁ 'ବୀରବର' ଉପାଧି ଲାଭ କରିଥିଲେ । ନୟାଗଡ଼ ରାଜା ପୁରୁଷୋତ୍ତମ ସିଂହ ମାନଧାତା ଭଞ୍ଜଙ୍କ ଅପୂର୍ବ କବିତ୍ୱ ଓ କାବ୍ୟସାଧନା ପାଇଁ ତାଙ୍କୁ ଏହି ସାରସ୍ୱତ ଉପାଧିରେ ଭୂଷିତ କରିଥିଲେ । କବି ଉପେନ୍ଦ୍ର ତାଙ୍କ ଲାବଣ୍ୟବତୀ, ରସିକହାରାବଳୀ,

ପ୍ରେମସୁଧାନିଧି, ଲାବଣ୍ୟନିଧି, ରସପଞ୍ଚକ, ସୁବର୍ଣ୍ଣରେଖା, କୋଟିବ୍ରହ୍ମାଣ୍ଡସୁନ୍ଦରୀ, ବୈଦେହୀଶବିଳାସ, ଗୀତଭିଧାନ ପ୍ରଭୃତି ଗ୍ରନ୍ଥରେ ଏହି ପଦବୀକୁ ବ୍ୟବହାର କରିଛନ୍ତି ।

ଉପେନ୍ଦ୍ରଙ୍କର ଅନ୍ୟ ଏକ ଉପାଧି ହେଉଛି 'ମଙ୍ଗରାଜ' । ଏହି ଉପାଧିଟିକୁ ସେ ପୁରୀ ରାଜଦରବାରରୁ ପ୍ରାପ୍ତ ହୋଇଥିଲେ । ଉପେନ୍ଦ୍ର ତାଙ୍କର ଭାବବତୀ, ଚଉପଦୀଭୂଷଣ, କୁଞ୍ଜବିହାର, ରସପଞ୍ଚକ, ଯମକରାଜ ଚଉତିଶା, ଚିତ୍ରକାବ୍ୟ ବନ୍ଧୋଦୟ କାବ୍ୟରେ ଏହି 'ମଙ୍ଗରାଜ' ପଦବୀକୁ ବ୍ୟବହାର କରିଛନ୍ତି ।

ଏହାବ୍ୟତୀତ ତାଙ୍କର କେତେକ ରଚନାରେ 'କବିକୁଳଚନ୍ଦ୍ର', 'ସୁକବି', 'ମହୀପତି', 'ନୃପତି', 'ନୃପ', 'ନୃପବର', 'କବିଚକ୍ରବର୍ତ୍ତୀ' ଭଣିତାମାନ ରହିଛି ।

'ପ୍ରାଚୀନ ଉତ୍କଳ' ଗ୍ରନ୍ଥରେ ଜଗବନ୍ଧୁସିଂହ ଉପେନ୍ଦ୍ରଙ୍କୁ 'କବିସମ୍ରାଟ' ଆଖ୍ୟା ପ୍ରଦାନ କରିଥିଲେ । ବର୍ତ୍ତମାନ ସମଗ୍ର ଓଡ଼ିଶାରେ ଉପେନ୍ଦ୍ର 'କବିସମ୍ରାଟ' ରୂପେ ସୁପରିଚିତ । ଜୟପୁରର ରାଜା ସାର ବିକ୍ରମଦେବ ବର୍ମା ଯେପରି 'ସାହିତ୍ୟ ସମ୍ରାଟ' ରୂପେ ଖ୍ୟାତି ଅର୍ଜନ କରିଛନ୍ତି, ଉପେନ୍ଦ୍ର ଭଞ୍ଜ ସେହିପରି ଅଗଣିତ ଓଡ଼ିଆଙ୍କର ଜନମାନସରେ 'କବିସମ୍ରାଟ' ରୂପେ ଚିର ଭାସ୍ୱର । ସଂପ୍ରତି ଉପେନ୍ଦ୍ରଙ୍କୁ ମଧ୍ୟ 'ଶବ୍ଦସମ୍ରାଟ' ଓ 'ସଙ୍ଗୀତ ସମ୍ରାଟ' ଭାବରେ ଆଲୋଚନା କରାଗଲାଣି । ବସ୍ତୁତଃ ଉପେନ୍ଦ୍ର ଭଞ୍ଜ ହେଉଛନ୍ତି ଓଡ଼ିଆ ସାରସ୍ୱତ ଜଗତରେ 'ମହାକବି' ।

## କବିଙ୍କ ଶେଷଜୀବନ :

ଉପେନ୍ଦ୍ର ଭଞ୍ଜ ଥିଲେ ରାମାନନ୍ଦୀପନ୍ଥୀ ବୈଷ୍ଣବ । ମର୍ଯ୍ୟାଦା ପୁରୁଷୋତ୍ତମ ପ୍ରଭୁ ଶ୍ରୀରାମଚନ୍ଦ୍ର ଥିଲେ ତାଙ୍କର ଉପାସ୍ୟ ଦେବତା । କିନ୍ତୁ କବି ଉପେନ୍ଦ୍ର ଶ୍ରୀଜଗନ୍ନାଥ ପ୍ରାଣଗତ ଥିଲେ । ସେ ଶ୍ରୀଜଗନ୍ନାଥଙ୍କୁ ଅବତାରୀ ପୁରୁଷ ରୂପେ ବିଚାର କରିଥିଲେ । ତେଣୁ ତାଙ୍କ ଜୀବନରେ ଶ୍ରୀକ୍ଷେତ୍ର ରହଣିକୁ ସେ ଶ୍ରେୟ ବୋଲି ବିଚାର କରୁଥିଲେ । ଯଦିଓ ସେ ଶ୍ରୀକ୍ଷେତ୍ରକୁ ଅନେକଥର ଯାତ୍ରା କରିଛନ୍ତି, ମାତ୍ର ଶେଷଜୀବନରେ ସେ ନୀଳାଚଳଧାମ ଠାରେ ଅବସ୍ଥାନ କରୁଥିଲେ । ଉଲ୍ଲେଖ ରହିଛି ଯେ କବି ଉପେନ୍ଦ୍ର ପୁରୁଷୋତ୍ତମରେ ଅବସ୍ଥାନ କରୁଥିବାବେଳେ ବଙ୍ଗଳାର ପ୍ରସିଦ୍ଧ କବି ଭାରତ ଚନ୍ଦ୍ର ମଧ୍ୟ ଏଠାକୁ ଆଗମନ କରିଥିଲେ । ଉଭୟ କବିଙ୍କ ମଧ୍ୟରେ ବନ୍ଧୁତା ରହିଥିଲା । ଏପରିକି ଭାରତଚନ୍ଦ୍ର କବି ଉପେନ୍ଦ୍ରଙ୍କ ଦ୍ୱାରା

ପ୍ରଭାବିତ ହୋଇଥିବା କଥା କୁହାଯାଇଛି । କବି ଭାରତଚନ୍ଦ୍ର 'ବନ୍ଦ୍ୟାସୁନ୍ଦର କାବ୍ୟ'ର କାବ୍ୟକାର ଥିଲେ ।

ଶ୍ରୀକ୍ଷେତ୍ର ରହଣି କାଳରେ ଉପେନ୍ଦ୍ର କେଉଁ ମଠରେ ରହୁଥିଲେ ତାହା ସ୍ଥିରୀକୃତ ହୋଇ ନାହିଁ । କେହି କେହି କହନ୍ତି ଓଡ଼ିଆ ମଠ, କେହି କେହି ମତ ଦିଅନ୍ତି ଘୁମୁସର ମଠ । କିନ୍ତୁ ତୃତୀୟ ମତଟି ହେଉଛି ଛାଉଣୀମଠ । ଏହି ମତଟି ଗ୍ରହଣଯୋଗ୍ୟ ହୋଇଛି । କବିଙ୍କର ପରଲୋକଗମନ ବେଳକୁ ତାଙ୍କୁ କେତେ ବର୍ଷ ହୋଇଥିଲା ସେ ବିଷୟରେ ତଥ୍ୟ ନାହିଁ । ତେବେ କବିଙ୍କ ଅନ୍ତିମ ରଚନା 'ନୀଳାଦ୍ରୀଶ ଚଉତିଶା'ରେ କବିଙ୍କର ବକ୍ତବ୍ୟ ହେଉଛି ଏହିପରି –

"କ୍ଷମାନିଧିଙ୍କୁ ବାରେ     କ୍ଷମ ମୁଁ ଦର୍ଶନରେ
କ୍ଷିତିଖ୍ୟାତିକୁ ସମର୍ପିଲି
କ୍ଷମ ମୋ ଅପରାଧ     କ୍ଷମ ମୋ ଜୀବସାଧ
କ୍ଷାତ ଚରଣ ତଳେ ଦେଲି
ହେ ନୀଳାଦ୍ରୀଶ
କ୍ଷୟତ ହେଲାଣି ଏ ପିଣ୍ଡ
କ୍ଷାଳ ଏ ଜଞ୍ଜାଳର ଦଣ୍ଡ
କ୍ଷାତି ଏ ଉପେନ୍ଦ୍ରର     କ୍ଷାତକୁଳ ବେଭାର
କ୍ଷେମ ଚରଣ ହେଉ ରୁଣ୍ଡ
ହେ ନୀଳାଦ୍ରୀଶ ।"

ଉପର୍ଯ୍ୟୁକ୍ତ ଉଦ୍ଧୃତିରେ ରହିଥିବା 'କ୍ଷୟ ତ ହେଲାଣି ଏ ପିଣ୍ଡ' ଉକ୍ତିରୁ ଜଣାପଡ଼େ ଯେ ଉପେନ୍ଦ୍ର ଅନ୍ୟୂନ ଷାଠିଏ ବର୍ଷରୁ ଉର୍ଦ୍ଧ୍ୱ ବଞ୍ଚିଥିଲେ । କାରଣ ଷାଠିଏ ପାଖାପାଖି ବୟସ ନ ହେଲେ ସାଧାରଣତଃ ପିଣ୍ଡ କ୍ଷୟ ହୁଏ ନାହିଁ । ତେଣୁ କବିସମ୍ରାଟ ଚାଳିଶି ବର୍ଷ ବଞ୍ଚିଥିଲେ ବୋଲି ଯାହା କୁହାଯାଏ, ତାହା ସତ୍ୟ ବୋଲି ବିଶ୍ୱାସ ହୁଏ ନାହିଁ । ଉପେନ୍ଦ୍ର ପ୍ରାୟ ଷାଠିଏ / ବାଷଠି ବର୍ଷ ବଞ୍ଚି ପୁରୁଷୋତ୍ତମ ଧାମରେ ଇହଲୀଳା ସମ୍ବରଣ କରିଥିଲେ ।

❑❖❑

## ଦ୍ୱିତୀୟ ପରିଚ୍ଛେଦ

# କବିସମ୍ରାଟଙ୍କ ରଚନାବଳୀ ଏବଂ କେତେକ ପ୍ରସିଦ୍ଧ କାବ୍ୟର ସଂକ୍ଷିପ୍ତ ଆଲୋଚନା

ବହୁ କାବ୍ୟର ରଚୟିତା ଭାବରେ କବିସମ୍ରାଟ ଉପେନ୍ଦ୍ର ଭଞ୍ଜ ଅସାମାନ୍ୟ ଗୌରବର ଅଧିକାରୀ । ସେ ଥିଲେ ନିରଳସ ସାଧକ । ଉଚ୍ଚକୋଟୀର ପ୍ରତିଭାସମ୍ପନ୍ନ କାବ୍ୟକାର । କାବ୍ୟ ରଚନାରେ ସେ ନିରନ୍ତର ବ୍ରତୀ ଥିଲେ । କାବ୍ୟ ରଚନାରେ ସେ ଲାଭ କରିଛନ୍ତି ଦିବ୍ୟାନନ୍ଦ । ତାଙ୍କର ଜୀବନବ୍ୟାପୀ ସାଧନାଯୋଗୁଁ ଉତ୍କଳ ଭାରତୀ ଅପୂର୍ବ ଶ୍ରୀରେ ବିମଣ୍ଡିତ ହୋଇଛନ୍ତି । କବିଗୁରୁ ଉପେନ୍ଦ୍ର ନବଦୁର୍ଗର ତତ୍କାଳୀନ ରାଜା ପୁରୁଷୋତ୍ତମ ସିଂହ ମାନଧାତାଙ୍କ ଠାରୁ 'ବୀରବର' ଉପାଧି ଲାଭ କରିଥିଲେ । ଏହି ଉପାଧିକୁ ସେ ବିଭିନ୍ନ କାବ୍ୟରେ ବ୍ୟବହାର କରିଛନ୍ତି । ସେ ପୁରୀ ଗଜପତି ମହାରାଜାଙ୍କ ଠାରୁ "ମଙ୍ଗରାଜ" ଉପାଧି ପ୍ରାପ୍ତ ହେବା କଥା କୁହାଯାଇଛି । କିନ୍ତୁ ଉପେନ୍ଦ୍ର ନିଜକୁ କବିକୁଳଚନ୍ଦ୍ର ଭାବରେ ପରିଚତ ଦେଇଛନ୍ତି । ଉପେନ୍ଦ୍ରଥିଲେ ନୈସର୍ଗିକ କବି ପ୍ରତିଭାର ଅଧିକାରୀ । ତେଣୁ ସେ ସ୍ୱୟଂ ନିଜ ସମ୍ପର୍କରେ ଲେଖିଛନ୍ତି –

"କୋଷାଭିଧାନ ସାକ୍ଷାତ ଜନ, କବିତ୍ୱ ଛନ୍ଦ ବନ୍ଧେ କେ ସମାନ ?
କଥିତ କୀର୍ତ୍ତି ଗୀତେ ଏମିତି, କାଳିଦାସ ବାଣୀ ପରାୟସ୍ଫୂର୍ତ୍ତି ।"
(ରସପଞ୍ଚକ)

ଉପେନ୍ଦ୍ରଙ୍କ ଲେଖନୀ ଥିଲା ଅଜସ୍ରସ୍ରାବୀ । ବହୁ ଚଉପଦୀ, ଚଉତିଶା, ଗାହା, ଦୋହା, ପୋଇ, ଗୀତିକା, କାବ୍ୟକବିତାର ଅମର କବି ହେଉଛନ୍ତି ଉପେନ୍ଦ୍ର ଭଞ୍ଜ । କବି 'ଚିତ୍ରକାବ୍ୟ ବନ୍ଧୋଦୟ' କାବ୍ୟରେ ତାଙ୍କ ଦ୍ୱାରା ଲିଖିତ କାବ୍ୟକବିତାର ବିବରଣୀ ପ୍ରଦାନ କରିଛନ୍ତି । ସେ ଲେଖିଛନ୍ତି –

"କଲି ମୁଁ ଅନେକ ପ୍ରକାଶ ଗୀତେ –
ଅଶେଷ ଚଉତିଶା ଚଉପଦୀ । ତାହା କେତେ ଯେ କହିବି ସମ୍ପାଦି ।
ଗାହା ଦୋହା ଷୋଡ଼ଶେନ୍ଦୁ ଛ' ପୋଇ । ଇତ୍ୟାଦି କବିତା ଗଣନା ନାହିଁ ।

ରସ କୃଷ୍ଣ ବିଷୟ ଯେତେ ଗ୍ରନ୍ଥ । ଚିତ୍ତୋଇ ତହୁଁ କିଛି ଲେଖେ ଏଥ ।
ପୁରାଣ ଛାଇ କଳ୍ପନା ମାଧୁରୀ । ଚାରୁଚିତ୍ର ଲେଖା ହେମମଞ୍ଜରୀ ।
ରସଲେଖା କାମକଳା ଚରିତ । ମନୋରମା ପ୍ରେମଲତା ସୁଗୀତ ।
ଭାବବତୀ ମୁକ୍ତାବତୀ ପ୍ରମାଣ । ବରଜଲୀଳା ଯେ ଛାନ୍ଦ ଭୂଷଣ ।
ଷଡ଼ରତୁ କଳାକଉତୁକର । କ ନିୟମ ସାଦ୍ୟ ସୁଭଦ୍ରାସାର ।
ବୈଦେହୀଶ ବିଳାସ ସେହି କାବ୍ୟ । ପ୍ରସିଦ୍ଧ ଅବନା ଦ୍ୱାଦଶ ଛାନ୍ଦ ।
ରାମଲୀଳାମୃତ ଶେଷ ଚରିତ । ପ୍ରେମ ସୁଧାନିଧି ଯମକେ ସ୍ଥିତ ।
ରସିକ ହାରାବଳୀ ନାମେ ଗୀତ । କୁଞ୍ଜ ବିହାରାଦି ଶ୍ୟାମ ଚରିତ ।
ଅଲଙ୍କାର ରୀତି ରସପଞ୍ଚକ । ଲାବଣ୍ୟବତୀ ରସିକ ତୋଷକ ।
ପୁରୁଷୋତ୍ତମ ମାହାତ୍ମ୍ୟ ରଚନ । ନାନା ଶବ୍ଦକୋଷେ ଗୀତାଭିଧାନ ।
ଛାନ୍ଦ ଗୋଟି ତାରା ଚନ୍ଦ୍ରମା ପରି। ଯା' ନାମ କୋଟିବ୍ରହ୍ମାଣ୍ଡ ସୁନ୍ଦରୀ ।
ତ୍ରୈଲୋକ୍ୟମୋହିନୀ ଆଦି ଯେ ଗୀତ । ନିର୍ମିତ ଛାନ୍ଦ ପୋଥି ପାଞ୍ଚ ସାତ।"

ଉପେନ୍ଦ୍ର ଭଞ୍ଜଙ୍କ କାବ୍ୟସଂଖ୍ୟା କେତେ ଓ ସେ କ'ଣ କ'ଣ କାବ୍ୟଗ୍ରନ୍ଥ ରଚନା କରିଯାଇଛନ୍ତି ସେ ସମ୍ପର୍କରେ ଗବେଷକ ଓ ଐତିହାସିକମାନେ ଭିନ୍ନ ଭିନ୍ନ ମତ ପୋଷଣ କରିଛନ୍ତି । ୧୮୭୨ ମସିହାରେ ହଣ୍ଟର ସାହେବ (W.W. Hunter) ଭଞ୍ଜଙ୍କର ୪୩ ଖଣ୍ଡ ପୁସ୍ତକର ନାମ ପ୍ରକାଶ କରିଥିଲେ । ଭଞ୍ଜଙ୍କର ସମସ୍ତ ଜଣାଶୁଣା କାବ୍ୟ ସହିତ ଏହି ତାଲିକାରେ ବଘନ୍ତୀସ (Bachntisa, songs on krishna) ନାମକ ଏକ କାବ୍ୟର ନାମୋଲ୍ଲେଖ ରହିଛି । ଏହି ତାଲିକାରେ "କଳାକଉତୁକ"ର ନାମୋଲ୍ଲେଖ ନାହିଁ । ୧୯୧୪ ମସିହାରେ ତାରିଣୀ ଚରଣ ରଥ 'ଉତ୍କଳ ସାହିତ୍ୟର ଇତିହାସରେ'ରେ ଭଞ୍ଜଙ୍କର ପ୍ରକାଶିତ ଓ ଅପ୍ରକାଶିତ ୪୨ ଖଣ୍ଡ ପୁସ୍ତକ ନାମ ଉଲ୍ଲେଖ କରିଛନ୍ତି । ତାଙ୍କ ତାଲିକାରେ 'ବଘନ୍ତୀସ' ନାମଟି ନାହିଁ । ୧୯୨୩ ମସିହାରେ ବିଜୟ ଚନ୍ଦ୍ର ମଜୁମଦାର 'Selections from oriya Literature – Volume -I'ରେ ୪୨ ଗୋଟି ପୁସ୍ତକର ନାମ ଦେଇଛନ୍ତି । ୧୯୨୮ ମସିହାରେ ପଣ୍ଡିତ ବିନାୟକ ମିଶ୍ର 'ଓଡ଼ିଆ ସାହିତ୍ୟ ଇତିହାସ'ରେ ଭଞ୍ଜଙ୍କର ୪୧ ଗୋଟି ପୁସ୍ତକର ନାମ ଲେଖିଛନ୍ତି । ଉପେନ୍ଦ୍ର ଭଞ୍ଜଙ୍କ ରଚନାଗୁଡ଼ିକୁ ସେ ପାଞ୍ଚଭାଗରେ ବିଭକ୍ତ କରିଛନ୍ତି –

(୧) **ଗୀତିକା** – ଛପୋଇ, ଗାହା, ଦୋହା, ଚଉତିଶା, ଚଉପଦୀଭୂଷଣ, ଚଉପଦୀଚନ୍ଦ୍ର

(୨) **ପୌରାଣିକ କାବ୍ୟ** – ସୁଭଦ୍ରାପରିଣୟ, ଅବନାରସତରଙ୍ଗ, ବ୍ରଜଲୀଳା, ରାମଲୀଳାମୃତ, କୁଞ୍ଜବିହାର, ରାହାସଲୀଳା, କଳା କଉତୁକ, ବୈଦେହୀଶ ବିଳାସ ।

(୩) **କାଳ୍ପନିକ କାବ୍ୟ** – ହେମମଞ୍ଜରୀ, ଚିତ୍ରଲେଖା, ଲାବଣ୍ୟବତୀ, ରସଲେଖା, ସୁବର୍ଣ୍ଣରେଖା, କାମକଳା, ମନୋରମା, ପ୍ରେମଲତା,ଭାବବତୀ, ମୁକ୍ତାବତୀ, ପ୍ରେମସୁଧାନିଧି, ରସିକ ହାରାବଳୀ, କୋଟିବ୍ରହ୍ମାଣ୍ଡସୁନ୍ଦରୀ ତ୍ରୈଲୋକ୍ୟମୋହିନୀ, ଚନ୍ଦ୍ରକଳା, ଚନ୍ଦ୍ରରେଖା, ଇଚ୍ଛାବତୀ, କଳାବତୀ, ଶଶିରେଖା, ଶୋଭାବତୀ, ରସମଞ୍ଜରୀ ।

(୪) **ଆଳଙ୍କାରିକ କାବ୍ୟ** – ଛାନ୍ଦଭୂଷଣ, ଚିତ୍ରକାବ୍ୟ, ରସପଞ୍ଚକ

(୫) **ବିବିଧରଚନା** – ଷଡ଼ରତୁ, ଗୀତଭିଧାନ, ପୁରୁଷୋତ୍ତମ ମାହାତ୍ମ୍ୟ

୧୯୨୯ ମସିହାରେ ଜଗବନ୍ଧୁ ସିଂହ 'ପ୍ରାଚୀନ ଉତ୍କଳ' ପୁସ୍ତକରେ ୩୫ ଖଣ୍ଡ ପୁସ୍ତକର ନାମ ପ୍ରକାଶ କରିଛନ୍ତି । ୧୯୪୮ ମସିହାରେ ଡକ୍ଟର ହରେକୃଷ୍ଣ ମହତାବ 'ଓଡ଼ିଶା ଇତିହାସ'ରେ ଭଞ୍ଜଙ୍କର ଗ୍ରନ୍ଥ ସଂଖ୍ୟା ୬୮ ବୋଲି ଉଲ୍ଲେଖ କରିଛନ୍ତି । ୧୯୫୯ ମସିହାରେ ଅନନ୍ତ ପଦ୍ମନାଭ ପଟ୍ଟନାୟକ ଭଞ୍ଜଙ୍କର ପ୍ରକାଶିତ ୨୦ଟି ଓ ଅପ୍ରକାଶିତ ୩୮ ଗୋଟି ପୁସ୍ତକର ତାଲିକା ପ୍ରଦାନ କରିଛନ୍ତି । ଦାମୋଦର ଦାସ ୧୯୬୭ ମସିହାରେ ପ୍ରକାଶିତ ୨୭ଟି ଓ ଅପ୍ରକାଶିତ ୩୫ ଗୋଟି ପୁସ୍ତକର ନାମୋଲ୍ଲେଖ କରିଛନ୍ତି । ୧୯୭୪ ମସିହାରେ ଗୌରୀକୁମାର ବ୍ରହ୍ମା ଭଞ୍ଜକବିଙ୍କର ଗ୍ରନ୍ଥ ସଂଖ୍ୟା ୬୫ ବୋଲି ନିର୍ଣ୍ଣୟ କରିଛନ୍ତି । ସେ ଭଞ୍ଜଙ୍କର ୨୭ ଖଣ୍ଡ ପ୍ରକାଶିତ ପୁସ୍ତକ ଓ ୩୮ ଖଣ୍ଡ ଅପ୍ରକାଶିତ ପୁସ୍ତକର ତାଲିକା ପ୍ରଦାନ କରିଛନ୍ତି ।

ଉପେନ୍ଦ୍ର ଭଞ୍ଜଙ୍କ କତିପୟ କାବ୍ୟକୃତି ସମ୍ପର୍କରେ ଆଲୋଚନା କରାଯାଇଛି ।

**ରସଲେଖା –**

ବାଇଶିଗୋଟି ଛାନ୍ଦ ବିଶିଷ୍ଟ ଏହି କାଳ୍ପନିକ କାବ୍ୟଟି ଭଞ୍ଜ କାବ୍ୟମାନସର ଏକ ଅନୁପମ ସୃଷ୍ଟି । ଏହି କାବ୍ୟର ନାୟକ ସୁଧାନିଧି ନଗରର ରାଜା ଭାସ୍ୱତଙ୍କ ପୁତ୍ର ବିଶ୍ୱଭୂତି ଏବଂ ନାୟିକା କପିସାଞ୍ଜ ଋଷିଙ୍କ କନ୍ୟା ରସଲେଖା । ଏହି କାବ୍ୟଟି ଉପେନ୍ଦ୍ରଙ୍କର ପ୍ରାରମ୍ଭିକ ପର୍ଯ୍ୟାୟର ରଚନା ପରି ମନେ ହୁଏ । ଏଥିରେ କବି ହରିହରଙ୍କୁ ପୁଲକିତ ମନରେ ସ୍ତୁତି କରିଛନ୍ତି –

"ଜୟ ମକର କୁଣ୍ଡଳି କୁଣ୍ଡଳ କୁଣ୍ଡଳୀ
ଘନସାର ଶ୍ୟାମଘନ ସାର କାନ୍ତି ଝଳି ଯେ ।
ଜୟ ତ୍ରିପୁର ମୋହନ ତ୍ରିପୁର ଦହନ
ଖଗ ପୁଙ୍ଗବ ବାହନ ପୁଙ୍ଗବ ବାହନ ଯେ ।
ଜୟ ଋମୀ କରାକୃତି ବାସ କୃତ୍ତି ବାସ
ପଞ୍ଚାସ୍ୟ ଜିତ ବିକ୍ରମ ଯେ ପୁଣି ପଞ୍ଚାସ୍ୟ ଯେ ।
ଜୟ କମଳ ଦଳ ଲୋଚନ ତ୍ରିଲୋଚନ
ମାର ଯାର କୁମାର କୁମାର ଯା' ନନ୍ଦନ ଯେ ।
ଜୟ ପାଣ୍ଡବ ପକ୍ଷକ ତାଣ୍ଡବ ପଣ୍ଡିତ
ଚନ୍ଦ୍ର ମୁକୁଟଧର ଚନ୍ଦ୍ର ମୁକୁଟ ସେତ ଯେ ।
ଜୟ ଭବ ଶ୍ରମ ଦୂରକାରୀ ଭୀମ ଭୀମ
ନୀଳକଣ୍ଠ ପୁଚ୍ଛ ଚୂଡ଼ ନୀଳକଣ୍ଠ ନାମ ଯେ ।
ନୀଳକଣ୍ଠ ନୃପ ସୁତ ଭାବି ହରିହର
ମାନସ ବଳାଇ କରିବାକୁ ଗୀତସାର ।"

– ରସଲେଖା, ପ୍ରଥମ ଛାନ୍ଦ

ଏକଦା ବସନ୍ତ ଋତୁରେ କପିସାଞ୍ଚ ଋଷି (ସିନ୍ଧୁରାଜ କଦମ୍ବ ବଂଶୀୟ ବିଦ୍ୟୁନାଥଙ୍କ କନିଷ୍ଠ ପୁତ୍ର) ଶିଷ୍ୟମାନଙ୍କୁ ଅନ୍ୱେଷଣ କରି ରସୋଦୟ ବଣରେ ପହଞ୍ଚିଲେ । ସେଠାରେ ସେ ଚୋଳଦେଶ ରାଜକୁମାରୀ ଲୀଳାବତୀଙ୍କ ସୌନ୍ଦର୍ଯ୍ୟରେ ବିମୋହିତ ହୋଇ ତାଙ୍କୁ ବିବାହ କଲେ । ଏହି ଦମ୍ପତିଙ୍କ ଠାରୁ ରସଲେଖା ଜନ୍ମ ନେଲା । ଯୌବନ ପ୍ରାପ୍ତି ପରେ ରସଲେଖା ସଖୀମାନଙ୍କ ଗହଣରେ ପୁଷ୍ପଚୟନ କରୁଥିବା ବେଳେ ସେଠାରେ ସୁଧାନିଧିପୁରର ରାଜା ଭାସ୍ୱତଙ୍କ ପୁତ୍ର ବିଶ୍ୱଭୂତି ସହ ସାକ୍ଷାତ ହୋଇଛି । ସେମାନେ ପରସ୍ପର ପ୍ରତି ଆକୃଷ୍ଟ ହୋଇଛନ୍ତି । ଏହାପରେ ସେମାନଙ୍କର ବିବାହ, ମିଳନ, ବିଚ୍ଛେଦ ଓ ପୁନର୍ମିଳନ ଘଟିଛି । ନାୟିକାର ନାମାନୁସାରେ କାବ୍ୟର ନାମକରଣ କରାଯାଇଛି 'ରସଲେଖା' । ବାସ୍ତବିକ 'ରସଲେଖା' କାବ୍ୟଟି ରସର ଏକ ସୁମଧୁର ଝରଣା । ସେଥିପାଇଁ କବି ଲେଖିଛନ୍ତି– "ସୁଜନ ମନୋରଞ୍ଜନ ହୋଇବଏ ଗୀତ" ।

ଏହି କାବ୍ୟର ରଚନାକାଳ ସମ୍ପର୍କରେ କବି ଲେଖିଛନ୍ତି –

"ଦିବ୍ୟସିଂହ ଗଜପତି        ଅଙ୍କ ସପତ ବିଂଶତି
ଶେଷ ଦିନେ ଶେଷ ଏହୁ ଗୀତ
ଦେଶେ ଦେଶେ ହେଉଖ୍ୟାତ     ମୋହୁ ଏ ରସିକ ଚିତ୍ତ
ହରିହର କରନ୍ତୁ ଏମନ୍ତ ।"

ଦିବ୍ୟ ସିଂହ ଦେବ (ଖ୍ରୀ.୧୬୮୮-୧୭୧୪)ଙ୍କ ୨୭ ଅଙ୍କର ଶେଷଦିନ ୧୭୧୦ ଭାଦ୍ରବ ମାସ ଶୁକ୍ଳପକ୍ଷ ଏକାଦଶୀ ଭାବେ ପଣ୍ଡିତମାନେ ନିର୍ଣ୍ଣୟ କରିଛନ୍ତି । ତେଣୁ ଏହି ଦିନ 'ରସଲେଖା' ଗ୍ରନ୍ଥ ରଚନା ସମାପ୍ତ ହୋଇଛି ।

"ରସଲେଖା" କାବ୍ୟରେ ଆଦିରସର ଅବତାରଣା କରାଯାଇଛି । ଏହି କାବ୍ୟ ପ୍ରୀତିପ୍ରଧାନ । ତେଣୁ ଏଥିରେ ପ୍ରୀତିର ଶ୍ରେଷ୍ଠତା ପ୍ରତିପାଦନ୍ କରି କବି ଲେଖିଛନ୍ତି –

"ପ୍ରୀତିରେ ପକ୍ଷୀମଲା        ପ୍ରୀତିରେ ଦ୍ରବେ ଶିଳା
ମୁହିଁ ତୋ ପ୍ରୀତି ପରାଧୀନା,
ପ୍ରୀତି ପରମ ଧନ          ପାଇଁ ମୁଁ ହେଲି ଭିନ୍ନ
କି ଦୋଷ ହେଲା ଏ ଯାତନାରେ ।" (ଉନବିଂଶ ଛାନ୍ଦ)

ଏହି କାବ୍ୟରେ ଶବ୍ଦାଳଙ୍କାର ଓ ଅର୍ଥାଳଙ୍କାର ବ୍ୟବହାର ରହିଛି । ଷଡ଼ଋତୁ ବର୍ଣ୍ଣନା, ଉପବନ ବର୍ଣ୍ଣନା, ପ୍ରଭାତ ବର୍ଣ୍ଣନା, ନଗର ବର୍ଣ୍ଣନା ଇତ୍ୟାଦି ଏଥିରେ ରହିଛି । ଏହି କାବ୍ୟରେ ଚାରିଗୋଟି ଚିଟାଉ ରହିଛି । 'ରସଲେଖା' କାବ୍ୟରେ ଶବ୍ଦକ୍ଲିଷ୍ଟତା ନାହିଁ, ଅଛି ପଦର ମଧୁରତା ଓ ମନୋହାରିତା ଏବଂ ନିର୍ମଳ କବିତ୍ୱ ।

ଏହି କାବ୍ୟଟିରେ ବର୍ଷା ଋତୁର ବର୍ଣ୍ଣନା ଅତ୍ୟନ୍ତ ଚିତ୍ତାକର୍ଷକ ଓ ବୁଧ-ମନବୋଧକ । କବି ଆଷାଢ଼ ଶୁକ୍ଳ ବାଣୀରେ ଗାଇଛନ୍ତି –

"ଜଳଦ ଶାର୍ଦ୍ଦୂଳ ପରା ଆସିଲା
ମୃଗ ଥିଲାକୁ ଚନ୍ଦ୍ରକୁ ଗ୍ରାସିଲା ।
ଅଶେଷ ମୃଗ ବିଳାସକୁ ଦେଖି
ଗିରି ଗିଳିଦେଇ ହୋଇଲା ସୁଖୀ ।
ବାଜିରାଜି ଚାହିଁ
ରବିମଣ୍ଡଳକୁ ଛାଡ଼ିଲା ନାହିଁ ।

· ପୁଣି ସେ ପ୍ରତେ ପିଶାଚୀ ପରାୟେ
ମଞ୍ଜୁ ବିଜୁ ଅତି ମୁଖେ ଦେଖାଏ ।
ଏକାଚିତ୍ତ ଯେହୁ ଦକା ବହିଲା
କାଳିକା ସେ କିମ୍ପା ଭୟ ନୋହିଲା
ବିଦେଶେ ଯେ ଥିଲେ
ବନ୍ଦୀ ହୋଇଲେଇଁ ଏ ଚିନ୍ତା କଲେ ।

ଅନଙ୍ଗ ରାଜା ସାହା ତାକୁ ପାଇ
ଛତୁ ଛତ୍ରକୁ ଧରାରେ ଧରାଇ
ଇନ୍ଦ୍ରକୋଦଣ୍ଡ ଜଳଧାରା ଶର
ବଳରେ କଲା କାମୀକି କାତର
କି କହିବା ତହିଁ
ନପୁଂସକ ମତ ହୋଇଲେ ଯହିଁ ।

କୋବା କୋବା କହେ ଡାହୁକପୁଣି
କେବା ବଞ୍ଚିବ ନ ଥିଲେ ରମଣୀ
ଋତୁରେ ମଳିଚି ମଣ୍ଡୁକ ଡାକେ
ଘନଯଶକୁ ମଣ୍ଡନ୍ତି ଶାମୁକେ
ମଉନ କୋକିଳ
ବିଯୋଗୀ ଗଣ୍ଡ ଅବନୀ ପଙ୍କିଳ ।" (୧୮ଶ ଛାନ୍ଦ)

କାବ୍ୟଟିରେ କବି ଉପେନ୍ଦ୍ର ଭଞ୍ଜ ସଂସାରୀମାନଙ୍କ ପାଇଁ ଗୋଟିଏ ନିଚ୍ଛକ କଥା କହିଛନ୍ତି । ତାହା ହେଉଛି –

"ମୁଁ ସଂସାରୀ ପାସୋରି ପାରିବି କି କିଶୋରୀ
ଅଛି ମୋ କେଉଁ ଦମ୍ଭପଣ ?" (୧୯ଶ ଛାନ୍ଦ)

କାବ୍ୟଟିର ଶେଷ ଛାନ୍ଦର ଶେଷ ପଦରେ କବି ଉପେନ୍ଦ୍ର ସାଧୁଜନଙ୍କ ଉଦ୍ଦେଶ୍ୟରେ ଗାଇଛନ୍ତି –

"ଭବଦୁଃଖ ବିନାଶନ ଶୋଭା ହରିତ ବସନ
ରମାପତି ଉମାମହେଶ୍ୱର

ଭାବିଭଜେ ଉପଇନ୍ଦ୍ର ରଚନା ହେଲା ଏ ଛାନ୍ଦ
ତୁମ୍ଭେମାନେ ମନେ ଚିନ୍ତା କର ହେ
ସାଧୁଜନେ !
ଏହୁ ଗୀତ ଦ୍ୱାବିଂଶତି ଛାନ୍ଦ
ନିଶ୍ଚେ ଅଛି ଷଟଶତ ଷଷ୍ଠୀ ପଦହେ ।" (ଦ୍ୱାବିଂଶ ଛାନ୍ଦ)

ଏହାର ପ୍ରଥମ ପ୍ରକାଶକାଳ ୧୮୭୫ ମସିହା । ବାଲେଶ୍ୱର ଉତ୍କଳପ୍ରେସ୍ ଦ୍ୱାରା ଏହା ପ୍ରକାଶିତ ହୋଇଥିଲା ।

**ଭାବବତୀ –**

କାବ୍ୟଟିର ପ୍ରଥମ ଛାନ୍ଦରେ କବି ଇଷ୍ଟଦେବ ସ୍ମରଣ ଓ ବସ୍ତୁନିର୍ଦ୍ଦେଶ ପରିପ୍ରେକ୍ଷୀରେ ଲେଖିଛନ୍ତି –

"ଜୟ ଜୟ ଶୁଭରତ ଭରତ ବନ୍ଦିତ
ଜୟ ଜୟ ସଲକ୍ଷ୍ମଣ ଲକ୍ଷ୍ମଣ ମୋଦିତ ହେ ।୧।
ଜୟ ଜୟ ସୀତା ସିତାଂଶୁ ଲପନା ପ୍ରିୟ
ଜୟ ଜୟ ଶତ୍ରୁଘ୍ନ ଶତ୍ରୁଘ୍ନସୁଖୋଦୟ ହେ ।୨।
ଜୟ ଜୟ ଜନକ ଜନକ ତୋଷକର
ଜୟ ଜୟ ସୁଗ୍ରୀବ ସୁଗ୍ରୀବ ସୁଖକର ହେ ।୩।
ଜୟ ଜୟ ସଦାଶିବ ସଦାଶିବ ପୂଜ୍ୟ
ଜୟ ଜୟ ତରଣୀ ତରଣି ବଂଶ ରାଜ ହେ ।୪।
ଜୟ ଜୟ ମରୁତ ମରୁତ ସୁତ ପକ୍ଷ
ଜୟ ନାଶ ବିଭୀଷଣ ବିଭୀଷଣ ରକ୍ଷ ।୫।
ସେ ପ୍ରଭୁ ପଦାରବିନ୍ଦ ଚିତ୍ତେ ଧ୍ୟାନ କରି
ଭାବବତୀ ଚରିତ ମୁଁ କହଇ ବିସ୍ତାରି ।୬।"

– ଭାବବତୀ –୧ ମ ଛାନ୍ଦ

ଏହା ସାତଛାନ୍ଦ ବିଶିଷ୍ଟ ନାୟିକା ପ୍ରଧାନ କାଳ୍ପନିକ କାବ୍ୟ । ଏହି କାବ୍ୟର ବିଷୟବସ୍ତୁ ବେଶ୍ ଚିତ୍ତାକର୍ଷକ । କେରଳର ରାଜା କୁସୁମଶର ଓ ରାଣୀ ପଦ୍ମାବତୀଙ୍କ କନ୍ୟା ଭାବବତୀ ଏହି କାବ୍ୟର ନାୟିକା । ଚୋଳଦେଶ ରାଜା ମଧୁକର ଓ ରାଣୀ ଚନ୍ଦ୍ରାବତୀଙ୍କ ପୁତ୍ର ଏହି କାବ୍ୟର ନାୟକ । ସମଗ୍ର କାବ୍ୟଟିରେ

କାବ୍ୟ ନାୟକର ନାମୋଲ୍ଲେଖ ନାହିଁ । ବିବାହ ବୟସ ହେବାରୁ ରାଜା ମଧୁକର ଯୁବରାଜଙ୍କ ପାଇଁ କନ୍ୟା ଅନ୍ୱେଷଣ କରାଇଲେ । ମାଳିନୀ କୁମାରଙ୍କ ଚିତ୍ରପଟ ନେଇ କେରଳରାଜ୍ୟକୁ ଗମନ କଲା । କୁମାରଙ୍କ ଚିତ୍ରପଟ ଦର୍ଶନ କରି ଭାବବତୀଙ୍କ ଅନୁରାଗ ବୃଦ୍ଧିପାଇଲା । ସେହିପରି ଭାବବତୀଙ୍କ ଚିତ୍ରପଟ ଦେଖି ଚୋଳ ରାଜକୁମାରଙ୍କ ଅନୁରାଗ ବୃଦ୍ଧି ପାଇଲା । ଏହାପରେ ବିବାହ କରି ସେମାନେ ଦାମ୍ପତ୍ୟ ସୁଖ ଭୋଗ କଲେ । ଏକଦା ନାୟକ ମୃଗୟା ସକାଶେ ଅରଣ୍ୟକୁ ଯାଇଥିବାବେଳେ ଅସୁରୀର କବଳରେ ପଡ଼ିଲେ । ଫଳରେ ନାୟକ ଓ ନାୟିକା ବିରହ ଯନ୍ତ୍ରଣାରେ କାତର ହେଲେ । ବର୍ଷାଋତୁର ଆଗମନ ଯୋଗୁଁ ତାଙ୍କର ବିରହ ଯନ୍ତ୍ରଣା ଅଧିକତର ହୋଇଥିଲା । ଏହି କାବ୍ୟରେ ବର୍ଷାଋତୁର ମନୋଜ୍ଞ ବର୍ଣ୍ଣନା ରହିଛି । ବର୍ଷାକାଳୀନ ଦୃଶ୍ୟ ତାଙ୍କର ବିରହ ଦଶାକୁ ଆହୁରି ଆନ୍ଦୋଳିତ କରିଥିଲା ।

କବିଙ୍କ ଭାଷାରେ –

"ହେଲା ବରଷାକାଳ ସୁରଞ୍ଜନ
ନଭ ଲେପିଦେଲା ପ୍ରାୟେ ଅଞ୍ଜନ
ଆସି ଆଷାଢ଼ ଯେ ଘନ ଘୋଡ଼ାଇ
ଗିରି ଗିଳି ଦେଖାଇଲା ବଢ଼ାଇ ।
ବନ ଅନଳ ନାଶକୁ ଭଜିଲେ
କେକୀ ଡାହୁକମାନେ ଗରଜିଲେ
ସରସିଜ ନାଳ କରି ସମ୍ବଳ
ମେରୁ ଗମନ କଲେ ହଂସକୁଳ ।

କାମଭୟ ଦାତା ଫୁଲ ବିଶିଖ
ପଡ଼ି ଚଡ଼କ ଚୂନା ଗିରି ଶିଖ
ମହୀଧରରୁ ନିର୍ଝର ବହିଲେ
କରୀ ମଦଧାରା ପ୍ରାୟେ ଶୋହିଲେ ।

ଛତ୍ରଶୋଭା ଛତ୍ରୁମାନେ ଲଭିଲେ
ଜାତୀ ଯୂଥିକା ସୁମନେ ଶୋଭିଲେ ।
ଜ୍ୟୋତି ପ୍ରକାଶିତ ଜ୍ୟୋତିରିଙ୍ଗଣ
ପଥ ପିଚ୍ଛିଳ ପଥିକରିଙ୍ଗଣ ।

ଲୋଧ୍ର ଶିଳିନ୍ଧ୍ର ପୁଷ୍ପେ ଶୋଭାରାଶି
ଚନ୍ଦ୍ରସୂର୍ଯ୍ୟ ଦରଶନ ଗରାସି
କରି ଦର୍ଶନ ଏ ଋତୁ କୁମାର
କଲା ପ୍ରହାର ତୀକ୍ଷ୍ଣ ଶରମାର ।

ନୟନରୁ ଲୋତକ ବିସର୍ଜିଲା
କ୍ଷଣ ପର୍ଯ୍ୟନ୍ତେ ଅବନୀ ଭଜିଲା ।
କେତେବେଳେ ସେ ଲଭି ଚେତନ
ବୋଲେ ଶୀଘ୍ରେ ହେଉ ବଜ୍ର ପତନ ।

ପାଇଥିଲି କରି କେତେ ବର୍ଜନ
ହେଲା ଭିନ୍ନ ସେ ରମଣୀ ରତନ ।
ଏହି ଘଡ଼ଘଡ଼ି ଶୁଣି ଡରଇ
ନିଜ ଅଙ୍ଗୁଳି କର୍ଣ୍ଣରେ ଭରଇ ।

ବିଦ୍ୟୁ ଝଟକିଲେ ବୁଜେ ଈକ୍ଷଣ
ମୋର ଅଙ୍ଗେ ମିଶଇ ତତକ୍ଷଣ
ମଜ୍ଜି ମଦନ ମଦେ ସତୀକାରେ
ମୋତେ ଭୁଜେ ଭିଡ଼ଇ କି ପ୍ରକାରେ ।" (ଚତୁର୍ଥ ଛାନ୍ଦ)

ମନେହୁଏ ଏଠାରେ ନାୟକର ବିରହଜନିତ ମନସ୍ତତ୍ତ୍ୱ ହିଁ କବିଙ୍କର ବିରହାନୁଭୂତିର ଅଶ୍ଳୁଳ ପରିପ୍ରକାଶ । ଏହାପରେ କୌଣସି ମୁନିଙ୍କ କରୁଣା ଓ ସାହାଯ୍ୟରୁ ଚୋଳରାଜକୁମାର ଅସୁରୀର କବଳରୁ ମୁକ୍ତ ହୋଇ ସ୍ୱଦେଶକୁ ପ୍ରତ୍ୟାବର୍ତ୍ତନ କଲେ ।

ଏହି କାବ୍ୟ ରଚନା ବେଳକୁ ଉପେନ୍ଦ୍ର ଅସହ୍ୟ ଦୁଃଖରେ ଜର୍ଜରିତ ଥିଲାପରି ମନେହୁଏ । କାରଣ ଉପେନ୍ଦ୍ରଙ୍କ ବ୍ୟକ୍ତବାଣୀ ହେଉଛି–

ଦଶରଥ ରାଜା ପ୍ରିୟନନ୍ଦନ
ସୀତା ହୃଦଦେଶ ଚନ୍ଦ୍ର ଚନ୍ଦନ
ମୋର ମହା କଷଣମାନ ଭଞ୍ଜ
ଭାବେ ଭଣଇ ଉପଇନ୍ଦ୍ର ଭଞ୍ଜ । (ଭାବବତୀ – ଚତୁର୍ଥ ଛାନ୍ଦ)

ଭାଷା ଦୃଷ୍ଟିରୁ କାବ୍ୟଟି ସରଳ ଓ ବୋଧଗମ୍ୟ । ଏଥିରେ ଶବ୍ଦାଡ଼ମ୍ବର ନାହିଁ । ତଥାପି ଏଥିରେ ରୀତିଶୈଳୀ ଅନୁସୃତ ହୋଇଛି । ଏହି କାବ୍ୟରେ କବି "ମଙ୍ଗରାଜ" ଉପାଧିକୁ ବ୍ୟବହାର କରିଛନ୍ତି । ଦୃଷ୍ଟାନ୍ତସ୍ୱରୂପ,

"ସୀତାରାମ ପଦ୍ମଚରଣ ଗୁଣି
ଉପଇନ୍ଦ୍ର ମଙ୍ଗରାଜ ଏ ଭଣି
ସପ୍ତଦଶ ପଦ
ଏ ଛାନ୍ଦ ବୋଧ କରିବ କୋବିଦ ।" (ଷଷ୍ଠଛାନ୍ଦ)

କବି ଉପେନ୍ଦ୍ର ଜୀବନ ଓ ଯୌବନର ଜୟଗାନ କରିଛନ୍ତି । ଯୁବା ବୟସରେ ଯୁବତୀ ପାଶରେ ଥିଲେ ଆଉ କନ୍ଦର୍ପର ଭୟ ନଥାଏ । ତେଣୁ ଅନୁଭବୀ ଉପେନ୍ଦ୍ର ଗାଇଛନ୍ତି –

"ଯାହାର ଯୁବା ବୟସେ ମନର ଯୁବତୀ ପାଶେ
ନାହିଁ ତାହା ଜୀଇଁବାର କି ପ୍ରୟୋଜନ
ମାରଦଣ୍ଡ ପରା ହୋଇ ତ୍ରିଭୁବନେ କଷ୍ଟ ନାହିଁ
ତାପ ନାହିଁ ଏକା ହୋଇ ନେବାକୁ ଦିନ ।
କର୍ଣ୍ଣ କରି ତାକୁ ନ ଗଣି
ଯେ ତରୁଣୀ ରସଗର୍ଭ ବାଣୀ ନ ଶୁଣି ।"

ପୁନଶ୍ଚ ଜୀବନବାଦୀ କବି ଉପେନ୍ଦ୍ର ଜୀବନ ସମ୍ପର୍କିତ ଏକ ସତ୍ୟକୁ ପ୍ରକାଶ କରିଛନ୍ତି । କାବ୍ୟ ନାୟକର ଉକ୍ତିରେ ଏହା ପ୍ରତିପାଦିତ –

"ନୃପତି ରାଜ୍ୟ ବିହୀନ ମନୁଷ୍ୟହୀନ ନୟନ
ଯୁବତୀ ବିହୀନ ଯୁବା ତିନି ସମାନ
ମୋହର ଏ ବୟସରେ ଯୁବତୀ ନାହିଁ ପାଶରେ
ବି ଅର୍ଥ ଏ ସମ୍ପଦରୁ ଭାଳିଲା ମନ
ମନାଇବି ମହେଶ୍ୱରଙ୍କୁ
ପାଇବି ପ୍ରାଣବାନ୍ଧବୀ ନୃପସୁତାକୁ ।"

କାବ୍ୟନାୟକ ବିରହରେ ଅଧୀର ହୋଇ ମଧୁପ ନିକଟରେ ନିଜର ମର୍ମବେଦନାକୁ ବ୍ୟକ୍ତ କରିଛି । କବିଙ୍କ ଭାଷାରେ –

"ମନର ଯୁବତୀ ବିଚ୍ଛେଦ ହେବାରୁ ଆଉ ବିପଦ ଅଛି କାହିଁ
ପ୍ରୀତିଠାରୁ ପରମ ସୁଖ ନାହିଁ
ଯୁବା ବୟସରେ ଏକା ନିଶି ନେବା
କାହିଁକି ବିହିଲା ବିହି ହେ, ମଧୁପ
କାମକାଣ୍ଡ ହୋଇ ପୁଣି କଥାଏ
ଏଥୁ ବଡ଼ ହୋଇ ନାହିଁ ବ୍ୟଥାଏ
ନବଯୁବତୀ ରତି ସବୁ ସମ୍ପତ୍ତି
ଆଉ ଯେ ସୁଖ ବୃଥାଏ, ହେ ମଧୁପ ।"

କବି ଏଥିରେ ତାଙ୍କ ଆରାଧଦେବ ଶ୍ରୀରାମଚନ୍ଦ୍ରଙ୍କ ପଦ ବନ୍ଦନା କରି କାବ୍ୟଟିର ପରିସମାପ୍ତି ଘଟାଇଛନ୍ତି –

"ବଦନ ସୁନ୍ଦର ଧନୁଶର ଧର ରାବଣବଂଶ ନାଶନ
ସନକାଦି ମୁନିମାନେ ଯା' ଚରଣ କରନ୍ତି ଧିଆନ ।
ଆନନ୍ଦ ଚିତ୍ତେ ତାହାଙ୍କ ପଦଗୁଣି ତରିବା ବିଶ୍ୱ ପ୍ରପଞ୍ଚ
ପଞ୍ଚବେନି ଛାନ୍ଦେ ଉପଇନ୍ଦ୍ର କହେ ଏ ଗୀତ ଅତିସୁସଞ୍ଚ ।"

(ସପ୍ତମ ଛାନ୍ଦ)

## ରସିକ ହାରାବଳୀ –

ଭଞ୍ଜୀୟ କାବ୍ୟମାନସର ଏହା ଏକ ରସାଳ ସୃଷ୍ଟି । ଏହା ପନ୍ଦର ଛାନ୍ଦ ବିଶିଷ୍ଟ ଏକ ମନୋଜ୍ଞ କାଳ୍ପନିକ କାବ୍ୟ । ଏହା ବାସ୍ତବରେ ଉପେନ୍ଦ୍ର ପ୍ରତିଭାର ସ୍ୱାକ୍ଷର ବହନ କରି ମନୋରମ ହୋଇପାରିଛି । ଏହି କାବ୍ୟରେ ପଦ ସଂଖ୍ୟା ତିନିଶତ ପଞ୍ଚଷଠି ଏବଂ ଏଥିରେ ରୂପକ, ଯମକ, ବିରୋଧାଭାସ, ଶ୍ଳେଷ ପ୍ରଭୃତି ଅଳଙ୍କାର ରହିଛି । କବି ଉପେନ୍ଦ୍ର ସ୍ୱୟଂ ଲେଖିଛନ୍ତି –

"ଉପଇନ୍ଦ୍ର ଭଞ୍ଜ ବୀରବର ବିରଚିତ ଅତିତୋଷ ଚିତ୍ତରେ
ରସିକ ହାରାବଳୀ ନାମ ଉଚିତ ବୋଲିବାର ଏହୁ ଗୀତରେ
ପଦସଂଖ୍ୟାରେ, ତିନିଶହ ପଞ୍ଚଷଷ୍ଟୀ ଜାଣ
ରୂପକ, ଯମକ, ଆଶୟ, ବିରୋଧ, ଶ୍ଳେଷ ଛଳେ ଗୀତ ନିପୁଣ ।"

(୧୫ଶ ଛାନ୍ଦ)

ଏହି କାବ୍ୟ ରଚନାପୂର୍ବରୁ ଉପେନ୍ଦ୍ର ଭଞ୍ଜ ନୟାଗଡ଼ ରାଜା ମାନଧାତାଙ୍କ ଠାରୁ 'ବୀରବର' ଉପାଧି ଲାଭ କରି ସାରିଲେଣି । ଏହି କାବ୍ୟର ତେରଟି

ସ୍ଥାନରେ ସେ ଏହି ଉପାଧିକୁ ବ୍ୟବହାର କରିଛନ୍ତି । କାବ୍ୟର ପ୍ରାରମ୍ଭରେ ଉପେନ୍ଦ୍ର ଶ୍ରୀଜଗନ୍ନାଥଙ୍କୁ ବନ୍ଦନା କରିଛନ୍ତି –

"ଜୟ ଜୟ ଜଗନ୍ନାଥ ଦାରୁରୂପଧାରୀ
ନୀଳ ଗିରୀଶ ଗିରୀଶ ବନ୍ଦନୀୟ ହରି ।
ମହାବଳ - ବଳ - ଅବରଜ ଭଦ୍ରାଗ୍ରଜ
ଗରୁଡ଼ାସନ ସନକ ପୂଜ୍ୟ ଚତୁର୍ଭୁଜ
ନୀରଦ ସୁନ୍ଦର ଦରହର ହରଷଦ
ଶମନ ମନରେ ଜାତ କରେ ମହାଖେଦ ।
ସେ ପ୍ରଭୁ କମଳାକାନ୍ତ କାନ୍ତ ପଦଧ୍ୟାନେ
ଉପଇନ୍ଦ୍ର ବୀରବର ଅତି ତୋଷ ମନେ ।"

'ରସିକ ହାରାବଳୀ' ଶୃଙ୍ଗାର ରସ ପ୍ରଧାନ କାବ୍ୟ । ଉପେନ୍ଦ୍ର ନିଜର କାବ୍ୟାଦର୍ଶ ସମ୍ପର୍କରେ ବିଜ୍ଞ ପାଠକ ମାନଙ୍କୁ ଅବଗତ କରାଇଛନ୍ତି –

"ବିଚାରଇ କରିବି ଉତ୍ତମ ଛାନ୍ଦ ଗୀତ
ରସସାର ଶୃଙ୍ଗାର ତହିଁରେ ହେବ ବ୍ୟକ୍ତ
ଅନୁଭବରୁ ପ୍ରଖ୍ୟାତ ମାନସ ରଚନା
ଶୁଣ ସୁରସିକ ମାନେ ହୋଇଣ ସୁମନା ।"

(ପ୍ରଥମ ଛାନ୍ଦ)

ଇନ୍ଦ୍ରଙ୍କ ସଭାରେ ନୃତ୍ୟରତା ଉର୍ବଶୀଙ୍କୁ ଦେଖି ଜଣେ ବିଦ୍ୟାଧର ମୋହିତ ହୋଇଯାଇଛନ୍ତି । ଏହା ଜାଣି ଇନ୍ଦ୍ର କ୍ରୁଧ ହୋଇ ବିଦ୍ୟାଧରଙ୍କୁ ପୃଥିବୀରେ ଜାତହେବାକୁ ଅଭିଶାପ ଦେଲେ । ସେ ବିଦ୍ୟାଧର ହାତଯୋଡ଼ି ଇନ୍ଦ୍ରଙ୍କୁ ଅଭିଶାପରୁ ଉଦ୍ଧାର ପାଇବାକୁ ପ୍ରାର୍ଥନା କଲେ । ଇନ୍ଦ୍ର ଦୟାପରବଶ ହୋଇ କହିଲେ ଉତ୍କଳ ଭୂଖଣ୍ଡରେ ଜାତ ହୋଇ ପୁରୁଷୋତ୍ତମ ଧାମରେ ବହୁକାଳ ବିଷ୍ଣୁଙ୍କୁ ଉପାସନା କର । ପୃଥିବୀରେ ବଂଶ ରଖି ପୁନଶ୍ଚ ଅମରପୁରକୁ ଫେରି ଆସିବାକୁ ଦେବରାଜ ଇନ୍ଦ୍ର ତାଙ୍କୁ ମାର୍ଗଦର୍ଶନ କରାଇଲେ । ଏହାପରେ ବିଦ୍ୟାଧର ନିଜ ସ୍ତ୍ରୀ ସହିତ ପୃଥିବୀରେ ଜନ୍ମ ଗ୍ରହଣ କରି ପୁରୁଷୋତ୍ତମରେ ବାସ କଲେ । ଶ୍ରୀକ୍ଷେତ୍ରରେ ବିମଳାଙ୍କୁ ସେବାରେ ସନ୍ତୁଷ୍ଟ କରି ସେ ଦିବ୍ୟ କନ୍ୟାସନ୍ତାନ ଲାଭ କଲେ । ଏହି କନ୍ୟାର ନାମ ହେଲା ରସିକହାରାବଳୀ । ରସିକହାରାବଳୀର ରୂପଲାବଣ୍ୟ ଓ

ଗୁଣାବଳୀ କୋଶଳ ଦେଶର ରାଜକୁମାର ଜଣେ ବ୍ରାହ୍ମଣଙ୍କ ଠାରୁ ଶୁଣି ତାଙ୍କ ପ୍ରତି ଆକୃଷ୍ଟ ହୋଇଛନ୍ତି । ରସିକହାରାବଳୀଙ୍କୁ ସ୍ତ୍ରୀ ରୂପେ ପାଇବା ପାଇଁ ସେ କାମନା କରିଛନ୍ତି । ପୁରୁଷୋତ୍ତମ କ୍ଷେତ୍ରରେ ଚନ୍ଦନଯାତ୍ରା ସମୟରେ ସେ ଦୁହେଁ ପରସ୍ପରକୁ ସାକ୍ଷାତ କରିଛନ୍ତି । ଉଭୟେ ବିବାହ ବନ୍ଧନରେ ବାନ୍ଧି ହୋଇ ସୁଖରେ ଦିନ କାଟିଛନ୍ତି ।

ରାଜ୍ୟରେ ରାକ୍ଷସଙ୍କ ଅତ୍ୟାଚାର ବୃଦ୍ଧି ପାଇବାରୁ କୋଶଳ ରାଜକୁମାର ସେମାନଙ୍କ ବିରୁଦ୍ଧରେ ଅଭିଯାନ ଆରମ୍ଭ କରିଛନ୍ତି । ମେରୁ ପ୍ରଦେଶରେ ପହଞ୍ଚି ସେ ଫେରିବା ରାସ୍ତା ଭୁଲିଯାଇଛନ୍ତି । ଫଳରେ ନାୟକ ଓ ନାୟିକା ବିରହ ଜ୍ୱାଳାରେ ସନ୍ତାପିତ ହୋଇଛନ୍ତି । ଏହାପରେ ଯକ୍ଷମାନଙ୍କ କୃପାରୁ ନାୟକ ବଦ୍ରିକାଧାମରେ ପହଞ୍ଚି ସେଠାରୁ ନିଜରାଜ୍ୟକୁ ଫେରିଛନ୍ତି । ନାୟକ ଓ ନାୟିକାଙ୍କର ପୁନର୍ବାର ମିଳନ ଘଟିଛି । ସେମାନେ ହରାଇଥିବା ଦାମ୍ପତ୍ୟସୁଖକୁ ଫେରିପାଇଛନ୍ତି ।

'ରସିକ ହାରାବଳୀ' କାବ୍ୟଟି ଭଞ୍ଜୀୟ କାବ୍ୟମାନସନର ଏକ ମନୋଜ୍ଞ କୃତି । ଏହି କାବ୍ୟଟି ବିଜ୍ଞପାଠକମାନଙ୍କ ନିକଟରେ ପହଞ୍ଚିବା ପାଇଁ କବି ତାଙ୍କର ଆରାଧ୍ୟଦେବ ପ୍ରଭୁ ରାମଚନ୍ଦ୍ରଙ୍କ ନିକଟରେ ନିବେଦନ କରିଛନ୍ତି । କବିଙ୍କ ଭାଷାରେ –

"ହେ ରାମ ଶ୍ୟାମ କାମସମ ସୁଷମ କାମଯମ ଭୀମ ବନ୍ଦନ
ଦାନବ ଦାନବାରି ଦାନବତ୍ସଳ ଜାନକୀହୃଦୟ ଚନ୍ଦନ
ନୃପକେଶରୀ, ରାବଣ ବାରଣ କେଶରୀ ।
ପ୍ରଖର ଖର ଦୂଷଣକୁ ଭୀଷଣ ଘଟକର୍ଣ୍ଣ ଘଟ ନିବାରୀ ।
କର ଏ କରୁଣା ବିଜ୍ଞ ହସ୍ତଗତ ଏ ପୁସ୍ତକ ମୋର ହୋଇବ
ଅଜ୍ଞ ସମୂହର କର୍ଣ୍ଣ କୁହରକୁ କେବେ ହେଁ ପ୍ରବେଶ ନୋହିବ
ଆଖୁ ଅନଳ, ହୀରାରେ ନ ଲଭି ବିନାଶ
ଉତ୍ତମ ଜନରେ ଦୂଷଣ ନୋହିଣ ପ୍ରକାଶ ହେଉ ସର୍ବଦେଶ ।"

(୧୫ ଶ ଛାନ୍ଦ)

ଏହି କାବ୍ୟରେ ଉପେନ୍ଦ୍ର ଭଞ୍ଜ ପୁରୁଷୋତ୍ତମ କ୍ଷେତ୍ରର ମାହାତ୍ମ୍ୟ ବର୍ଣ୍ଣନା କରିଛନ୍ତି । ଚନ୍ଦନଯାତ୍ରାର ବିବରଣୀକୁ କବି ଜଣେ ପ୍ରତ୍ୟକ୍ଷ ଦ୍ରଷ୍ଟା ଭାବରେ ବର୍ଣ୍ଣନା କରିଛନ୍ତି । ଯେପରି –

"ନରେନ୍ଦ୍ର ତଡ଼ାଗେ କରୀନ୍ଦ୍ର ସୁରେନ୍ଦ୍ର ପରିହରି
ନାବରେ ଭାବରେ ବିଜୟ କରି ସୁଖେ ବିହରି ।
ପଛେରହି ସ୍ୱଛେ ବରହି ପୁଛେ ଦ୍ୱିଜେ ସେବନ୍ତି
ରଞ୍ଜନ ବ୍ୟଞ୍ଜନ ସଜ୍ଜନ କରେ ଧରି ବିଞ୍ଚନ୍ତି ।
ସଂସାର ସାର ଘନସାର ପିଚିକା କେ ମାରଇ
କ୍ଷୀର ନିଧି ଧୀର ଲହରୀ ପରି ଚାମର ଶୋହି ।
ତରାସେ ତରାସେ ଦୁଷ୍ଟଙ୍କୁ ନାନା ପାପ ସ୍ୱରଶି
ଚନ୍ଦ୍ରେ ନିର୍ମିତ ଚନ୍ଦ୍ର ସୂର୍ଯ୍ୟ ତାରେ ତାର ପ୍ରକାଶି ।" (ଇତ୍ୟାଦି)

'ରସିକ ହାରାବଳୀ' କାବ୍ୟଟି ଏକ ରସାଳ ରଚନା । ଏହା ଯଥାର୍ଥରେ କାବ୍ୟରସିକ ବ୍ୟକ୍ତିମାନଙ୍କର ଚିତ୍ତତୋଷକ ଅଟେ । କଟକ ପ୍ରିଣ୍ଟିଂ କମ୍ପାନୀ ଆନୁକୂଲ୍ୟରେ ଏହା ୧୮୭୧ ମସିହାରେ ଗଣେଶ୍ୱର ଦାସଙ୍କ ଦ୍ୱାରା ପ୍ରଥମେ ପ୍ରକାଶ ପାଇଥିଲା ।

## ପ୍ରେମସୁଧାନିଧି :

କବିଗୁରୁ ଉପେନ୍ଦ୍ର ଏହି କାବ୍ୟଟିର ପରିଚୟ ଦେଇ ଲେଖିଛନ୍ତି – "ପ୍ରେମସୁଧାନିଧି ଯମକେ ସ୍ଥିତ ।' ତେଣୁ ପ୍ରେମସୁଧାନିଧି ଯମକ ପ୍ରଧାନ କାବ୍ୟ । ଏହି କାବ୍ୟରେ ଆଦ୍ୟଯମକ, ମଧ୍ୟଯମକ, ପ୍ରାନ୍ତ - ଯମକ, ଆଦ୍ୟପ୍ରାନ୍ତ ଯମକ, ଯୋଡ଼ିଯମକ, ତ୍ରିଭଙ୍ଗଯମକ ଇତ୍ୟାଦି ଯମକ ଅଳଙ୍କାର ରହିଛି । ଏହା ଷୋଡ଼ଶ ଛାନ୍ଦ ବିଶିଷ୍ଟ ଏକ କାଳ୍ପନିକ କାବ୍ୟ । କାବ୍ୟଟିର ସମଗ୍ର ପ୍ରଥମ ଛାନ୍ଦଟି ଆଦ୍ୟଯମକ ନିୟମରେ ରଚିତ । କବି କାବ୍ୟର ପ୍ରାରମ୍ଭରେ ଲେଖିଛନ୍ତି –

"କୁମୁଦ କୁମୁଦ ବିଦୁ ଯଶ ଉଦିତ ।
ଜନକ ଜନକ ତୋଷ କରେ ବିଦିତ ।
ଅନନ୍ତ ଅନନ୍ତ ଯାହା ମହିମାମାନ ।
ଜଗତିରେ ଜଗତୀରେ ଲୀଳା ରଚନ ।
ସୀତା ଶିତାମ୍ବୁଜ ମୁଖ ମତ୍ତଭ୍ରମର ।
ରାମ ରାମ କଦଳୀ କମ୍ପନେ ସମୀର ।
ଲକ୍ଷ୍ମଣ ଲକ୍ଷଣବନ୍ତ ଯା ପାଦେ ସେବେ ।
ଭଞ୍ଜ ଭଞ୍ଜ ବୀରବର ସନ୍ତାପ ଏବେ ।"

'ପ୍ରେମସୁଧାନିଧି' ଶୃଙ୍ଗାର ରସ ପ୍ରଧାନ କାବ୍ୟ । ତେଣୁ କବି ଉପେନ୍ଦ୍ର ସୂଚାଇଛନ୍ତି–

"ଉଜ୍ଜ୍ୱଳ ଉଜ୍ଜ୍ୱଳ ରସେ ଗୀତ ହୋଇବ ।
ମାନସ ମାନସହଂସ ପ୍ରାୟେ କ୍ରୀଡ଼ିବ ।
ଅମ୍ବୁଜ ଅମ୍ବୁଜ ଖଳେ ହୋଇବ ସତ ।
ସୁମନ ସୁମନ ଦେଇ ଶୁଣ ଚରିତ ।"

ଏହା ଉପେନ୍ଦ୍ରଙ୍କର ଏକ ଲୋକପ୍ରିୟ କାବ୍ୟ । କୋଶଳ ରାଜ୍ୟର ରାଜା ଜାତବେଦଙ୍କ କୁମାର ଏହି କାବ୍ୟର ନାୟକ । ତାଙ୍କର ଅନୁପମ ରୂପ ଓ ଗୁଣକୁ କବି ବର୍ଣ୍ଣନା କରିଛନ୍ତି –

"କୁଶଳ କୁଶଳ ଦେଶ ପାଳନେ ସେହି ।
କୁମାର କୁମାର ଯାର ସମାନ ନୋହି ।
ପରକଟ ପରକଟକରେ ଯା କୀର୍ତ୍ତି ।
ପୁର ପୁରନ୍ଦରବୀର ଗଣେ ବୋଲନ୍ତି ।"

କେରଳର ରାଜା ଜଗଜ୍ଜିତଙ୍କ ସୁନ୍ଦର ପଦ୍ମନୟନା କନ୍ୟା 'ପ୍ରେମସୁଧାନିଧି' ଏହି କାବ୍ୟର ନାୟିକା । ଏହି ନାୟିକାର ନାମାନୁସାରେ କାବ୍ୟର ନାମକରଣ ହୋଇଛି । ପାରମ୍ପରିକ ରୀତିରେ ଉଭୟଙ୍କର ବିବାହ ଅନୁଷ୍ଠିତ ହୋଇଛି । ପ୍ରେମସୁଧାନିଧି ପୁଷ୍ପବତୀ ହେବାପରେ ନାୟକ ଓ ନାୟିକାର ବୈବାହିକ ଜୀବନ ଆରମ୍ଭ ହେଲା । ଏହାପରେ ପିତ୍ରାଜ୍ଞା ପାଳନ କରି କୁମାର ମାଳବ ଦେଶ ଗମନ କଲେ । ଫଳରେ ନାୟକ ଓ ନାୟିକାର ବିଚ୍ଛେଦ ଜନିତ ଦୁଃଖ ସଂଜାତ ହୋଇଛି । ତେଣୁ ସେମାନେ ଶୀତ, ବସନ୍ତ,. ଗ୍ରୀଷ୍ମ, ବର୍ଷା ଓ ଶରତ ଋତୁ ବିରହରେ କଟାଇଲେ । ଏ ବିରହ ବର୍ଣ୍ଣନା ଅତ୍ୟନ୍ତ ମାର୍ମିକ । ନାୟକ ଫେରିଆସି ନାୟିକାକୁ ବିଭିନ୍ନ ଚଟୁବଚନ ଦ୍ୱାରା ବଶୀଭୂତ କରିଛି । ନାୟକର ଚଟୂକ୍ତି କବିଙ୍କ ଲେଖନୀରେ ଏହିପରି –

"ରଖ ଶୁକରଜା ଦେଉ ଖେଦେ ଚିରୁମହୀ
ରସିକା କୁଞ୍ଜର ଦାସ ତ ତୁ ସାହା ନାହିଁ ।
ରଦନ ହୀର କରକ ତୁଳକସ ସାର
ରସବାସେ ରଭସେ ରଖରମା ତୁ ତାର ।
ହସାତୁରେ ଖରରେ ଧନିସମା ସତୀର
ହରଷର ହୋଅ ସକୃପାରୁ ସୁନିଜର ।

ରଚି ରସ ରଖ ନରଖ ତୋ ଇଚ୍ଛା ଏକା
ରସାରେ ନିଶି ନାଶ ତ୍ରାହି ତୁ ରିପୁ ରାକା ।
ତରସଦା ତହିଁ ତୁ ଲବ ପ୍ରସାର ଭୟେ
ତରଳ ତୁ ସେବକ ମୁଁ ନାଶ ବସା ଦୟେ ।
ସୁନାଙ୍ଗି ଭରୁ ଭୁନୀର ବଧ ସ୍ୱଇଚ୍ଛା ତୁ
ଶୁଭାନନି ଯଶ ଲଭ ତୋଷ ତୋ ସଙ୍ଗତୁ ।" (ପଞ୍ଚଦଶ ଛାନ୍ଦ)

ଏହିପରି ରମଣିମଣି ପ୍ରେମସୁଧାନିଧି ସ୍ୱାମୀର ପ୍ରୀତିପୂର୍ଣ୍ଣ କଥାଶୁଣି କ୍ରୋଧ ଓ ମାନତ୍ୟାଗ କରି ପଦ୍ମଠାରୁ ଆହୁରି ସୁନ୍ଦର ଓ ରମଣୀୟ ନେତ୍ର ଢାଳି ପ୍ରିୟକୁ ବାହୁପାଶରେ ଆବଦ୍ଧ କଲା । ଏହାପରେ ନାୟକ ଓ ନାୟିକା ପ୍ରେମସୁଧାନିଧିର ମଧୁର ମିଳନ ଘଟିଛି । କବିଙ୍କ ଭାଷାରେ –

"ଗଜ କୁଞ୍ଜରଗମନା ସ୍ନେହେ କଲା କୋଳ
ଚନ୍ଦ୍ରବିଧୁଠାରୁ ହେଲା ତନୁ ତା ଶୀତଳ ।
ମଦନ ବିଷମଶର ମନମଥେ ହେଲା
ଘନ ଜୀମୂତକେଶୀକି କୋଳେ ବସାଇଲା ।
ଶୃଙ୍ଗାର ରତିରେ ମାତି ରାତି କଲେ ଶେଷ
ସଖିଆଳି ପୁରୁଷେ କହିଲେ ଏହି ଭାଷ ।
ସୁରଭୀ ବସନ୍ତ କାଳେ ଚମକିତ ବାଳା
ହୋଇଅଛି ଦୀନ ଦିବସକୁ ନେଉଥିଲା ।" (ଷୋଡ଼ଶ ଛାନ୍ଦ)

ନାୟକ ଓ ନାୟିକାର ପୁନର୍ମିଳନରେ କାବ୍ୟର ମଧୁର ପରିସମାପ୍ତି ଘଟିଛି । କବିଙ୍କ ଭାଷାରେ –

"ପ୍ରାଣଥାଉଁ ବିଦେଶୀ ନୋହିବି ଆଉଥରେ
ବୋଲିଣ ନିୟମ କଲା ସୁନ୍ଦରୀ ଛାମୁରେ ।
ଭୁଜେ ଭୁଜ ଛନ୍ଦାଛନ୍ଦି ଗଣ୍ଠିଦେଇ ବାସେ
ଅନ୍ତର ନୋହିଲେ ବେନି ରଜନୀ ଦିବସେ ।
ସ୍ୱର୍ଣ୍ଣେ ଦହି ହୋଇଲେ ଅଧିକ ଯଥା ବାନ
ଦିନୁ ଦିନୁ ବଢ଼ିଲା ଅଧିକ ସ୍ନେହ ମାନ ।

ସୁଖେ ବଞ୍ଚିଲେ ଦମ୍ପତି ପ୍ରବନ୍ଧ ସମ୍ପୂର୍ଣ୍ଣ
ଏହୁ ଗୀତ ଅକଳଙ୍କ ଚନ୍ଦ୍ରମା ସମାନ ।
ହୋଇଛାନ୍ଦ ଷୋଳକଳା ସଦପୂର୍ଣ୍ଣ ତହିଁ
ଅଙ୍କରାହୁ ଦୂଷଣକୁ ଅବକାଶ ନାହିଁ । (ଷୋଡ଼ଶ ଛାନ୍ଦ)

ସପ୍ତମ ଛାନ୍ଦରେ କବି ବର୍ଣ୍ଣନା କରିଛନ୍ତି ଯେ ଯେଉଁ ଲୋକ କାର୍ତ୍ତିକ ମାସରେ ଦୀପଦାନ କରେ ଓ ମକରସଂକ୍ରାନ୍ତିରେ ପ୍ରୟାଗ ବା ଗଙ୍ଗା-ଯମୁନା ସଙ୍ଗମ ସ୍ଥଳରେ ସ୍ନାନ କରିଥାଏ, ସେ ଉତ୍ତମ ସ୍ତ୍ରୀ ପ୍ରାପ୍ତ ହୋଇଥାଏ । କବିଙ୍କ ଭାଷାରେ –

"ରସିକ ବିଚାର କରେ ଦୀପଦାନ କାର୍ତ୍ତିକରେ
ପ୍ରୟାଗ ସ୍ନାନ ମକରେ ଯେହୁ ନକରେ
ମିଶେ କିସେ ଆଲୋକରେ ଉତ୍ତମରାମା ଅଙ୍କରେ
ଘେନି ବସେ ପଲ୍ୟଙ୍କରେ, କି ହିମକରେ,
ପୂର୍ବେ ସେବିଥିଲେ ଶଙ୍କରେ,
ସେ ଫଳୁଁ ଧରି ଉରଜ ଶ୍ରୀଫଳ କରେ ।"

ପୁନଶ୍ଚ କବି ପ୍ରକୃତ ନାଗର ପଣିଆଁ ସମ୍ପର୍କରେ ଲେଖିଛନ୍ତି –

"ଯେ ଝାସି ଗଙ୍ଗାସାଗରେ ଶିବରାତ୍ରି ଉଜାଗରେ
ବଞ୍ଚେ କୈଳାସ ନଗରେ, ବିହିଯୋଗରେ
ସେ ଯିନା ଲେଖା ନାଗରେ ପୁହାଇ ବାଳାସଙ୍ଗରେ
ନିଶି ବସାଇ ଆଗରେ, ଅନୁରାଗରେ
ପ୍ରଶଂସା ସେ ସର୍ବନାଗରେ
ଘାରି ନୁହଇଁ ବିରହ ଉରଗାଗରେ ।"

ସଂସାରରେ ମୃଗ ନୟନୀ ସ୍ତ୍ରୀ ଧନ୍ୟ ଅଟେ । ସେ ଗ୍ରୀଷ୍ମକାଳରେ କର୍ପୂର ଓ ଶୀତକାଳରେ ଶୀତନାଶକ ବସ୍ତ୍ର ସଦୃଶ । ପୁନଶ୍ଚ ବର୍ଷଣମୁଖର ରାତ୍ରିରେ ପ୍ରିୟାକୁ କୋଳରେ ଧରି ବର୍ଷାଧାରାକୁ ଚାହିଁ ଚାହିଁ ରାତି ପୁହାଇବା ବଡ଼ ଭାଗ୍ୟର କଥା । କବି ଉପେନ୍ଦ୍ର ତେଣୁ କହିଛନ୍ତି –

"ଏ ବୁଦ୍ଧି ହୋଏ ପ୍ରସାର ବିଷୟ ବିଷ ଅସାର
କାମିନୀ ବଶ ସଂସାର ମଧ୍ୟରେ ସାର ।

ଗ୍ରୀଷ୍ମମକୁ ଘନସାର ଧନ୍ୟଧନ୍ୟ କୃଷ୍ଣସାର
ନୟନୀଧନୀ ତୁଷାରକାଳ ନିଶାର
ପ୍ରିୟାଘେନି ଚାହିଁ ଆସାର
କେଡ଼େ ଭାଗ୍ୟ ବଞ୍ଚିବାର ଘନନିଶାର ।" (ସପ୍ତମ ଛାନ୍ଦ)

ସ୍ତ୍ରୀ ହେଉଛି ଜୀବନରେ ଆନନ୍ଦ ଦାୟିନୀ । ସ୍ତ୍ରୀର ସାନ୍ନିଧ ବିନା ଜୀବନ ବୃଥା । କବି କହିଛନ୍ତି ସ୍ତ୍ରୀ ବିଚ୍ଛେଦ ଘଟିଥିବା ଲୋକର ଜୀବନ ଧିକ୍ । କବିଙ୍କ ମତ ହେଉଛି, ସ୍ତ୍ରୀର ଓଷ୍ଠରେ ଅମୃତ ଥାଉ ଥାଉ ଦେବତାମାନେ ସାଧାରଣ ଅମୃତ ପାନରେ ଲାଳସୀ ହୋଇଥିବାରୁ ତାଙ୍କୁ ନମସ୍କାର । ସ୍ତ୍ରୀର ବାହୁ ଥାଉ ଥାଉ ଦେବତାମାନେ ଫୁଲର ହାର ବେକରେ ଧାରଣ କରୁଥିବାରୁ ଏହା ସୃଷ୍ଟି ବାହାର କଥା ପରି ମନେହେଉଛି । ତେଣୁ ଉପେନ୍ଦ୍ରଙ୍କ ଉକ୍ତି –

"ଯୁବତୀ ସଙ୍ଗେ ବିହାର ନାହିଁ ବିଚ୍ଛେଦ ଯାହାର
ଧିକ ଜୀବନ ତାହାର ହେଉ ସଂହାର
ଓଷ୍ଠେ ସୁଧା ସୁଦେହାର ଥାଉ ଅମରେ ନୀହାର
କର କରନ୍ତି ଆହାର ତାଙ୍କୁ ଜୁହାର
ତାଙ୍କରୀତି ସୃଷ୍ଟି ବାହାର
ବାଳା ବାହୁ ଥାଉଁ ଗଳେ ବହନ୍ତି ହାର ।"

କବି ପ୍ରତିପାଦନ କରିଛନ୍ତି ଯେ ସ୍ତ୍ରୀକୁ ଚଟୁ କହି ଯେଉଁ ନାଗର ବିପରୀତ ରତି ନ କରିଛି, ସେ କଳ୍ପାୟୁ ହୋଇ ଗୃହରେ ରହିଥିଲେ ମଧ୍ୟ ସେ ଗର୍ତ୍ତରେ ରହିଲା ସଦୃଶ ସମାନ । ଯେଉଁ ନାଗର ସ୍ତ୍ରୀ ସହିତ ଶୃଙ୍ଗାର ରସରେ ମାତି ରାତ୍ରି କଟାଇଥାଏ, ସେ ପ୍ରହରେ ମାତ୍ର ବଞ୍ଚିଲେ ମଧ୍ୟ ତାର ବଞ୍ଚିବା ଧନ୍ୟ ହୋଇଥାଏ । ତେଣୁ ଶୃଙ୍ଗାରବାଦୀ କବି ମୁକ୍ତକଣ୍ଠରେ କହିଛନ୍ତି –

"ଚଟୁବାଣୀ ସମୂହରେ ନ ମୋହି ରାମାସ୍ନେହରେ
ବିପରୀତ ମନୋହରେ, ଯେ ନ ବିହରେ
କଳ୍ପାୟୁ ହୋଇ ଗୃହରେ ଥିଲେ ସେ ଅଛି କୁହରେ
ସେବା କରି ନାହିଁ ହରେ ତାହା ଦେହରେ
ଏ ରସେ ଯେ ନିଶିକି ହରେ
ଧନ୍ୟ ଧନ୍ୟ ତାର ଜୀଇଁବାର ପ୍ରହରେ ।"

'ପ୍ରେମସୁଧାନିଧି' କାବ୍ୟରେ ଯମକ ବ୍ୟତୀତ ଅବନା, ଛେକାନୁପ୍ରାସ ଅଦ୍ଭୁତ–ଉପମା, ବିରୋଧାଭାସ, ରୂପକ, ଅନୁପ୍ରାସ, ସିଂହାବଲୋକନ, ଶୃଙ୍ଖଳା, ଲୋମ ବିଲୋମ, ଆଶୟ ଇତ୍ୟାଦି ଅଳଙ୍କାରର ବିନ୍ୟାସ କରାଯାଇଛି । କାବ୍ୟଟିର ପାକ ସମ୍ପର୍କରେ ଉପେନ୍ଦ୍ର ଲେଖିଛନ୍ତି –

"ମନ ଚକୋରକୁ ତୋଷ କରିବ ସନ୍ତତ
ପୁଣି ଏହୁ ଗୀତ ନାରିକେଳ ଫଳବତ ।
ବାହାରେ କର୍କଶ ଭିତରେ ତ ସରସତା
ଜାଣିଲା ଜନ କଣ୍ଠକୁ ହୋଇବ ମୁକୁତା ।" (୧୬ଶ ଛାନ୍ଦ)

ସୁତରାଂ କାବ୍ୟଟି ନାରିକେଳ ପାକରେ ରଚିତ ହୋଇଛି । କବି ଗୋଟିଏ ଗୋଟିଏ ଅଳଙ୍କାର ପାଇଁ ଗୋଟିଏ ଗୋଟିଏ ଛାନ୍ଦର ବ୍ୟବହାର କରିଛନ୍ତି । କେବଳ ଷୋଡ଼ଶ ଛାନ୍ଦଟିରେ ପୁନରୁକ୍ତିବଦାଭାଷ, ଦତ୍ତାକ୍ଷର, ଚ୍ୟୁତାକ୍ଷର, ଦତ୍ତଚ୍ୟୁତାକ୍ଷର, ଏକାକ୍ଷର, ସରୋଷ୍ଠକ, ନିରୋଷ୍ଠକ ମହାଯମକ ପ୍ରଭୃତି ଅଳଙ୍କାର ରହିଛି । ପ୍ରେମସୁଧାନିଧି କାବ୍ୟର ୧୬ଗୋଟି ଛାନ୍ଦରେ କେଉଁ କେଉଁ ଅଳଙ୍କାର ପ୍ରୟୋଗ କରାଯାଇଛି, ତାହା ଏଠାରେ ଉଲ୍ଲେଖ କରାଗଲା –

୧ମ ଛାନ୍ଦ – ଆଦ୍ୟ ଯମକ
୨ମ ଛାନ୍ଦ – ଅବନା, ମଧ୍ୟଯମକ
୩ମ ଛାନ୍ଦ – ଛେକାନୁପ୍ରାସ
୪ମ ଛାନ୍ଦ – ଅଦ୍ଭୁତୋପମା
୫ମ ଛାନ୍ଦ – ବିରୋଧାଭାସ
୬ମ ଛାନ୍ଦ – ରୂପକ
୭ମ ଛାନ୍ଦ – ଅନୁପ୍ରାସ
୮ମ ଛାନ୍ଦ – ସିଂହାବଲୋକନ
୯ମ ଛାନ୍ଦ – ପ୍ରାନ୍ତଯମକ
୧୦ମ ଛାନ୍ଦ – ତ୍ରିଭଙ୍ଗ
୧୧ମ ଛାନ୍ଦ – ଆଦ୍ୟପ୍ରାନ୍ତ ଯମକ
୧୨ମ ଛାନ୍ଦ – ଆଶୟ
୧୩ମ ଛାନ୍ଦ – ଯୋଡ଼ିଯମକ
୧୪ମ ଛାନ୍ଦ – ଦୃଷ୍ଟାନ୍ତ

୧୫ମ ଛାନ୍ଦ – ଅନୁଲୋମ ପ୍ରତିଲୋମ

୧୬ମ ଛାନ୍ଦ – ପୁରରୁକ୍ତିବଦାଭାଷ, ଦତ୍ତାକ୍ଷର, ଚ୍ୟୁତାକ୍ଷର, ଦତ୍ତଚ୍ୟୁତାକ୍ଷର, ଏକାକ୍ଷର, ସରୋଷ୍ଟକ, ନିରୋଷ୍ଟକ, ମହାଯମକ, ସର୍ବଯମକ ।

'ପ୍ରେମସୁଧାନିଧି'ରେ ବିନ୍ୟାସ ହୋଇଥିବା କେତେକ ଅଳଙ୍କାରର ନମୁନା ନିମ୍ନରେ ପ୍ରଦାନ କରାଗଲା –

**ଅବନା** – ଅର୍ଦ୍ଧଚନ୍ଦ୍ରବତ ଅଳକତଳ    ଖଣ୍ଡକମଳଜ ଗଣ୍ଡମଣ୍ଡଳ
ମନ୍ଦହାସ ନବବଳକ୍ଷକର    ଅମ୍ଭକ ମଧ୍ୟ ଦରଶ ସଦର
ଅଞ୍ଜନ କପଟ, ଶ୍ରବଣରନ୍ଧ୍ର ଗମନ ଲମ୍ପଟ ।
ରଙ୍ଗଉତ୍ପଳ ମଧୁଶତଦଳ    ମଧ୍ୟସ୍ଥ ସମତ୍ତଭର ଭ୍ରସଳ
ଏମନ୍ତ ମନ-ପବନ ଚଳଇ    ବହଳ ମକରନ୍ଦ ନ ଉଡ଼ଇ
ଗତ ମନମନ, କମ୍ପନ ଅପଘନ ଘନ ଘନ ।
(ଦ୍ୱିତୀୟ ଛାନ୍ଦ)

**ଛେକାନୁପ୍ରାସ** – ନବପ୍ରମଦା ମଦାଳସା ଯୋଷାକୁ ଜଳକେଳିରେ ମନାଇବି ।
ମୁଖ ଅଧିକଧିକ ଏ ସରସିଜ ଦେଖାଇବାକୁ ଚିହ୍ନାଇବି ।
ଚନ୍ଦ୍ରମା, ରହସ୍ୟେମନ ଘେନାଇବି ।
ଲୀଳା ଅନ୍ତର ଶରୀର ଜରଜର ହେବା ଶୋଭାକୁ ଅନାଇବି ।
(୩ୟ ଛାନ୍ଦ)

**ଆଦ୍ୟପ୍ରାନ୍ତ ଯମକ :**

ମରଇଁ ନାହିଁ ହେଲି ଅମର, ମରନ୍ଦରେ ଯେମନ୍ତ ଭ୍ରମର
ମରକତକେଶୀ ଓଷ୍ଠସୁଧାପାନୁ ନ ଭରସଇ ହଂସକୁମର ହେ ।
କୋକିଳ ।
ରଜନୀଶ ମୁଖୀ ଫଗୁରଜ, ରଞ୍ଜନେ ମାରୁ ଦିଶୁଁ ଉରଜ
ରଜନୀ ପିଚିକା ମୁଁ ଯୋଖି ମାରନ୍ତେ କି କରଇ ନୟନ ନୀରଜ ହେ ।
କୋକିଳ ।

**ଅଦ୍ଭୁତୋପମା :**

ବାଳ ଅରୁଣ କୋଳରେ ବିକଶିତ କଲା କୁମୁଦ ଏ ଅଦ୍‌ଭୁତ
ଉପମାକୁ ଏବେ ଗହନ ହେଉଛି ସବୁକଥା ଆନ ଆନତ
ନିଶି ବାସରେ, ମନୁ କି ଆଉ ପାଶୋରିବ ?

ନବବିଜୁଳି ବିନାମେଘେ ମହୀରେ ଖେଳା କରିବାର ଋହିଁବ ।
କୁଞ୍ଜର ଚଞ୍ଚଳ କୁରଙ୍ଗ ଛଡ଼ାଇ ଦିନୁ ଦିନୁ ଅତି ଗର୍ବିତ
ଏବେ ସେ ପୁରୁଷ ଶାର୍ଦ୍ଦୂଳ ଧଇର୍ଯ୍ୟ ଗ୍ରାସକୁ ହୋଇଛି ତ୍ୱରିତ ।
ମହାଆଶ୍ଚର୍ଯ୍ୟ, ମନ୍ଦିର ନବୀନକାମିନୀ
ଗରୁଡ଼ ଉପରେ ମହାଉଲ୍ଲାସରେ ଭୁଜଙ୍ଗ କ୍ରୀଡ଼ା ରଚିଲାନି । (୪ର୍ଥ ଛାନ୍ଦ)

**ଯୋଡ଼ିଯମକ :**

ଦିନେ ସେ ଅରାତିରାତି ହୋଇବ ଏ ଭୀତିଭିତ୍ତି
ପଛେ ରହିଲା ସୁଗତିଗତି
ଜାଣି ନୋହେ ପ୍ରତି ପ୍ରତିକ ସେ ରତୁବତୀ ବତି
ଶାର୍ଦ୍ଧବୟସୀ ପୀରତିରତି ହେ
ଜଳଧର ! ହେଲି ମୁଁ ଛାଡ଼ି ଉନ୍ନତିନତି
ଠୁଳ ମୋ ସୁକୃତି କୃତ୍ତିବାସ ସେବା ନିତି ନିତି
ସବୁ ମିଛ ଏ ଭାରତୀ ରତି ହେ ।
ଦିନେ କୁତୁକରେ କରକା ତୁ ଆଣେ
ବରବରନୀ ମୋ ତିନ୍ତି ବୃଷ୍ଟି ଝରଝର
ଶୋଭାକାମିନୀର ନୀରବଶେ ପୟୋଧର ଧର
ଜଣେ ପ୍ରକାଶୁଁ ସେଠାର ଠାର ହେ
ଜଳଧର ! ଘନସେବକ ନକର କର
ମନେ ସ୍ତନହର ହରଷେ ମୁଁ ମାଳୀ ତାର ତାର ହାସି
ଘେନକେ ଅପର ପର ହେ । (ତ୍ରୟୋଦଶ ଛାନ୍ଦ)

**ପୁନରୁକ୍ତି ବଦାଭାଷ–** ଏକାର୍ଥ ବୋଧକ ଦୁଇ ବା ତତୋଽଧିକ ଶବ୍ଦ ଏକବାକ୍ୟରେ ରହିଲେ ତାହାକୁ ପୁନରୁକ୍ତି ବଦାଭାଷ କୁହାଯାଏ । ଯଥା –

ପତିକାନ୍ତ ପ୍ରିୟ ବଚନକୁ କର୍ଣ୍ଣେ ଶୁଣି
କୋପମାନ ନାଶ କଲା ରାମା-ଶିରୋମଣି ।
ହେମ କନକଗାତ୍ର ତା ପୁଲକିତ ହୋଇ
ପଦ୍ମକମଳ ବିଜିତ ନେତ୍ରେ ଢାଳି ଋହିଁ ।

ଗଜକୁଞ୍ଜର ଗମନା ସ୍ନେହେ କଲା କୋଳ
ଚନ୍ଦ୍ର ବିଧୁଠାରୁ ହେଲା ତନୁ ତା ଶୀତଳ ।
ମଦନ ବିଷମଶର ମନମଥେ ହେଲା
ଘନଜୀମୂତ କେଶୀକି କୋଳେ ବସାଇଲା । (ଷୋଡ଼ଶ ଛାନ୍ଦ)

**ଅନୁପ୍ରାସ:** ଜାଣେ ରସିକମାତର ସେହି ମୋହନ ମନ୍ତର
ଯେମନ୍ତ ମଧୁରତର, ବକ୍ର ଉତ୍ତର
ବିପଞ୍ଚୀମନ୍ଦସୁତର ସପତ ସ୍ୱର ଇତର
କରିଚିନ୍ତାକୁ ଅନ୍ତର, କରେ କାତର
ସେ ବଚନ ବିନା ଶ୍ରୋତର, ଶ୍ରୁତିକି ନ ଥିଲା ଗତି କ୍ଷିତି ଭିତର ।
ପରମ ଦ୍ରବ୍ୟ ପୀରତି ପରମ ସୁଖ ସୁରତି
ରତିରୁ ଜାତ ପୀରତି, ପ୍ରୀତିରୁ ରତି
ରାମାରୁ ରମ୍ୟ ମୂରତି ନାହିଁ ଏ ତାର କୀରତି
ଏହୁ ତିନିହେଁ ହରନ୍ତି ଚିତ୍ତଧୃରତି
କାମ ଯମ ମତି କରତି,
ଯା ଲୋକନେ ଲୋକେ କି ପାରିବେ ବରତି ।(ସପ୍ତମ ଛାନ୍ଦ)

**ବିରୋଧାଭାସ –**

ଏ ସମୟେ ଯାମିନୀ ହୋଇଲା ପ୍ରବେଶ
ଦ୍ୱିଜରାଜ ଦ୍ୱିଜଚକ୍ରେ ବିହିଲାକ କ୍ଳେଶଯେ ।
ପଦ୍ମିନୀ ସୁମନାକୁ ହରଷ କରାଇଲା
ପଦ୍ମିନୀ ସୁମନାକୁ ବିରସେ ମଜ୍ଜାଇଲା ଯେ ।
ପ୍ରଦୋଷକୁ ନାଶକଲା ଦୋଷା କର ହୋଇ
ତମ କମଳ ତମକୁ ଗୁହାରେ ପୂରାଇ ଯେ ।
ସୁରଙ୍କୁ ବାରୁଣୀସେବା କରାଇଲା ବେଳେ
ସକଳ ହୋଇ ରୁଚିର ଅଖଣ୍ଡମଣ୍ଡଳେ ଯେ ।
(ପଞ୍ଚମ ଛାନ୍ଦ)

**ତ୍ରିଭଙ୍ଗ ବା ତ୍ରିବୃତ୍ତ ଯମକ :**

ରାମା ଶିଶିରେ ଘୋର ନିଶିରେ ଦୁଃଖରାଶିରେ ଭାସି
ବସି ଏକାନ୍ତ ମାନସେ କାନ୍ତସ୍ୱରୂପ କାନ୍ତଘୋଷି ।

ରହି ବିଦେଶ କି ହୃଦଦେଶ ଦେଲା ସନ୍ଦେଶ ନାହିଁ
କେଉଁ ସୁନ୍ଦରୀ ମନ୍ଦଉଦରୀ ପ୍ରୀତି ଆଦରି ସେହି ।
ନବ ଯୁବତୀ ସେ ରସବତୀ ସୁଗୁଣବତୀ ସେତ
ସେ ଅନୁସରି କି ମୋହସରି ଏଣୁ ବିସ୍ମରି ସତ ।
ବିଧିବଶର ବିଷମଶର ଏ ଅବସର କାହିଁ
ଜାଣେ ଚିତ୍ତର ମହାକାତର କର ମନ୍ତର ସେହି ।
(ଦଶମ ଛାନ୍ଦ)

**ମହାଯମକ :** ଶରଦରେ ବଞ୍ଚାଇବା କଥା ଅସମ୍ଭବ
କାଳକଣ୍ଠ କାଳକଣ୍ଠ କାଳକଣ୍ଠରବ ।
ସୁଧାକର ସୁଧାକର ସୁଧାକର ପୁର
ରମଣି ରମଣି ରମଣି ତ କାରାପୁର । (ଷୋଡ଼ଶ ଛାନ୍ଦ)

ଉପେନ୍ଦ୍ର ଥିଲେ ଶ୍ରେଷ୍ଠ ଆଳଙ୍କାରିକ କବି । ସେ ଏହି କାବ୍ୟରେ କେଉଁ ଅଳଙ୍କାର ବିନ୍ୟାସ କରିଛନ୍ତି ସେ ସମ୍ପର୍କରେ ଲେଖିଛନ୍ତି –

"କବି ବିନା କେ ଜାଣିବ ଏଥି କଷ୍ଟ ଯେତେ
ପ୍ରଥମେ ଆଦ୍ୟଯମକ ଘେନ ସୁଜ୍ଞ ଚିତ୍ତେ ।
ଦ୍ୱିତୀୟ ଅବନା ମଧ୍ୟ ଯମକ ତୃତୀୟ
ଛେକାନୁପ୍ରାସରେ ପୁଣି ଅତି ରମଣୀୟ ।
ଚତୁର୍ଥେ ଅଦ୍ଭୁତ ବିରୋଧାଭାଷ ପଞ୍ଚମେ
ଷଷ୍ଠେରୂପକ ବୃତ୍ତି ଅନୁପ୍ରାସ ସପ୍ତମେ
ଅଷ୍ଟମରେ ମନୋରମ ସିଂହାବଲୋକନ
ନବମେ ପ୍ରାନ୍ତ ଯମକ ମାନସ ରଞ୍ଜନ ।
ଦଶମେ ତ୍ରିଭଙ୍ଗୀ ଏକାଦଶରେ ରୁଚିର
ଆଦ୍ୟପ୍ରାନ୍ତ ଯମକ ଚିତ୍ତକୁ ବଶକର ।
ଦ୍ୱାଦଶେ ଆଶୟ ଯୋଡ଼ି ଯମକ ତ୍ରିଦଶେ
ଚତୁର୍ଦ୍ଦଶେ ଦୃଷ୍ଟାନ୍ତର ଅତ୍ୟନ୍ତ ସରସେ ।
ଅନୁଲୋମ ପ୍ରତିଲୋମ ପଞ୍ଚଦଶେ ଘେନ
ଷଷ୍ଠଦଶ ଛାନ୍ଦେ ଅଛି ଏତେକ ବିଧାନ

ପୁନରୁକ୍ତି ବଦାଭାଷ ଜନ ମନୋହର
ଦତ୍ତାକ୍ଷର ଚ୍ୟୁତାକ୍ଷର ଦତ୍ତଚ୍ୟୁତାକ୍ଷର ।
ଏକାକ୍ଷର ସରୋଷ୍ଠକ ନିରୋଷ୍ଠକ ଘେନି
ମହାଯମକ ସର୍ବଯମକ ଏହୁବେନି ।
ଯମକ ପ୍ରଧାନ କରି କଲି ଯେଣୁ ଗୀତ
ଶ୍ଳେଷ ଛାନ୍ଦ ନ ବିରଚି କଲି ସମାପତ ।" (ଷୋଡ଼ଶ ଛାନ୍ଦ)

କବି ଉପେନ୍ଦ୍ର ଏହି କାବ୍ୟରେ ମଙ୍ଗଳଗୁଜ୍ଜରୀ, ତୋଡ଼ି, ବରାଡ଼ି, ବସନ୍ତବରାଡ଼ୀ, କୌଶିକ, ନଳିନୀଗୌଡ଼ା, କେଦାର, ଚୋଖି, ଚିନ୍ତାଭୈରବ କଳହଂସକେଦାର, ଶଙ୍କରାଭରଣ, ମାଳବ, କନ୍ନଡ଼ା ଇତ୍ୟାଦି ରାଗ ବ୍ୟବହାର କରି କାବ୍ୟଟିକୁ ଅପୂର୍ବ ସାଙ୍ଗୀତିକ ଆବେଦନରେ ଭରି ଦେଇଛନ୍ତି । ଏହି କାବ୍ୟରେ କବିଙ୍କର ବର୍ଣ୍ଣନାନୈପୁଣ୍ୟ ବେଶ୍ ଲକ୍ଷଣୀୟ । କାବ୍ୟଟିର ଯଥାର୍ଥ ଆଦର ପାଇଁ କବି କାମନା କରିଛନ୍ତି –

"ରାଘବ ଶିବଭାବନା କରି ନିରନ୍ତର
କହେ ରସ ଉପଇନ୍ଦ୍ର ଭଞ୍ଜ ବୀରବର ।
ଆହେ ପ୍ରଭୋ କୃପା ଅକୂପାର କୃପାକର
ଖ୍ୟାତ ହେଉ ପ୍ରେମସୁଧାନିଧି ଗୀତ ମୋର
ଏ ପ୍ରବନ୍ଧ ତିନିଶତ ପଞ୍ଚଶୋଇ ପଦ
ସଦନ କରୁ ଉତ୍ତମ ଜନଙ୍କର ହୃଦ ।" (୧୬ଶ ଛାନ୍ଦ)

କବି ପୁନଶ୍ଚ କହିଛନ୍ତି–

"ପ୍ରତିଦିଗ ତହିଁ ପ୍ରକାଶିବ
ରସିକ ହୃଦୟ ରତ୍ନାକର ଉଲ୍ଲସିବ
ପଣ୍ଡିତ କୁମୁଦମୁଦ ବର୍ଦ୍ଧନ କରିବ
ଖଳକୁଳ ଅନ୍ଧକାର ବେଗେ ବିଦାରିବ ।"

ଏହି କାବ୍ୟର ପ୍ରଥମ ଛାନ୍ଦରେ କବି ଦ୍ୱିଅର୍ଥରେ ବିଭିନ୍ନ ଦେଶମାନଙ୍କର ନାମୋଲ୍ଲେଖ କରିଛନ୍ତି । କବିଙ୍କ ବର୍ଣ୍ଣନାରେ ମାଳବ, ଅଙ୍ଗ, ବିଦେହ, କୁନ୍ତଳ, ଚୋଳ, ସିନ୍ଧୁ, ମଗଧ, ମହ୍ଲାର, ମଘା, କନାଉଜା ନିଷେଧ, ବିଦର୍ଭ ପ୍ରଭୃତି ଦେଶର ସୂଚନା ରହିଛି । କନ୍ୟା ଅନ୍ୱେଷଣରେ କବି ବର୍ଣ୍ଣନା କରିଛନ୍ତି ଯେ

ରାଜକୁମାରଙ୍କୁ ବିବାହ କରାଇବା ପାଇଁ ତାଙ୍କ ରୂପ ସମାନ ଚିତ୍ରପଟମାନ ପ୍ରସ୍ତୁତ କରାଇ ଦୂତମାନଙ୍କ ଦ୍ୱାରା ବିଭିନ୍ନ ଦେଶକୁ ପଠାଗଲା । ନାୟକର ଏହି ଚିତ୍ରପଟ ଦେଖି ବିଭିନ୍ନ ଦେଶର ରମଣୀମାନେ କିପରି କାମ ବିକାରରେ ଜର୍ଜରିତ ହେଲେ ତାହାର ଏକ ସବିଶେଷ ପ୍ରସଙ୍ଗ କବି ପ୍ରଦାନ କରିଛନ୍ତି । କବି ଲେଖିଛନ୍ତି –

"ପଟ ପଟଳ ସ୍ୱରୂପ ଚିତ୍ର କରାଇ
ଦେଶେ ଦେଶେ ବୁଲାଇଲା ଚରଙ୍କୁ ଦେଇ ।
ମାଳବରେ ମାଳବରେ ନାରୀ ବହିଲେ
ଅଙ୍ଗ ଅଙ୍ଗନାଚିତ୍ତ ଆୟତ୍ତ ନୋହିଲେ ।
ଉତ୍କଳ ଉତ୍କଳରାମା ବିରହେ ହେଲେ
ବିଦେହେ ବିଦେହେ ଯେତେ ଯୋଷା ତରିଲେ ।
କୁନ୍ତଳେ କୁନ୍ତଳେ ରାମା ପଟ ଧଇଲେ
ଚେଳେ ଚୋଳେ ଅନାଦରେ ଭୀରୁ ଭିଡ଼ିଲେ ।
ସିନ୍ଧୁରେ ସିନ୍ଧୁରେ ଝାସ ଯୁବା ପାଞ୍ଚିଲେ
ମାଗଧେ ମାଗଧେ ନାରୀ କୀର୍ତ୍ତି ପୁଚ୍ଛିଲେ ।
ମଲ୍ଲାରେ ମଲାରେ ସମ ହେଲେ ସୁନ୍ଦରୀ
ମତ୍ସ୍ୟ ମତ୍ସ୍ୟନୟନାଏ ଧୈର୍ଯ୍ୟ ନଧରି ।
(୧ମ ଛାନ୍ଦ) (ଇତ୍ୟାଦି)"

ଏଥିରୁ ଜଣାପଡ଼େ ଯେ କବି ଉପେନ୍ଦ୍ର ପ୍ରାଚୀନ ଭାରତର ବିଭିନ୍ନ ରାଷ୍ଟ୍ରଗୁଡ଼ିକ ସମ୍ପର୍କରେ ସମ୍ପୂର୍ଣ୍ଣ ଅବଗତ ଥିଲେ ।

"ପ୍ରେମ ସୁଧାନିଧି" କାବ୍ୟଟି ବସ୍ତୁତଃ ରସିକ ଓ ବିଦଗ୍ଧପାଠକ ମାନଙ୍କ ପାଇଁ ସୁଧାସମ ମଧୁର । ଏହି କାବ୍ୟଟି ଭାବ, ଶୈଳୀ ଓ ବର୍ଣ୍ଣନା ପାଟବ ଦୃଷ୍ଟିରୁ ଓଡ଼ିଆ ସାହିତ୍ୟ ଭଣ୍ଡାରରେ ଏକ ଅମୂଲ୍ୟ କାବ୍ୟସମ୍ପଦ ତୁଲ୍ୟ ବିବେଚିତ ହୋଇଥାଏ । ଏହା ୧୮୬୬ ମସିହାରେ କଟକ ପ୍ରିଣ୍ଟିଂ କମ୍ପାନୀ ଦ୍ୱାରା ପ୍ରଥମେ ପ୍ରକାଶ ପାଇଥିଲା ।

**ଲାବଣ୍ୟବତୀ :**

ଉପେନ୍ଦ୍ର କବି ପ୍ରତିଭାର ମହିମ୍ନ ଅର୍ଘ୍ୟ ହେଉଛି 'ଲାବଣ୍ୟବତୀ' । ଏହା ଏକ କାଳ୍ପନିକ କାବ୍ୟ । ୪୮ ଛାନ୍ଦ ବିଶିଷ୍ଟ ଏହି ଗ୍ରନ୍ଥ ଏକ ଯଥାର୍ଥ ରୀତିକାବ୍ୟ ।

କବି କହିଛନ୍ତି – 'ଲାବଣ୍ୟବତୀ ରସିକ ତୋଷକ' । ଏହି କାବ୍ୟଟି କବିଙ୍କର ମାଳିସାହି ଗ୍ରାମ ରହଣି ଭିତରେ ରଚିତ ହୋଇଛି । 'ଲାବଣ୍ୟବତୀ' କାବ୍ୟ ଯଥାର୍ଥରେ ଏକ ବିସ୍ମୟ । ଅନ୍ୟାନ୍ୟ ଭାରତୀୟ ସାହିତ୍ୟରେ ଏପରି ଗ୍ରନ୍ଥ ରଚନା ହେବାର ଦୃଷ୍ଟାନ୍ତ ବିରଳ । ଏହି କାବ୍ୟର ପ୍ରଥମ ଛାନ୍ଦରେ ମଙ୍ଗଳାଚରଣ ଅତ୍ୟନ୍ତ ଉଚ୍ଚକୋଟୀର । ଏହା ଉପେନ୍ଦ୍ରଙ୍କର ଗଭୀର ରାମଭକ୍ତିର ଦ୍ୟୋତକ । ଭଞ୍ଜବିତ୍‌ମାନେ ଏହାକୁ ରାମଚନ୍ଦ୍ର, ବଳରାମ ଏବଂ ପର୍ଶୁରାମ – ଏହି ରାମତ୍ରୟୀଙ୍କ ପ୍ରତି ପ୍ରଯୁଜ୍ୟ ବୋଲି ବିଶ୍ଳେଷଣ କରିଛନ୍ତି । କବିଙ୍କ ଭାଷାରେ –

"ଜୟ ଜୟ ଜୟ ରାମ ଜନକ ସୁଖଦ
ଭୀମ ହରଷ ଦାନରେ ସଦା ବିଶାରଦ ହେ ।
ଚନ୍ଦ୍ରହାସ ଶୋଭାକର ସମସ୍ତ କାଳର
ଲକ୍ଷଣବନ୍ତ ଅଲକ୍ଷ ମୁଖ ମନୋହର ହେ ।
କବି ଭାରତୀକି ଅଗୋଚର ଛବି ଯାର
ସୁମନାବୃନ୍ଦ ବନ୍ଦିତ ଏଣୁ ନିରନ୍ତର ହେ ।
ମହାଶୟ ବଳରିପୁ ପରେ ତାପକର
ଛତ୍ରଭଙ୍ଗ କୃତରୁ କାତର ଅରିପୁର
ସହସ୍ରକର ଉନ୍ନତ ହର ତେଜବାନ
ହରିପକ୍ଷ ସଦାନନ୍ଦ ତୋଷ ବିବର୍ଦ୍ଧନ ହେ ।
× × ×
ସେ ପ୍ରଭୁ କଞ୍ଜ ଚରଣେ କରି ତତପର
ଭଞ୍ଜ ବୀରବର କବି ମାନସଭ୍ରମର ହେ ।"

(ଲାବଣ୍ୟବତୀ – ୧ମ ଛାନ୍ଦ)

ଏହି ମନୋଜ୍ଞ କାବ୍ୟଟିର ନାୟକ ଚନ୍ଦ୍ରଭାନୁ ଓ ନାୟିକା ଲାବଣ୍ୟବତୀ । ଏଥିରେ କବି ନାୟକ - ନାୟିକାର ପୂର୍ବଜନ୍ମ – ଜନ୍ମ ବୃତ୍ତାନ୍ତ – ପୂର୍ବରାଗ – ମିଳନ – ବିଚ୍ଛେଦ ଓ ପୁନର୍ମିଳନକୁ ପର୍ଯ୍ୟାୟକ୍ରମେ ବର୍ଣ୍ଣନା କରିଛନ୍ତି । ଲାବଣ୍ୟବତୀ ପୂର୍ବଜନ୍ମରେ ପାର୍ବତୀଙ୍କ ମାନସ କନ୍ୟା ଥିଲା । ନାମ ବାଞ୍ଛାବତୀ । ଶିବଙ୍କ ଦୃଷ୍ଟିରୁ ଦୂରରେ ରଖିବା ପାଇଁ ପାର୍ବତୀ ତାକୁ ଘୋର ଅରଣ୍ୟ ଭିତରେ ରଖାଇଲେ । ଅରଣ୍ୟରେ ବାଞ୍ଛାବତୀ ଓ ପ୍ରଭାକର ପରସ୍ପରକୁ ଦେଖି ଆକୃଷ୍ଟ

ହେଲେ । ଅଭିଶାପ ହେତୁ ପୁରୁଷ ସ୍ୱର୍ଗଲାଭ କରି ବାଞ୍ଛାବତୀର ମୃତ୍ୟୁ ଘଟିଲା । ଶୂନ୍ୟବାଣୀ ହେଲା ଯେ ପ୍ରଭାକର ଗଙ୍ଗାସାଗରରେ ଝାସଦେଲେ ପରଜନ୍ମରେ ସେ ସେହି କନ୍ୟାକୁ ପ୍ରାପ୍ତ ହେବ । ପ୍ରଭାକର ପରଜନ୍ମରେ ଚନ୍ଦ୍ରଭାନୁ ନାମରେ କର୍ଣ୍ଣାଟ ରାଜା ଶଶିଶେଖର ଓ ରାଣୀ ଶଶିରେଖାଙ୍କ ପୁତ୍ରରୂପେ ଜନ୍ମଗ୍ରହଣ କଲେ । ବାଞ୍ଛାବତୀ ସିଂହଳ ରାଜା ରତ୍ନେଶ୍ୱର ଓ ରାଣୀ ବିଦ୍ୟୁଲ୍ଲତାଙ୍କ କନ୍ୟାରୂପେ ଜନ୍ମଗ୍ରହଣ କଲେ । ପୁନର୍ଜନ୍ମ ଲାଭ କରି ସେ ହେଲେ ଲାବଣ୍ୟବତୀ ।

କବି ଉପେନ୍ଦ୍ର ନାୟକ ଚନ୍ଦ୍ରଭାନୁଙ୍କୁ ସର୍ବଗୁଣସମ୍ପନ୍ନ ନାୟକ ଭାବରେ ଚିତ୍ରଣ କରିଛନ୍ତି । କବିଙ୍କ ଭାଷାରେ –

"ଆହ୍ଲାଦେ ଚନ୍ଦ୍ରତେଜେ ଭାନୁ ଭାବିକରି
ଚନ୍ଦ୍ରଭାନୁ ନାମ ଦେଲେ ବିଚାରି ବିଚାରି ।
ବେଦ ବେଦାନ୍ତେ ବିଧାତା ବ୍ୟାକରଣେ ହର
ସଙ୍ଗୀତରେ ନାରଦ ଶୃଙ୍ଗାର ଶାସ୍ତ୍ରେ ମାର ।
କବିପଣେ ଗଣେଶ ଜ୍ୟୋତିଷେ ବୃହସ୍ପତି
ଅଶ୍ୱାରୋହେ ମିହିର ଭୈରବ ପରା ଗତି ।
ଧନୁର୍ଦ୍ଧରେ ଅର୍ଜ୍ଜୁନ ଗଦାରେ ବୃକୋଦର
ଦାନୀରେ କର୍ଣ୍ଣ ମାନୀରେ କୁରୁଦଣ୍ଡ ଧର ।
ବଳିଷ୍ଠରେ ବଳି ଧାର୍ମିକରେ ଯୁଧିଷ୍ଠିର
ସୁନ୍ଦର ପଣରେ ତା'ର ସେହି ପଟାନ୍ତର ।"

(ଲାବଣ୍ୟବତୀ –୧ମ ଛାନ୍ଦ)

ଯୌବନ ପ୍ରାପ୍ତିପରେ ନାୟକ ଚନ୍ଦ୍ରଭାନୁ ମନ୍ତ୍ରୀପୁଅ ଗୁଣନିଧି, ଜ୍ୟୋତିଷପୁଅ ବସନ୍ତକ, ସୌଦାଗର ପୁତ୍ର ପୁରନ୍ଦର ଓ ପୁରୋହିତ ପୁତ୍ର ରତ୍ନଧ୍ୱଜ – ଏହି ଚାରିଜଣଙ୍କ ସହ ମିତ୍ରତା କରି କାଳ କାଟିବାକୁ ଲାଗିଲେ । ସିଂହଳର ବୋଇତିଆଳ ରତ୍ନାକରଠାରୁ ସେ ଲାବଣ୍ୟବତୀର ରୂପ ଗୁଣ ସମ୍ପର୍କରେ ଶ୍ରବଣ କଲେ । ଲାବଣ୍ୟବତୀର ଅଙ୍ଗଶ୍ରୀ କବିଙ୍କ ବର୍ଣ୍ଣନାରେ ଏହିପରି –

"ସୁନ୍ଦରୀ ସଂସାରେ ସେ ହେବାରୁ ଚକ୍ରବର୍ତ୍ତୀ
ଦେଲାକି ପ୍ରତି ଅଙ୍ଗରେ ଭୂପତି ସମ୍ପତ୍ତି ଯେ ।
କୁନ୍ତଳ ଦେଶରେ ଚୂଡ଼ା ଶୋଭା କରାଇଲା
ବିଦର୍ଭରେ ହାସକୁ ପ୍ରଭୁତ୍ୱ ପଣ ଦେଲା ଯେ ।

ମାଳବରେ କଣ୍ଠକୁ ମଣ୍ଡିତ କଲା ନେଇ
ଚୋଳରେ ଶୋଭିତ କଲା ଉରଜକୁ ତହିଁଯେ ।
କାଞ୍ଚିରେ ରଞ୍ଜନ କଲା ମଧ୍ୟକୁ ନିରତ
କନକ କଟକେ କଲା ପାଦକୁ ପୂଜିତ ଯେ ।
ମଣି ରମଣୀମଣିକି ଶାଣ ଯଉବନ
ବହୁ ମୂଲ୍ୟ ପ୍ରଭାକୁ ବଢ଼ାଇ ଦିନୁ ଦିନ ଯେ ।
ଉପମା ଆଣିମ କାହୁଁ ମହାକବି ହେଲେ
ସୁନ୍ଦରେ ଯାହା ଅଙ୍ଗରେ ସୁନ୍ଦର ହୋଇଲେ ଯେ ।”

(ଦ୍ୱିତୀୟ ଛାନ୍ଦ)

ନାୟକ ଚନ୍ଦ୍ରଭାନୁ ସିଂହଳର ବୋଇତିଆଳ ରତ୍ନାକରଠାରୁ ରାଜଯେମା ଲାବଣ୍ୟବତୀର ରୂପଗୁଣ ଶ୍ରବଣ କଲେ । ସନ୍ନ୍ୟାସୀଙ୍କଠାରୁ ଲାବଣ୍ୟବତୀର ଚିତ୍ରପଟ ଦର୍ଶନ କରି ଓ ନାୟିକାର ପ୍ରଶଂସା ଶୁଣି ତାଙ୍କ ପ୍ରତି ଚନ୍ଦ୍ରଭାନୁର ଅନୁରାଗ ବୃଦ୍ଧିହେଲା । ଏକ ଦେବୀ ସାହାଯ୍ୟରେ ଚନ୍ଦ୍ରଭାନୁ ଓ ଲାବଣ୍ୟବତୀର ମିଳନ ଘଟିଲା । ଏ ଥିଲା ମାୟାର ମିଳନ । ମାୟାର ଅବସାନ ପରେ ନାୟକ ଓ ନାୟିକାଙ୍କର ବିଚ୍ଛେଦ ଘଟିଲା । କର୍ଣ୍ଣାଟଦେଶର ଐନ୍ଦ୍ରଜାଲିକ ବିନୋଦ ସିଂହଳ ରାଜାଙ୍କୁ ମାୟାରେ ରାମଚରିତ ପ୍ରଦର୍ଶନ କଲା । ଲାବଣ୍ୟବତୀ ସଖୀ ମେଘମାଳାଠାରୁ ନାୟକର ତାଙ୍କ ପ୍ରତି ଆସକ୍ତିଭାବ ଜାଣିପାରିଲେ । ଚନ୍ଦ୍ରଭାନୁ ଓ ଲାବଣ୍ୟବତୀ ଶୁକ ଓ ବ୍ରହ୍ମଚାରୀ ଦ୍ୱାରା ପତ୍ର ଆଦାନ ପ୍ରଦାନ କଲେ । ଫଗୁଣ ମାସରେ ରାମେଶ୍ୱର ଶିବ ମନ୍ଦିରଠାରେ ସେମାନେ ପରସ୍ପରକୁ ଦର୍ଶନ କଲେ । ଏହାପରେ ସେମାନଙ୍କ ବିବାହ ସମ୍ପନ୍ନ ହେଲା । ଅନନ୍ତର କାବେରୀ ନଦୀକୂଳରେ ବନବିହାର କରୁଥିବାବେଳେ ଶାପଗ୍ରସ୍ତ ଚନ୍ଦ୍ରଭାନୁ ଲାବଣ୍ୟବତୀଠାରୁ ଦୂରେଇଯିବା, ଅଦ୍ଭୁତ ରଥରେ ଚଢ଼ି ଅସୁରଙ୍କୁ ବିନାଶ କରିବା ଏବଂ ସ୍ୱଦେଶକୁ ପ୍ରତ୍ୟାବର୍ତ୍ତନ କରି ରାଜ୍ୟଶାସନ ସହିତ ସୁଖକର ଦାମ୍ପତ୍ୟଜୀବନ ଯାପନ କରିବା କଥା ଏଥିରେ ବର୍ଣ୍ଣିତ ।

‘ଲାବଣ୍ୟବତୀ’ କାବ୍ୟ ମଧ୍ୟଯୁଗୀୟ ଓଡ଼ିଆ କାବ୍ୟଧାରାର ଏକ ଅପୂର୍ବ କାଳ୍ପନିକ କାବ୍ୟ । ଏହି କାବ୍ୟର ଷଷ୍ଠଛାନ୍ଦରେ ନାୟିକା ଲାବଣ୍ୟବତୀର ଜଳକ୍ରୀଡ଼ାକାଳୀନ ଦୃଶ୍ୟ ବେଶ ମଞ୍ଜୁଳ । ପୁଷ୍କରିଣୀ ମଧ୍ୟରେ ଲାବଣ୍ୟବତୀର ସ୍ନାନକାଳୀନ ଦୃଶ୍ୟ କବିଙ୍କ ଲେଖନୀରେ ନିମ୍ନଭାବରେ ବର୍ଣ୍ଣିତ ।

"ସର ଶୋଭା ଦେଖୁଁ ଦେଖୁଁ ସେ ସରେ ମର୍ଦ୍ଦନ ବିଧି
ବକ୍ଷ ପ୍ରମାଣେ ଜଳେ ଯାଇଁ ବିଜେ ଲାବଣ୍ୟନିଧି ।
କବି ବିଚାରିଲା ବିଚିତ୍ର ହେଲା ତୁମ୍ବୀ ବୁଡ଼ିଲା
ନ ବୁଡ଼ି ଶଇଳ ସଳିଳ ଉପରରେ ରହିଲା ।
କିସପୁଣି ଦେଖା ନ ଯାଇ ଯେବେ ଥାଇ ଜୀବରେ
ବିଷମ ସମସ୍ୟା ପୂରଣ ହେଲା ଏହି ଠାବରେ ।
ଅପୂର୍ବ ଅମ୍ବୁଜ ମୁଖକୁ ଭାବି ଭୃଙ୍ଗ ଚକୋର
ଚୁମ୍ବିବାଲୋଭରେ ଧାଇଁଲେ ଶ୍ରୁତି ଚାହିଁ କାତର ।
କେଶ ଦରଶନେ ରଥାଙ୍ଗ ଥାଇଁ ଆହାର ବଶେ
ବିଚ୍ଛେଦ ଭୟରୁ ପଳାଇଗଲେ ନ ରହି ପାଶେ ।
ନୟନ ଉଜ୍ଜ୍ୱଳ କଜ୍ଜ୍ୱଳ ଲାଞ୍ଛୀ ଅନାଇ ଦେଇ
ଗଭୀର ଜଳରେ ପଶିଲେ ମୀନ ଭୟକୁ ପାଇ ।" (ଷଷ୍ଠ ଛାନ୍ଦ)

ରୀତିକାବ୍ୟ ପରମ୍ପରାରେ ନାୟିକାର ନଖଠାରୁ ଶିଖ ପର୍ଯ୍ୟନ୍ତ ବର୍ଣ୍ଣନା ପ୍ରସଙ୍ଗରେ କବି ପ୍ରକୃତିକୁ ଛନ୍ଦାୟିତ କରିଛନ୍ତି । ତେଣୁ ଲାବଣ୍ୟବତୀ ଠାରେ ନାରୀ ଓ ପ୍ରକୃତିର ମିଶାମିଶି ଭାବ ଲକ୍ଷ୍ୟ କରାଯାଏ । ଯେପରି –

"ନାରୀ ନଦୀବାରି ନୋହିଲେ ତହିଁ ଘଡ଼ିଏ ଯାଏ
ହାସ କୁମୁଦ ନେତ୍ର ମୀନ ମୁଖ କମଳ ପ୍ରାୟେ ।
ଜଘନ ପୁଳିନ ଉରଜ ଚକ୍ରବାକ ମିଥୁନ
ରୋମାବଳି ଆଳି ଆବଳୀ ଗତି ହଂସ ସମାନ ।
ଉଦର କମଳ ପଳାଶ ନାଭି ଜଳ ଭଉଁରୀ
କର କୋକନଦ ସୁବାହୁ ଯହିଁ ମୃଣାଳ ସରି ।" (ଷଷ୍ଠ ଛାନ୍ଦ)

ଏହି କାବ୍ୟର ଏକାଦଶ ଛାନ୍ଦରେ ଲାବଣ୍ୟବତୀର ଶୟନକାଳୀନ ଶୋଭାକୁ କବି ଅତ୍ୟନ୍ତ ମନୋରମ ପରିପାଟୀରେ ବର୍ଣ୍ଣନା କରିଛନ୍ତି । ଏହା ଯେପରି କାବ୍ୟିକ, ସେହିପରି ହୃଦ୍ୟ । ଯଥା –

"ଅଣିମାଦି ସୁଖଦାୟୀ ଶୋଇଅଛି ଅଣି ହୋଇ
ପଲ୍ୟଙ୍କ ଅଙ୍କରେ ଦିଶେ ଏମନ୍ତ ଶୋଭା ।
ରସାଣ ରଜତ ବାଡ଼େ କନକଲତା କି ଜଡ଼େ
ବିଶଦ ଘନରେ କି ସେ ଚପଳା ପ୍ରଭା ।

ବାମ କର କପୋଳତଳ ।
କେନ୍ଦୁ ପଲ୍ଲବେ ଥୁଆ କି ଫୁଲ କମଳ ।
ବୁଜିବାରୁ ଶୋଭା ନେତ୍ର    କି ନୀଳେନ୍ଦ୍ରୀ ବରପତ୍ର
ଉଲଟାଇ ଦର୍ପଣେ ଥୋଇଛି କୁତୁକେ ।
କି ଅବା ଖଞ୍ଜନଯୁଗ    ନିଶ୍ଚଳ ହେବାରୁ ଯୋଗ
ଅଞ୍ଜନ ଅଠାକାଠିରେ ଏକାବେଳକେ ।
ମୀନରାଶି ଉଦୟ ଆସି ।
ମୃଗାଙ୍କ ଅଙ୍କରେ ହେଲା ପରାୟେ ଦିଶି ।"

(ଲାବଣ୍ୟବତୀ – ଏକାଦଶଛାନ୍ଦ)

କବି ଉପେନ୍ଦ୍ର ଯୁଗୀୟ ଆହ୍ୱାନ କ୍ରମେ ନାୟିକାର ଶୋଭା ବର୍ଣ୍ଣନାରେ ସମସ୍ତ କବିଙ୍କୁ ଅତିକ୍ରମ କରିଛନ୍ତି ନିଶ୍ଚୟ । ତାଙ୍କର କଳ୍ପନାବିଳାସ, ବର୍ଣ୍ଣନା ଋତୁର୍ଯ୍ୟ ଚମତ୍କାର । ନାୟିକା ଲାବଣ୍ୟବତୀର ଶୟନକାଳୀନ ଅଙ୍ଗଶୋଭା ଓ ମୁଖଶ୍ରୀ ବର୍ଣ୍ଣନା କବିଙ୍କ ଲେଖନୀରେ ବେଶ୍ ମନୋଜ୍ଞ । ଯେପରି –

"ଝିଲିମିଲି ମାଳିପାନ    ପତ୍ରିରେ ଅତିଶୋଭନ
ମାର ମଙ୍ଗଳ ପଲ୍ଲବ ତୋରଣାପରା
କତୁରା କୁରୁଳୀ ଝଳି    ବାତେ ଚଳେ ଅଳି ଆଳି
ପକ୍ଷ ଋଳି କିବା ଉଡ଼ିଯିବାକୁ ତ୍ୱରା ।
ମୁକୁତା ସୀମନ୍ତୀ ଉପରେ
କାଳିନ୍ଦୀ ମଧ୍ୟେ କି ବହେ ଜାହ୍ନବୀ ଧାରେ ।"

ସେହିପରି ଲାବଣ୍ୟବତୀର ମୁଖସୌନ୍ଦର୍ଯ୍ୟ କବିଙ୍କ ଭାଷାରେ–

"ପାନ କଳ ପୁରି ତୁଣ୍ଡେ    ଫୁଟିଦିଶୁ ଅଛି ଗଣ୍ଡେ
ମୁକୁରେ ଜବା କୁସୁମ ପ୍ରତିବିମ୍ବେ କି
ଶ୍ୱାସବଶେ ଫୁଲେ ଘୋଣା    ତହିଁ ନୀଳା ନାକଚଣା
ଉତ୍‌ଫୁଲ୍ଲ ତିଳଫୁଲକୁ ଭୃଙ୍ଗଚୁମ୍ବେକି
ଥୋପି ପଡ଼େ ରଙ୍ଗ ଅଧରେ
ଭସ୍ମହୀନ ପକ୍ୱବିମ୍ବେ ମନ ନ ଧରେ ।"

କାବ୍ୟଗୁଡ଼ିକରେ ନଗର ବର୍ଣ୍ଣନା ମଧ୍ୟଯୁଗୀୟ କବିମାନଙ୍କର ଏକ ବିଳାସ ଅଟେ । କବି ଉପେନ୍ଦ୍ର ନଗର ବର୍ଣ୍ଣନାରେ ବେଶ୍ ପାରଦର୍ଶିତା ପ୍ରଦର୍ଶନ କରିଛନ୍ତି । ସିଂହଳ କଟକର ବର୍ଣ୍ଣନା କରିବାକୁ ଯାଇ କବି ଲେଖିଛନ୍ତି –

"କହିବାର ନୋହେ ସେ କଟକ ଛଟକକୁ
ରତ୍ନଝଟକରେ ହସେ ଆନ କଟକୁ ଯେ ।
ଅଛନ୍ତି ଧନଦସମ ଧନବନ୍ତମାନେ
କର୍ଣ୍ଣେ ଶୁଣାଅଛି ସମାନକୁ ଏକାଦାନେ ଯେ ।
ଯେତେଗୋଟି ସୁବର୍ଣ୍ଣ ଯାହାକୁ ମିଳେ ତହିଁ
ତେତେଗୋଟି କଳସ ସେ ମନ୍ଦିରେ ବସାଇ ଯେ ।
ଗୋରୋଚନା ପ୍ରକାରେ ଯହିଁରେ ମୃଗମଦ
ନିତି ଜୀର୍ଣ୍ଣ ବସନକୁ ଯାଚନ୍ତି ପୁଳିନ୍ଦ ଯେ ।
କୁଙ୍କୁମ ଉକୁଟାଇ ହୁଅନ୍ତି ନାରୀ ଯହିଁ
ହରିଦ୍ରାରେ ଆଦର କରିବେ କାହିଁ ପାଇଁ ଯେ ।
ମାର୍ଗ ମାର୍ଜନେ ରଜନିକର ଆଣି ଯାଇ
ରଜନୀ କର ଆଣନ୍ତି ଶକଟରେ ବାହିଯେ ।
ହରିତକୀ ପାଇଁ ତିଆରିଲେ ବୈଦ୍ୟକୁଳ
ଭାରବାହେ ଭାରରେ ଆଣନ୍ତି ଜାତି ଫଳ ଯେ ।
ଶବରୀ ଶର୍ବରୀ ଶେଷୁ ଅରଣ୍ୟକୁ ଯାଇ
ହରି ବିଦାରିତ କରୀ ମୋତି ପଡ଼ିଥାଇ ଯେ ।
ବଦରୀ ଆଦରେ ନେଇ ସରୋବରେ ଧୋଇ
ବିକା ତା ନ ଯିବବୋଲି ଆସନ୍ତି ପକାଇ ଯେ ।"
ଖଣ୍ଡ ପରଶୁ ଧାରଣ ପୁର ପରିଷ୍କାରେ
ନ ଦହନ୍ତି ଶାମୁକା ମୁକୁତା ବିହୀନରେ ଯେ ।
ବଜ୍ରଜାତି ବିନା ଗଜ ନ ଆଣନ୍ତି ବନୁ
ଅଶ୍ୱଶାଳେ ବନ୍ଧାନୋହେ ସିନ୍ଧୁଜାତିବିନୁ ଯେ ।
ମୂଷିକରେ ନେପାଳୀ ପାଳନା ସୁଆଦରେ
ଗନ୍ଧମାର୍ଜାର ପୋଷିତ ବିଡ଼ାଳପଦରେ ଯେ ।

ମାଳୀଆଳି ଦକ୍ଷିଣାବର୍ତ୍ତକ ବିନା କମ୍ବୁ
ନ ଘେନନ୍ତି ଦେବାକୁ ହରଚରଣେ ଅମ୍ବୁ ଯେ ।
ଏକମୁଖୀ ରୁଦ୍ରାକ୍ଷ ଗ୍ରହଣ ଯୋଗୀକରେ
ବାଳକେ କିଣନ୍ତି ଦ୍ରାକ୍ଷା କେବଳ କୋଳିରେ ଯେ ।
ପଦ୍ମିନୀ ଜନମସ୍ଥାନ ପଦ୍ମାକର ପୁରୀ
ଆନଜାତି ନାରୀଏ ଯହିଁରେ ପରିଚାରୀ ଯେ ।
କିନ୍ନରୀ ଗୀତଶ୍ରବଣ ଯହିଁ ନିତି ନିତି
ମହୀମଧ୍ୟେ ସ୍ୱର୍ଗ ସେ ହୋଇଛି ଉତପତି ଯେ ।" (ଦ୍ୱିତୀୟ ଛାନ୍ଦ)

କାବ୍ୟର ଦ୍ୱାଦଶ ଛାନ୍ଦଟି ଅତ୍ୟନ୍ତ ମନୋରମ । ସ୍ୱୟଂ ଉପେନ୍ଦ୍ର ଏହାକୁ 'ଅତିମନୋହର ଛାନ୍ଦ' ବୋଲି ଅଭିହିତ କରିଛନ୍ତି । ଲାବଣ୍ୟବତୀ ସ୍ୱପ୍ନଭଙ୍ଗ ପରେ ଯେଉଁ ବିଳାପ କରିଛି, ତାହା ଅତ୍ୟନ୍ତ ମାର୍ମିକ । କୌଶିକ ରାଗ ଏବଂ କୁମୁଦକାନ୍ତ ଚଉତିଶା ବାଣୀରେ ରଚିତ ଲାବଣ୍ୟବତୀର ବିଳାପ କବି ଲେଖନୀରେ ନିମ୍ନୋକ୍ତ ଭାବରେ ପ୍ରତିପାଦିତ –

"ଚେତି ଚତୁରୀ ଚାହିଁଲା ନିଶି ନାଶେ ପାଶେ ନାହିଁ ଦିବ୍ୟ ତରୁଣ
ମାରି ହୃଦେ ହାତ ନାଥ ନାଥ ବୋଲି ଅତି ଉଚ୍ଚେ କଲା କାରୁଣ୍ୟ
ଖୋଜେ ଅଧୀରେ, ଚେତନାହତ ସେ ବିଧିରେ ।
ଶେଯ ଲେଉଟାଇ, କବରୀ ଫିଟାଇ କର ଭରି କୁଚ ସନ୍ଧିରେ ।
ପୁଣି ବୋଲଇ ହେ ଜାଣି ମୁଁ ନଥିଲି ଦଇବ ତୁ ଏଡ଼େ ଦାରୁଣ
କ୍ଷୁଧାତୁରକୁ ସୁଧାତୁଲ୍ୟ ଭୋଜନ ପରଶିଲୁ କେଉଁ କାରଣ
ଭୁଞ୍ଜିବସିବା, ବେଳେ କୁଳିଶ ବୃଷ୍ଟିକଲୁ ।
ଯେବେ କଲୁ ତେବେ ପରାଣ ନ ନେଲୁ ଏଡ଼େ ବ୍ୟାକୁଳ କିମ୍ପା କଲୁ ।"
(ଲାବଣ୍ୟବତୀ – ଦ୍ୱାଦଶ ଛାନ୍ଦ)

ବାସ୍ତବିକ୍ ବିରହ ଜର୍ଜରିତ ତପ୍ତବିକଳ ବିରହିଣୀର ଏହା ହେଉଛି ମର୍ମସ୍ପର୍ଶୀ ଖେଦୋକ୍ତି ।

"ଲାବଣ୍ୟବତୀ" କାବ୍ୟରେ ପ୍ରସଙ୍ଗକ୍ରମେ କବି ଉପେନ୍ଦ୍ର ବସନ୍ତ, ଗ୍ରୀଷ୍ମ, ବର୍ଷା, ଶୀତଋତୁର ବର୍ଣ୍ଣନା କରିଛନ୍ତି । ଏତଦ୍ ବ୍ୟତୀତ ଏହି ଚାରିଋତୁକୁ ଏକତ୍ର ବର୍ଣ୍ଣନା କରି ଉପେନ୍ଦ୍ର ନିଜର ଶୈଳୀଗତ ବୈଶିଷ୍ଟ୍ୟ ପ୍ରତିପାଦନ କରିଛନ୍ତି –

"ପ୍ରବେଶ ସୁରଭି ଘନ ରସମୟ ଜଡ଼ବର ସୁରଞ୍ଜନ
ସୁଖଦାତା ଘନସାର ପ୍ରକାଶରେ ହରିତାପ ପ୍ରଭଞ୍ଜନ ହେ ସାଧୁ ।"

(ଲାବଣ୍ୟବତୀ - ୩୬ ଛାନ୍ଦ)

ତତ୍କାଳୀନ ସମାଜରେ ବାଣିଜ୍ୟ କାରବାର ପ୍ରଚଳିତ ଥିଲା । ସିଂହଳ ସହିତ ଉତ୍କଳର ବାଣିଜ୍ୟିକ ସମ୍ପର୍କ ପ୍ରତିଷ୍ଠିତ ଥିଲା । କବି ଦର୍ଶାଇଛନ୍ତି –

"ବହିତ୍ର ଲାଗିଲା ଯାଇଁ ସିଂହଳ ଦ୍ୱୀପରେ
ସାଧବ ଯୁବତୀମାନେ ଅତି ପ୍ରମୋଦରେ
ଗଲେ ବହିତ୍ର ବନ୍ଦାଇ,
ଅର୍ଘ୍ୟସ୍ଥାଳୀ ମାନ କରେ ହୁଳହୁଳି ଦେଇ ।"

(ସପ୍ତଦଶ ଛାନ୍ଦ)

ଏହି କାବ୍ୟର ପଞ୍ଚଦଶ ଛାନ୍ଦ (ଐନ୍ଦ୍ରଜାଲିକର ମାୟାପ୍ରଦର୍ଶନ)ରେ କବି ଉପେନ୍ଦ୍ର ଐନ୍ଦ୍ରଜାଲିକର ରାମଚରିତ ପ୍ରଦର୍ଶନ ପରିପ୍ରେକ୍ଷୀରେ ରାମାୟଣ କଥାବସ୍ତୁକୁ ଯେପରି ସଂକ୍ଷିପ୍ତ ଭାବରେ ବର୍ଣ୍ଣନା କରିଛନ୍ତି, ତାହା ତାଙ୍କର ପ୍ରକାଶଭଙ୍ଗୀର ଚମତ୍କାରିତା ପ୍ରଦର୍ଶନ କରେ । ଏହି ଛାନ୍ଦର ଶେଷରେ ବର୍ଣ୍ଣିତ ଚନ୍ଦ୍ରଭାନୁର ବିରହ ବସ୍ତୁତଃ କବି ଉପେନ୍ଦ୍ରଙ୍କର ବିରହୀମାନସର ଯଥାର୍ଥ ପରିପ୍ରକାଶ ।

"ହେ ରାମ ଶ୍ୟାମସୁନ୍ଦର ଅଛ ଦତ୍ତ କରି
ସୁଗ୍ରୀବକୁ ତାରା ବିଭୀଷଣେ ମନ୍ଦୋଦରୀ ଯେ ।
ଲାବଣ୍ୟବତୀ ଯୁବତୀ ଶିରୋମଣି ମୋର
ମନୋହାରୀ ହୋଇବ ଏମନ୍ତ କୃପାକର ହେ ।
ସେ ନବୀନା ବିନା ଆନେ ନ ରସେ ମୋ ମନ
ଦହନ କରୁଛି ମୋତେ ମଦନଦହନ ହେ ।
ପ୍ରଭୁ ତୁମ୍ଭେ ବିରହ ବିପଦ ଅନୁଭବୀ
ନ ଘେନିଲେ ଆଉ କାହା ଆଗେ ଜଣାଇବି ଯେ ।"

ଅନ୍ୟାନ୍ୟ କାବ୍ୟ ଅପେକ୍ଷା ଲାବଣ୍ୟବତୀର କେତେକ ଛାନ୍ଦର ନାମ କରଣରେ କବିଙ୍କର ସ୍ୱାତନ୍ତ୍ର୍ୟ ପରିଲକ୍ଷିତ ହୁଏ । ଯେପରି କବି ଚତୁର୍ଥ ଛାନ୍ଦକୁ 'ବେଶପେଶଳ ଛାନ୍ଦ' ଭାବରେ ବର୍ଣ୍ଣନା କରିଛନ୍ତି –

"ହିରଣ୍ୟ ତନୁରେ ଯେ କ୍ଷତକାରୀ । ଦାସବତ୍ସଳ ରାମ ନରହରି
ଧ୍ୟାନେ ଅର୍ଜିତ ଅଘକରି ହତ । ଉପଇନ୍ଦ୍ର ବୀରବର ରଚିତ ଯେ
ରସିକସିନ୍ଧୁକୁ ଚାନ୍ଦଯେ ।
କବି ଯେ ଜାଣିମେ ଯେତେ ଶ୍ରମ ଏଥି ଏ ବେଶପେଶଳ ଛାନ୍ଦ ଯେ।"
(୪ର୍ଥ ଛାନ୍ଦ)

ସେହିପରି କବିସମ୍ରାଟ ଉପେନ୍ଦ୍ର ଭଞ୍ଜ ଊନବିଂଶଛାନ୍ଦକୁ 'ଅନୁନୟଲେଖ ଛାନ୍ଦ' ଏକବିଂଶ ଛାନ୍ଦକୁ 'ଉଚ୍ଛନ୍ନକାରକ ଛାନ୍ଦ', ଦ୍ୱାତ୍ରିଂଶ ଛାନ୍ଦକୁ 'ମନୋରମଛାନ୍ଦ', ସପ୍ତତ୍ରିଂଶ ଛାନ୍ଦକୁ 'ବୁଧମୋହନ ଖଳଗହନ ନାଶେ ଦହନ ଛାନ୍ଦ', ଊନଚତ୍ୱାରିଂଶ ଛାନ୍ଦକୁ 'ବିଚିତ୍ର ଛାନ୍ଦ', ଏକଚତ୍ୱାରିଂଶ ଛାନ୍ଦକୁ 'ବିଚିତ୍ର ଛାନ୍ଦ' ଦ୍ୱିଚତ୍ୱାରିଂ ଛାନ୍ଦକୁ 'ରସିକ ରତ୍ନମାଳା ଛାନ୍ଦ' ତ୍ରିଚତ୍ୱାରିଂଶ ଛାନ୍ଦକୁ 'ରସିକଭ୍ରମର ତୋଷଦମାଳୀ ଛାନ୍ଦ' ଇତ୍ୟାଦି ଉଲ୍ଲେଖ କରାଯାଇଛି ।

କବି ଉପେନ୍ଦ୍ର ଥିଲେ ଶୃଙ୍ଗାରୀ କବି । ତେଣୁ ସେ ଶୃଙ୍ଗାର ରସର ଶ୍ରେଷ୍ଠତା ପ୍ରତିପାଦନ କରିବା ଯୁକ୍ତିଯୁକ୍ତ । କବିଙ୍କର ଏହି ଶୃଙ୍ଗାରୀ ଭାବନା ଶାସ୍ତ୍ରୀୟ । ଏହି ଭାବନାଟି କବି ଉପେନ୍ଦ୍ର ଶୃଙ୍ଗାରୀକବି ଭୋଜରାଜ, ଗୋବର୍ଦ୍ଧନାଚାର୍ଯ୍ୟ, କବିରାଜଧୋୟୀ, ଶ୍ରୀଜୟଦେବଙ୍କ ଦ୍ୱାରା ପ୍ରଭାବିତ ହୋଇ ଆହରଣ କରିଥିବା ଅନୁମେୟ । କବି ଉପେନ୍ଦ୍ର ରତିସୁଖକୁ ଶ୍ରେଷ୍ଠ ସୁଖ ଭାବରେ ବିଚାର କରିଛନ୍ତି । ତେଣୁ ସେ ଲେଖିଛନ୍ତି –

"ସ୍ୱର୍ଗ ଅପବର୍ଗରୁ ପରମସୁଖ ନାହିଁ
ରତିସୁଖ ସଙ୍ଗେ ସେ ସମାନ ହେବ କେହି ଯେ ।
ସ୍ୱର୍ଗ ସୁଖ ଇନ୍ଦ୍ରବଡ଼ କାହା ଭୁକ୍ତମାନ
ସେ ରତି ଲୋଭୁଁ ଶାପେଟି ସହସ୍ରଲୋଚନ ଯେ ।
ଅପବର୍ଗ ବ୍ରହ୍ମର ଆୟତ୍ତ ବୋଲି କହି
ରତି ରସେ ବ୍ରହ୍ମଲୀନ ପୁଣ ଅଛି କହି ଯେ ।" (ଅଷ୍ଟାବିଂଶ ଛାନ୍ଦ)

କବି ଉପେନ୍ଦ୍ର ରସବାଦୀ କବି । ସେ ଆଦିରସର ଶ୍ରେଷ୍ଠ ରୂପକାର । ତେଣୁ ଶୃଙ୍ଗାର ରସ ସମ୍ପର୍କରେ କବିଗୁରୁ ଉପେନ୍ଦ୍ର ଲେଖିଛନ୍ତି –

"ଜାଣି ନଥିଲାରୁ ଏ ରସ ଏମନ୍ତ ସ୍ମରକୁ ଦହିଲେ ହର
ଜାଣିଲା ଦିନରୁ ଯୁବତୀକି କଲେ ଅର୍ଦ୍ଧ ଅଙ୍ଗେ ଅଙ୍ଗୀକାର ।

ଆଜନ୍ମ ବ୍ରହ୍ମଚରୀ ପଣେ କେ ବଡ଼ ବୁଝ ଋଷ୍ୟଶୃଙ୍ଗଠାରୁ
ନିଜ ଦୀକ୍ଷା ଛାଡ଼ି ଶିକ୍ଷାକଲେ ରସ ରୂପାଜୀବା କରି ଗୁରୁ ।"

ପୁନଶ୍ଚ ଉପେନ୍ଦ୍ର ଲେଖିଛନ୍ତି –

"ଏ ରସେ ମନ ନ ଘେନଇ ଯାହାର ସେହି ନର ପଶୁଘେନ
ଯେଉଁ ରସରେ ବ୍ରହ୍ମା ବଶ ହୋଇଛି କାହିଁଛି ତାହା ସମାନ ?"

ସ୍ମରଶାସ୍ତ୍ରରେ ଯାହା ପ୍ରତିପାଦିତ ହୋଇଛି, କବି ଉପେନ୍ଦ୍ର ତଦନୁଯାୟୀ କାବ୍ୟରେ ତାହାକୁ ଉଲ୍ଲେଖ କରିଛନ୍ତି । ନାରୀକୁ ସର୍ବାନ୍ତକରଣରେ ଭଲ ପାଇପାରିଲେ ହିଁ ଦାମ୍ପତ୍ୟଜୀବନ ସୁଖମୟ ହୁଏ । ପୁନଶ୍ଚ ଦେହର ମିଳନରୁ ହିଁ ମନର ମିଳନରେ ଗାଢ଼ତ୍ୱ ସୃଷ୍ଟି ହୋଇଥାଏ । ତେବେ କାମଶାସ୍ତ୍ର ଅନୁସାରେ ଉପେନ୍ଦ୍ର କହନ୍ତି –

"ଯୋଷା ପରିହାସ ଭାଷା ଯେହୁ ନ ଶୁଣିଛି
କର୍ଣ୍ଣନୋହେ କୁହରଯୁଗଳ ସେ ବହିଛି ଯେ ।
ଯେ କରିନାହିଁ ସୁନ୍ଦରୀ ବିମ୍ବାଧରୀ ପାନ
କି ସ୍ୱାଦୁ ଜାଣିଛି ଧିକ ତାହାର ଜୀବନ ଯେ ।
ମହାମହା ଦାନ ଦେଇ ନାହିଁ ଯେହୁଁ କରେ
ସେ କାହିଁ ପଡ଼ିବ ରସବତୀ ଚିବୁକରେ ଯେ ।"

(ଅଷ୍ଟାବିଂଶ ଛାନ୍ଦ)

କବି ଉପେନ୍ଦ୍ର 'ଲାବଣ୍ୟବତୀ' କାବ୍ୟରେ ନାରୀ ମୁଖ୍ୟତଃ ଚାରିଭାଗରେ ବିଭକ୍ତ ବୋଲି କହିଛନ୍ତି । ଯଥା – ପଦ୍ମିନୀ, ଚିତ୍ରିଣୀ, ଶଙ୍ଖିନୀ ଓ ହସ୍ତିନୀ । ଏହି ଚାରିଜାତି ପ୍ରଧାନ ଅଟେ । ଉପେନ୍ଦ୍ରଙ୍କ ବକ୍ତବ୍ୟ ହେଉଛି –

"ନାରୀ ପଦ୍ମିନୀ, ଚିତ୍ରିଣୀ ଶଙ୍ଖିନୀ ହସ୍ତନୀ
ଚାରି ଜାତି ପ୍ରଧାନ ଆଉ ସଂକରୀ ଘେନି ଯେ ।"

(ଅଷ୍ଟାବିଂଶ ଛାନ୍ଦ)

ଉପେନ୍ଦ୍ରଙ୍କ ଲେଖନୀରେ ନାରୀର ସ୍ଥାନ ଶୀର୍ଷରେ । ନାରୀର ଶ୍ରେଷ୍ଠତା ପ୍ରତିପାଦନ କରିବା ପାଇଁ କବି କହନ୍ତି –

"ହୀରାନୀଳା ମାଣିକ୍ୟ ମୁକୁତା ବିଦ୍ରୁମର
ମୂଲ୍ୟ ଅଛି ମୂଲ୍ୟନାହିଁ ସ୍ତିରୀରତନର ଯେ ।" (ଅଷ୍ଟାବିଂଶ ଛାନ୍ଦ)

ନାରୀବିନା ପୁରୁଷର ଜୀବନ ଶୂନ୍ୟ ଓ ହତାଶମୟ । ପୁନଶ୍ଚ ମନ ଅନୁରୂପେ ନାରୀ ପ୍ରାପ୍ତି ଘଟିଲେ ତାହାକୁ ତ ଦୁର୍ଲ୍ଲଭଯୋଗ ବୋଲି କୁହାଯିବ ନିଶ୍ଚୟ । ତେଣୁ ଉପେନ୍ଦ୍ର ମତ ବାଢ଼ିଛନ୍ତି –

"ଦେହ ଉପରେ ମନ ପ୍ରଭୁପ୍ରମାଣ ଧନ
ମନର ପ୍ରଭୁ ପ୍ରୀତିରେ,
ପ୍ରୀତିର ପ୍ରଭୁ ନାରୀ ତାକୁ ପୁଣି ପାସୋରି
କେହୁ ଧରିବ ଧୃତିରେ ।
ପ୍ରାଣବନ୍ଧୁ ! ପୁଣି ଆରତି ମୁହିଁରେ
ମନକୁ ଅନୁରୂପେ ଯୁବତୀ ମିଳେ ତପେ
ଏଣୁ ଦୁର୍ଲ୍ଲଭ କହିରେ ।"

(ସପ୍ତଚତ୍ୱାରିଂଶ ଛାନ୍ଦ)

ସ୍ତ୍ରୀ ହେଉଛି ପୁରୁଷର ପ୍ରାଣଠାରୁ ଅଧିକ । ପୁରୁଷ ତା'ର ପ୍ରାଣ ଅପେକ୍ଷା ସ୍ତ୍ରୀକୁ ବେଶି ଭଲପାଏ । ତେଣୁ ଉପେନ୍ଦ୍ର କହନ୍ତି –

"ପ୍ରାଣ ଛାଡ଼ି ହୋଏ ସ୍ତିରୀ ଛାଡ଼ି ନୋହେ କେବେ
ରାବଣାଦିଠାରୁ ଶୁଣିଥିବ ତ ପ୍ରସ୍ତାବେ ଯେ ।"

କବିଙ୍କ ମତରେ ସ୍ତ୍ରୀ ହୀନ ଜୀବନ ହେଉଛି ପାପୀର ଜୀବନ । ତେଣୁ ଉପେନ୍ଦ୍ରଙ୍କ ଭାଷାରେ –

"କି ହେବ ଇନ୍ଦ୍ରହୋଇଲେ ସର୍ବ ସମ୍ପଦେ ସେ
ସ୍ତିରୀ ହୀନଠାରୁ ପାପୀ ନାହିଁ ମହୀଦେଶେ ଯେ ।"

(ଅଷ୍ଟାବିଂଶ ଛାନ୍ଦ)

'ଲାବଣ୍ୟବତୀ' ଉପେନ୍ଦ୍ର ଭାରତୀର ଏକ ମହୋଜ୍ଜ୍ୱଳ କୃତି । ଏହି କାବ୍ୟ ରସିକତୋଷକ ହୋଇଛି । କାରଣ ଏଥିରେ ବିଭିନ୍ନ ଅଳଙ୍କାରର ମଞ୍ଜୁଳ ବିନ୍ୟାସ ଦେଖିବାକୁ ମିଳେ । ଏହି କାବ୍ୟର ସମୁଦାୟ ୨୩୬୧ ପଦମଧ୍ୟରୁ ୧୨୪୧ ପଦ ଅଳଙ୍କାର ଯୁକ୍ତ । ଏଥିରେ ୨୬୬ଟି ଶବ୍ଦାଳଙ୍କାର ଏବଂ ୯୭୫ ହେଉଛି ଅର୍ଥାଳଙ୍କାର । ଏହି କାବ୍ୟରେ ସରସ ଶବ୍ଦ ସଂଯୋଜନା, ଭାଷାର ମଧୁରତା, ଅପୂର୍ବ ସାଙ୍ଗୀତିକତା, କଳ୍ପନା- ବିଳାସିତା, ଉପସ୍ଥାପନା ଶୈଳୀରେ ନାଟକୀୟତା, ପ୍ରଭୃତି ଲକ୍ଷଣୀୟ । ଏହା ଭଞ୍ଜ ପ୍ରତିଭାର ସାର୍ଥକ ନିଦର୍ଶନ । କବି ଯଥାସମ୍ଭବ

ଲାବଣ୍ୟବତୀ କାବ୍ୟକୁ ସୁକୁମାର ପଦଯୋଜନାରେ କୋମଳ, ସରଳ ଓ ସାବଲୀଳ କରିବା ସକାଶେ ଉଦ୍ୟମ କରିଛନ୍ତି । 'ମୃଦୁଗୀତ' ଓ 'ଅଳଙ୍କାର ଯୁକ୍ତ' ହେବା ପାଇଁ କବି ଯଥାସାଧ୍ୟ ଉଦ୍ୟମ କରି ଅପୂର୍ବ ସଫଳତା ଲାଭ କରିଛନ୍ତି । କବି କାବ୍ୟର ପ୍ରଥମ ଛାନ୍ଦରେ ସୂଚାଇଛନ୍ତି–

"ମୂର୍ତ୍ତିମନ୍ତ କରି ମୃଦୁଗୀତ ବିଚାରଇ
ଏଣୁ କରିଥିବ ଅଳଙ୍କାର ଯୁକ୍ତ ହୋଇ ।
ପଦ ସରଳ ଧ୍ୱନିରେ ଶ୍ରବଣ ମୋହିବ
ଅର୍ଥୀଜନ ପ୍ରକରକୁ ଆନନ୍ଦ କରିବ ହେ ।
ଡରଳରେ ସାବର୍ଣ୍ଣ୍ୟ ଯା ବ୍ୟାକରଣେ ଲିହି
ସୁଚିତ୍ତେ କରଇ ଏହି ଗୀତ ହିତପାଇଁ ଯେ ।"

ଏହି କାବ୍ୟରେ ଶ୍ଳେଷ, ଅନୁପ୍ରାସ, ଯମକ, ରୂପକ, ଦୀପକ, ବହିର୍ଲିପି, ଅନ୍ତର୍ଲିପି, ଉତ୍ପ୍ରେକ୍ଷା, ଭ୍ରାନ୍ତିମାନ, ପ୍ରତୀପ, ଆଶୟ ଇତ୍ୟାଦି ଅଳଙ୍କାରର ବହୁଳ ପ୍ରୟୋଗ ହୋଇଛି । କବି ପୁନଶ୍ଚ ସୂଚାଇଛନ୍ତି –

"ଏଠାରୁ ଏ ଛାନ୍ଦ ସମ୍ପୂର୍ଣ୍ଣ ଏତେ ଲକ୍ଷଣେ ଯୁକ୍ତ
ଶ୍ଳେଷରେ ଅଭଙ୍ଗ ସଭଙ୍ଗ ଭଙ୍ଗାଭଙ୍ଗ ହିଁ ବ୍ୟକ୍ତ ।
ଛ' ବିଧି ଯମକ ରୂପକ ଆଶୟରେ ଦୀପକ
ବର୍ହିଲିପି ଅନ୍ତର୍ଲିପିକା ଘେନି କର୍ଣ୍ଣରୋଚକ ।" (ଷଷ୍ଠ ଛାନ୍ଦ)

ଲାବଣ୍ୟବତୀ କାବ୍ୟର ପ୍ରଥମ ଛାନ୍ଦର ରାଗ ହେଉଛି ନଳିନୀଗୌଡ଼ା । ଏହାକୁ 'ରାମବିଭା' ପ୍ରଥମଛାନ୍ଦ ବାଣୀରେ ଗାଇବାକୁ କୁହାଯାଇଛି । ପଞ୍ଚମ ଛାନ୍ଦର ରାଗ ହେଉଛି ବସନ୍ତ ଏବଂ ଏହାକୁ 'ମଧୁପଚଉତିଶା' ବାଣୀରେ ଗାଇବାକୁ କୁହାଯାଇଛି । ଷଷ୍ଠ ଛାନ୍ଦର ରାଗ ହେଉଛି ରାମକେରୀ ଏବଂ ଏହାକୁ ଯୋଗୀସମାଦି ବାଣୀରେ ଗାଇବାକୁ ସୂଚନା ରହିଛି । ଏହିପରି ଭାବରେ ଲାବଣ୍ୟବତୀ କାବ୍ୟରେ କେତେଗୋଟି ଛାନ୍ଦର ରାଗ ଓ ବାଣୀର ସୂଚନା ପ୍ରଦାନ କରାଯାଇଛି ।

ସପ୍ତମ ଛାନ୍ଦ – ରାଗ ଭୂପାଳ । ଚଣ୍ଡକବାଣୀରେ ଗାଇବ
ଅଷ୍ଟମ ଛାନ୍ଦ – ରାଗ ମଙ୍ଗଳଗୁଜ୍ଜରୀ । ବାଣୀ ସଙ୍ଗମତିଆରି
ଦଶମ ଛାନ୍ଦ – ରାଗ ଦେଶାକ୍ଷ । ସଜନୀଚଉତିଶା ବାଣୀ

ଏକାଦଶ ଛାନ୍ଦ – ରାଗ ରେଖ୍ତି । ସପନଚେତିଆ ବାଣୀ
ଦ୍ୱାଦଶ ଛାନ୍ଦ – ରାଗ କଉଶିକ । କୁମୁଦକାନ୍ତ ଚଉତିଶା ବାଣୀ
ତ୍ରୟୋଦଶ ଛାନ୍ଦ – ରାଗ କଉଶିକ । ମୁନିବରବାଣୀରେ ଗାଇବ
ଚତୁର୍ଦ୍ଦଶ ଛାନ୍ଦ – ରାଗ କଳହଂସ କେଦାର । ମଥୁରାବିଜୟ ବାଣୀ
ପଞ୍ଚଦଶ ଛାନ୍ଦ – ରାଗ ବସନ୍ତଭୈରବ । ଉଷା ଦ୍ୱାଦଶ ଛାନ୍ଦ ବାଣୀ ବା କଳଶାବାଣୀ
ଷୋଡ଼ଶ ଛାନ୍ଦ – ରାଗ ଗୁଜ୍ଜରୀ । ଚନ୍ଦ୍ରାବତୀ ସ୍ୱୟମ୍ବରବାଣୀ ବା ଭାଗବତ ବାଣୀ
ସପ୍ତଦଶ ଛାନ୍ଦ – ରାଗ ଶଙ୍କରାଭରଣ । ସୀତାହରଣ ଚଉତିଶା ବାଣୀ
ଅଷ୍ଟାଦଶ ଛାନ୍ଦ – ରାଗ ମାଳବ । ରୋତାବାଣୀ
ବିଂଶତି ଛାନ୍ଦ – ରାଗ ଚିନ୍ତାଭୈରବ । ଇଚ୍ଛାବତୀ ବାଣୀ
ତ୍ରୟୋବିଂଶ ଛାନ୍ଦ – ରାଗ କଲ୍ୟାଣ ଆହାରୀ । 'ତୋ ନାଥ ଏଇକ୍ଷଣି ଥିଲା ପଲଙ୍କେ' ବାଣୀ
ଊନତ୍ରିଂଶ ଛାନ୍ଦ – ରାଗ ନଳିନୀଗୌଡ଼ା । ତାଡ଼କାସଂହାରି ରାମଏ ବାଣୀ
ତ୍ରିଂଶ ଛାନ୍ଦ – ରାଗ ମଙ୍ଗଳଗୁଜ୍ଜରୀ । ଜଗନ୍ନାଥନାମ ଦଶଦିଗକୁ ମଙ୍ଗଳ ବାଣୀ
ଅଷ୍ଟତ୍ରିଂଶ ଛାନ୍ଦ – ରାଗ ପଞ୍ଚମବରାଡ଼ି । ଗୋପୀ ଜୀବନବାଣୀରେ ଗାଇବ ।
ଅଷ୍ଟ ଚତ୍ୱାରିଂଶ ଛାନ୍ଦ – ରାଗ ମଙ୍ଗଳ । ମଣୋହିଭିଆଇ ବାଣୀରେ ଗାଇବ ।

ପ୍ରଫେସର ବୃନ୍ଦାବନ ଚନ୍ଦ୍ର ଆଚାର୍ଯ୍ୟଙ୍କ ମତରେ 'ଲାବଣ୍ୟବତୀ' ଭାରବୀଙ୍କ କିରାତାର୍ଜୁନୀୟ ଶୈଳୀରେ ରଚିତ ହୋଇଛି । ସରସ ଓ ମଧୁର ଶବ୍ଦସଂଯୋଜନା, ବିଭିନ୍ନ ଅଳଙ୍କାରର ପ୍ରୟୋଗ, ସାଙ୍ଗୀତିକ ଆବେଦନ, ଶୃଙ୍ଗାର ଭାବନା, କଳ୍ପନା – ବିଳାସ ଇତ୍ୟାଦି 'ଲାବଣ୍ୟବତୀ' କାବ୍ୟକୁ ଚିରନ୍ତନତ୍ୱ ପ୍ରଦାନ କରିଛି । 'ଲାବଣ୍ୟବତୀ'ର ସୃଷ୍ଟିକର୍ମ ସମ୍ପର୍କରେ ଉପେନ୍ଦ୍ର ଲେଖିଛନ୍ତି –

"ଦୃଷ୍ଟି ସୃଷ୍ଟିରେ ହୋଇଛି ବିଚିତ୍ର । ରସିକ ଚିତ୍ତ ମୋହନ ମନ୍ତ୍ର ।
ଖଳ ଗର୍ବତୃଣ ଦାବ ଦହନ । ପଥିକ ମୂର୍ଖ ଅଗମ୍ୟ ବନ ।
ଧନୀ ବଣିକ ପସରା ସମାନ । ବିବିଧରସ ଦ୍ରବ୍ୟରେ ପୂର୍ଣ୍ଣ ।
ଉପଇନ୍ଦ୍ର ଭଞ୍ଜ ମନ କୁମୁଦ । ବିଚିତ୍ରକର୍ମା ଶ୍ରୀ ରାମଚନ୍ଦ୍ର ।
ରଜନୀ ଦିବସେ ବିକାଶ କରି । ଅଧିକ ପଦ ଏଣୁ ବିହରି ।
ପ୍ରବନ୍ଧ ଦୁଇ ସହସ୍ର ତିନିଶ । ଷାଠିଏ ଏକ ପଦରେ ଶେଷ ।"

(୪୮ଶ ଛାନ୍ଦ)

'ଲାବଣ୍ୟବତୀ' ଏକ କାଳଜୟୀ ରଚନା । ଏହା ଯୁଗେ ଯୁଗେ କାବ୍ୟାମୋଦୀ ବିଦଗ୍ଧ ବିଦ୍ୱାନମାନଙ୍କୁ ଅପୂର୍ବ କାବ୍ୟରସରେ ଆମୋଦିତ କରିଆସିଛି । ୧୮୭୨ ମସିହାରେ ଏହା ପ୍ରଥମେ ପ୍ରକାଶିତ ହୋଇଥିଲା । ୧୯୪୪ ମସିହାରେ ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ଦ୍ୱାରା ଏହା ପୁନଃ ପ୍ରକାଶିତ ହୋଇଥିଲା ।

## କୋଟିବ୍ରହ୍ମାଣ୍ଡ ସୁନ୍ଦରୀ :

କବି ଲେଖିଛନ୍ତି –

"ଛାନ୍ଦ ଗୋଟି ତାରା ଚନ୍ଦ୍ରମାପରି
ଯା ନାମ କୋଟି ବ୍ରହ୍ମାଣ୍ଡସୁନ୍ଦରୀ ।"

ପଞ୍ଚତିରିଶ ଛାନ୍ଦବିଶିଷ୍ଟ ଏହି କାଳ୍ପନିକ କାବ୍ୟଟି ଭଞ୍ଜ-ପ୍ରତିଭାର ସାର୍ଥକ ନିଦର୍ଶନ । ରସିକ ପାଠକମାନଙ୍କ ସକାଶେ ଏହି କାବ୍ୟଟିକୁ ଜାଇଫୁଲ ସଦୃଶ ରଚନା କରିବାରେ କବିଙ୍କର ଚିନ୍ତାମାନସ ଯଥେଷ୍ଟ ଯତ୍ନଶୀଳ ପରିମନେ ହୁଏ । କବି ସ୍ୱୟଂ ଘୋଷଣା କରିଛନ୍ତି –

"ରଚିବି କୋଟିବ୍ରହ୍ମାଣ୍ଡ ସୁନ୍ଦରୀ ଚରିତ
ସୁଜାତି ସୁମନା ପରି ହୋଇବ ଏ ଗୀତ ହେ ।
ସୁରଭିରେ ମୋହିତ ମାନସ ହେବେ ଦିବ୍ୟେ
ଗୁଣବନ୍ତେ ହୃଦେ ମାଳା କରିଣ ଧରିବେ ହେ ।
ରସିକ ଭ୍ରମରେ ହେବେ ରସ ଘେନି ବଶ
ନିର୍ଗୁଣେ ଘେନିଲେ ନ ଘେନିଲେ ଅଛି କିସ ହେ ।"

(ପ୍ରଥମ ଛାନ୍ଦ)

'କୋଟିବ୍ରହ୍ମାଣ୍ଡସୁନ୍ଦରୀ' କାବ୍ୟକୁ କବି ଶ୍ରୀହର୍ଷ କବିଙ୍କର ନୈଷଧଚରିତ ଆଦର୍ଶରେ ରଚନା କରିଛନ୍ତି । ନୈଷଧ କାବ୍ୟର ପ୍ରଧାନ ଆବେଦନ ହେଉଛି ପଦର ଲାଳିତ୍ୟ । 'କୋଟିବ୍ରହ୍ମାଣ୍ଡସୁନ୍ଦରୀ' କବ୍ୟରେ କବି ନୈଷଧ କାବ୍ୟର ଏହି ଗୁଣକୁ ଗ୍ରହଣ କରିଥିବାରୁ ଲେଖିଛନ୍ତି –

"ଏତ ପରାକୃତ କାବ୍ୟ ଛାନ୍ଦପ୍ରାନ୍ତ ସତ
ଦୃଷ୍ଟ ଦୃଷ୍ଟାନ୍ତର ଏଥି ଅଛି ବିଶେଷତ
ଘେନ ନୈଷଧ ପରାୟେ
ଉପଇନ୍ଦ୍ର କହେ ବୁଧ ପ୍ରମୋଦ କରାଏ ।" (୧୧ଶ ଛାନ୍ଦ)

କାବ୍ୟଟିକୁ ଉପେନ୍ଦ୍ର ଅର୍ଥୀଜନଙ୍କ ମାନସରଞ୍ଜନ ପାଇଁ ରଚନା କରିଛନ୍ତି । ଏହି କାବ୍ୟଟିରେ ମଧୁର ରସ ପ୍ରଚ୍ଛନ୍ନ ଭାବରେ ରହିଛି । ତେଣୁ କବି ଚଉତିରିଶି ଛାନ୍ଦରେ ଲେଖିଛନ୍ତି –

"ଏ ଛାନ୍ଦ ଇକ୍ଷୁ ଲତିକା ରସ ଆସ୍ୱାଦନେ
ଅର୍ଥୀହେବ ଏଥି ଜ୍ଞାନ ରଦଥିଲା ଜନେ ।"

କବି ଖଳ, ଗର୍ବୀ ଓ ନିନ୍ଦୁକ ଲୋକମାନଙ୍କୁ ଏହି କାବ୍ୟରେ ନିନ୍ଦା କରିଛନ୍ତି । ବିଜ୍ଞ ଓ ଅବିଜ୍ଞ ଲୋକମାନଙ୍କ ଉଦ୍ଦେଶ୍ୟରେ କବି ଲେଖିଛନ୍ତି –

"ବିଜ୍ଞ ସୁଜନ ରଞ୍ଜନ ପଦମାନ ମାନସେ କରିବ ବିଚାର
ଅଜ୍ଞ ବ୍ୟୁତ୍ପତ୍ତି – ଉତ୍ପତ୍ତି – ନରପନ୍ତି ବାନର ମୁଷ୍ଟି ପରକାର
ଛାଡ଼ନ୍ତି । ନାହିଁ ଆମ୍ଭେ ବଡ଼ ଏ ଗର୍ବ
ଏ ଗୀତ ସବିତା ପଦ ପ୍ରଭାସରେ ତାମସ ତମସ ନାଶିବ ।"

(୨୮ଶ ଛାନ୍ଦ)

କବି ଉପେନ୍ଦ୍ର ଉଲ୍ଲେଖ କରିଛନ୍ତି ଯେ, ଏହି କାବ୍ୟର ଛାନ୍ଦଗୁଡ଼ିକୁ ଗଙ୍ଗାଯମୁନାର ସଙ୍ଗମ ପରି ବର୍ଣ୍ଣଭଙ୍ଗୀରୁ ଜାଣି ଅର୍ଥ କରିବାକୁ ପଡ଼ିବ । ତେଣୁ କବିଙ୍କର ବ୍ୟକ୍ତବାଣୀ ହେଉଛି –

"ସିଦ୍ଧି କରି ଯେ କାବ୍ୟ ଅର୍ଥ ସେ ଯୋଡ଼ି
ଅଛିଦ୍ର ହାସେ ଆଦ୍ୟରସରେ ଜଡ଼ି ଯେ ।
କହେ ଉପଇନ୍ଦ୍ର ବର୍ଣ୍ଣଭଙ୍ଗୀରୁ ବାରି
ଛାନ୍ଦ ଗଙ୍ଗା ଯମୁନା ସଙ୍ଗମ ପରି ଯେ ।" (ବିଂଶଛାନ୍ଦ)

କବି ଉପେନ୍ଦ୍ର ତାଙ୍କର ଦୁର୍ଲ୍ଲଭ କବିତ୍ୱ ସମ୍ପର୍କରେ ବକ୍ତବ୍ୟ ରଖିଛନ୍ତି ଯେ, କ୍ଷୀରସାଗର ମନ୍ଥନରୁ ସୁଧାଜାତ ହେଲାପରି ସ୍ୱୟଂବିଷ୍ଣୁ ଶ୍ରୀରାମଚନ୍ଦ୍ର କବିଙ୍କ ଗୀରାର୍ଣ୍ଣବରୁ ରସଗୀତ ଜାତ କରିଛନ୍ତି । ଏହି ରସଗୀତ ବୁଧଜନ ରଞ୍ଜିତ । କିନ୍ତୁ ଏହାକୁ ଯଦି ଖଳ ଲୋକେ ଗ୍ରାସ କରିବେ, ତେବେ ରାହୁର ଶିରଛେଦନ ହେଲାପରି ସେମାନଙ୍କର ମଧ୍ୟ ସେହି ଦଶା ଘଟିବ । ଉପେନ୍ଦ୍ରଙ୍କ ଭାଷାରେ –

"କହେ ଉପଇନ୍ଦ୍ର ମୋ ପ୍ରଭୁ ଶ୍ରୀରାମ ବୈକୁଣ୍ଠନାଥ ସାକ୍ଷାତ
ଜାତ କଲେ କ୍ଷୀରାର୍ଣ୍ଣବୁଁ ସୁଧାମୋର ଗୀରାର୍ଣ୍ଣବୁଁ ରସଗୀତ ।
ସେ ସତ, ସେ ବିବୁଧେ ଏ ବୁଧ ରଞ୍ଜିତ
ଦୈତ୍ୟଖଳରେ ଅଧରକ୍ଷିତ । ଯେ ଗ୍ରାସିବ ହେବ ରାହୁ ମତ ।"

(ଷୋଡ଼ଶଛାନ୍ଦ)

'କୋଟିବ୍ରହ୍ମାଣ୍ଡସୁନ୍ଦରୀ' କାବ୍ୟର କଥାବସ୍ତୁ କାଳ୍ପନିକ । ଚମ୍ପାନଗରୀର ରାଜା ବିଶ୍ୱାନନ୍ଦ ଓ ତାଙ୍କର ପଟ୍ଟମହିଷୀ ହେଉଛନ୍ତି ବିଚିତ୍ରକଳା । ପଟ୍ଟମହିଷୀଙ୍କ ଗର୍ଭରୁ କନ୍ୟାସନ୍ତାନ ଜାତ ନ ହେବାରୁ ମନ୍ତ୍ରୀ ବୃଦ୍ଧିସାଗର ପରାମର୍ଶରେ ରାଜା ବଦ୍ରିକାଶ୍ରମ ଗମନ କଲେ । ସେ ଗଙ୍ଗାନଦୀ କୂଳରେ ବ୍ରହ୍ମାଙ୍କ ବାହନ ହଂସକୁ ଜଣେ ରାକ୍ଷସର କବଳରୁ ରକ୍ଷାକଲେ । ଫଳରେ ବ୍ରହ୍ମାଙ୍କ ପ୍ରସାଦରୁ ରାଜା ରତିମର୍ଦ୍ଦା ନାମକ ଦିବ୍ୟ ସ୍ତ୍ରୀ ପ୍ରାପ୍ତ ହେଲେ । ତାଙ୍କଠାରୁ କୋଟିବ୍ରହ୍ମାଣ୍ଡସୁନ୍ଦରୀ ଜନ୍ମ ନେଲା । ରତିମର୍ଦ୍ଦା ଅନ୍ତର୍ଦ୍ଧାନ ହେଲେ । ତେଣୁ ସଖୀମାନେ କୋଟିବ୍ରହ୍ମାଣ୍ଡସୁନ୍ଦରୀଙ୍କୁ ପାଳନ କଲେ । କୋଟିବ୍ରହ୍ମାଣ୍ଡସୁନ୍ଦରୀର ଯୌବନ ପ୍ରାପ୍ତି ପରେ ହଂସୀର ଦୁହିତା କାଦମ୍ବିନୀ, ଶଚିଙ୍କ କନ୍ୟା ଶତୀକଳା ଓ ବାଣୀଙ୍କ କନ୍ୟା ବାଣିଜା ତାଙ୍କର ପରିଚର୍ଯ୍ୟା କଲେ ।

ଅପରପକ୍ଷରେ ପୁଷ୍ପପୁରର ରାଜା ଦୀପ୍ତିସାଗରଙ୍କ ପୁତ୍ର ପୁଷ୍ପକେତୁ ଏ କାବ୍ୟର ନାୟକ । ସେ ଅତ୍ୟନ୍ତ ରୂପବାନ ଓ ଗୁଣବାନ ରାଜକୁମାର ଥିଲେ । କବି ଉପେନ୍ଦ୍ର 'ଲାବଣ୍ୟବତୀ' କାବ୍ୟର ନାୟକ ଚନ୍ଦ୍ରଭାନୁଙ୍କ ପରି ପୁଷ୍ପକେତୁଙ୍କୁ ସର୍ବଗୁଣସମ୍ପନ୍ନ ନାୟକ ଭାବରେ ବର୍ଣ୍ଣନା କରିଛନ୍ତି –

"ପୁଂସ ଲକ୍ଷଣେ ମକର — କେତୁରେ ବହିଛି ମାର
ପୁଷ୍ପକେତୁ ନାମ ସିଦ୍ଧ — ସେ ପୁଷ୍ପାୟୁଧ ଯେ ।
ପୁଣି ଧନୁର୍ଦ୍ଧର ପଣ — ଲକ୍ଷେ ଭାବିଲେ ଲକ୍ଷ୍ମଣ
ହୋଇଥିବ ଇନ୍ଦ୍ରଜିତ — ଅବଶ୍ୟ ଜାତ ଯେ ।
କର୍ତ୍ତାପରି ବ୍ୟାକରଣେ — ପାଣିନୀୟ ମନେ ଗୁଣେ
କରିବା ଏହା ସଙ୍ଗତି — ହେବ ବ୍ୟୁତ୍ପତ୍ତି ଯେ ।
ମୀମାଂସା ବେଦ ବେଦାନ୍ତେ — ଟୀକାପୁସ୍ତକ ଏ ସତେ
ଜୈମିନି ବିଖନ ବ୍ୟାସ — ପ୍ରଶଂସି ତୋଷ ସେ ।
କଲ୍ୟାଣେ କର ଅଞ୍ଜଳି — କରେ ପୁଣି ପତଞ୍ଜଳି
ବଇଶେଷିକ ସାଂଖ୍ୟରେ — ସାକ୍ଷୀ ପ୍ରକାରେ ଯେ ।
ବେନିରୂପେ ନ୍ୟାୟବନ୍ତ — ଏହି ରୂପେ ଜାଣେ ମନ୍ତ
ଅଳଙ୍କାର ଅଳଙ୍କାର — ଦୁଇ ପ୍ରକାର ସେ ।"

(୪ର୍ଥ ଛାନ୍ଦ)

ରାଜପୁରୋହିତଙ୍କ ପୁତ୍ର ବିଦ୍ୟାନିଧି ଓ ମନ୍ତ୍ରୀଙ୍କ ପୁତ୍ର ଯଶୋବନ୍ତ ତାଙ୍କର ବନ୍ଧୁଥିଲେ । ବୀଣାବାଦନରେ ନାରଦ ସନ୍ତୁଷ୍ଟ ହୋଇ ପୁଷ୍ପକେତୁଙ୍କୁ ଦିବ୍ୟକନ୍ୟା ପ୍ରାପ୍ତି ହେବାର ବର ପ୍ରଦାନ କରିଥିଲେ । କୁମାରୀମାଙ୍ଗଲ୍ୟ ଓ କୁମାର ଚିତ୍ରପୁଂସ ସାହାଯ୍ୟରେ ପରସ୍ପରକୁ ମାୟାରେ ଦର୍ଶନ କଲେ । କ୍ରମେ ଉଭୟଙ୍କର ଅନୁରାଗ ବୃଦ୍ଧି ପାଇଲା । ମାଳିନୀ ସାହାଯ୍ୟରେ ନାୟକ ଓ ନାୟିକାଙ୍କ ମଧ୍ୟରେ ପ୍ରେମପତ୍ର ଆଦାନପ୍ରଦାନ ହେଲା । ବିଶ୍ୱାନନ୍ଦ ଓ ବୁଦ୍ଧିସାଗର ରାଜଯେମାଙ୍କ ବିବାହ ପ୍ରସଙ୍ଗ ଆଲୋଚନା କଲାବେଳେ ନାରଦ ସେଠାରେ ପହଞ୍ଚିଲେ । ନାରଦଙ୍କ ପରାମର୍ଶରେ ଭ୍ରମଣରତ କୁରଙ୍ଗର ପୁଚ୍ଛକର୍ତ୍ତନ ବିବାହର ପଣ ସ୍ୱରୂପ ରଖାଗଲା । ରାଜକୁମାର ପୁଷ୍ପକେତୁ ପଣ ଅନୁଯାୟୀ କୁରଙ୍ଗର ପୁଚ୍ଛ କର୍ତ୍ତନ କରି କୋଟିବ୍ରହ୍ମାଣ୍ଡସୁନ୍ଦରୀଙ୍କୁ ବିବାହ କଲେ ।

ପୁଷ୍ପକେତୁ ଓ କୋଟିବ୍ରହ୍ମାଣ୍ଡସୁନ୍ଦରୀରର ମିଳନ ବର୍ଣ୍ଣନାରେ କବିଙ୍କର ବିଦଗ୍ଧତାର ପରିଚୟ ମିଳିଥାଏ । ଯଥା –

"କମଳିନୀ ବାସ ତହିଁ ହେଲା ଅନ୍ତରିତ
ଭୃଙ୍ଗେ କୋଳ ଆଚରଣ ହୋଇଲା ତ୍ୱରିତ ଯେ ।
ଉନ୍ମତ୍ତ ବିଶେଷ ପ୍ରସନ୍ନତା ଭଜେ ଯହୁଁ
କପୋତ କଣ୍ଠରୁ ଜାତ ହେଲା ହୁଁ ହୁଁ ହୁଁ ହୁଁ ଯେ ।"

(ଚଉତ୍ରିଂଶ ଛାନ୍ଦ)

ନାୟିକାର ନାମାନୁସାରେ କାବ୍ୟଟିର ନାମକରଣ ହୋଇଛି 'କୋଟିବ୍ରହ୍ମାଣ୍ଡସୁନ୍ଦରୀ' । କାବ୍ୟରେ ବିଭିନ୍ନ ଶବ୍ଦାଳଙ୍କାର ଓ ଅର୍ଥାଳଙ୍କାରର ପ୍ରୟୋଗ ରହିଛି । ତେଣୁ କାବ୍ୟଟି ବୁଧବୋଧକ ହୋଇପାରିଛି । ପଣ୍ଡିତମାନଙ୍କୁ ଏହି କାବ୍ୟଟିର ବିଚାର ବିବେଚନା କରିବା ପାଇଁ କବି ଆହ୍ୱାନ ଦେଇଛନ୍ତି –

"ନାନା ଶବଦରେ ଯେ ବିଚକ୍ଷଣ
ଯେହୁ ଜାଣେ ଅଳଙ୍କାର ଲକ୍ଷଣ
ସେହି କରୁ ଏ ଛାନ୍ଦ ବିବେଚନା ।" (ଦ୍ୱିତୀୟ ଛାନ୍ଦ)

କବି ପୁନଶ୍ଚ କହିଛନ୍ତି –

"ଯେ କବି ଅର୍ଥୀ ପଣ୍ଡିତ ସୁହୃଦ
ରସିକ ଯେହି ଘେନି ମୋ ଏ ଛାନ୍ଦ ।

ବ୍ୟସ୍ତ ଅଳଙ୍କାର । ମଣ୍ଡନ ବିଧି ନିର୍ଦ୍ଦୋଷ ବିଚାର ।
ଉତ୍‌ପ୍ରେକ୍ଷା ଉପମା ରୂପକ ତିନି
ବକ୍ରୋକ୍ତି ଶ୍ଳେଷ ଅଭିପ୍ରାୟ ଘେନି
ଦତ୍ତଚ୍ୟୁତାକ୍ଷର ଉଦୟ କାହିଁ
ବୁଝ ସଂଖ୍ୟାବାନ ଆୟତ୍ତ ନାହିଁ ।" (ଦ୍ୱାଦଶଛାନ୍ଦ)

କବି ଉପେନ୍ଦ୍ର ପ୍ରସଙ୍ଗକ୍ରମେ କୁମାରୀ ନିକଟରେ କୁମାରର ସ୍ତବ ପାଠ କରିବା ପରିପ୍ରେକ୍ଷୀରେ କୁମାରୀଠାରେ ନର୍ମଦା, ଗଙ୍ଗା, ଯମୁନା, ସରସ୍ୱତୀ, ଚିତ୍ରୋତ୍ପଳା, ରେବା ଓ ବାହୁଦା – ଏହି ସାତଗୋଟି ନଦୀର ସାମ୍ୟ ରହିଥିବା ବର୍ଣ୍ଣନା କରିଛନ୍ତି । ଏଥିରୁ ଉପେନ୍ଦ୍ରଙ୍କର ଭୌଗୋଳିକ ଜ୍ଞାନ ତଥା କଳ୍ପନାବିଳାସିତାର ପରିଚୟ ମିଳିଥାଏ –

"କରି ଯାଉଅଛି ସେ ନାଗର ଏହି ସ୍ତବ
ହେ ବାଳେ ! ନର୍ମଦା ସୁରତରଙ୍ଗିଣୀ ଭାବ ଯେ ।
କାଳିନ୍ଦୀ ରୁଚିର କୃଷ୍ଣବେଣୀ ପୁଣି ଲକ୍ଷ୍ୟ
ଚନ୍ଦ୍ରଭାଗାଳିକ ଶୋଭୀ ଚିତ୍ର ଉପଳାକ୍ଷ୍ୟ ଯ ।
ହୋଇଥିବ ଯୁକ୍ତରସ ସରସ୍ୱତୀ ସଦା
କରତ ପବିତ୍ର ହୋଇରେ ବାରେ ବାହୁଦା ଯେ ।"

'କୋଟିବ୍ରହ୍ମାଣ୍ଡସୁନ୍ଦରୀ' କାବ୍ୟରେ ଚମ୍ପା ନଗର ଓ ପୁଷ୍ପପୁର ନଗ୍ରର ବର୍ଣ୍ଣନା ରହିଛି ।

"ରାଜଧାନୀ ପୁଷ୍ପପୁର । ସହଜେ କୁନ୍ତଳ ପର
ରେଳକାଞ୍ଚୀ ତାର ତଳ । ଏଡ଼େ ମଞ୍ଜୁଳ ସେ ।
ବିଦଗ୍ଧ ରାକ୍ଷସପୁରୀ । ଅସମାନ ମାନୁ କରି
ନଗରମାନଙ୍କ ମୋକ୍ଷ । ତହିଁ କି ଲକ୍ଷ ଯେ ।
ଛଦ୍ମ ନୁହଇ ଏ ପୁଣ । ସଦ୍ମ ରତନେ ନିର୍ମାଣ
ପଦ୍ମ ସକାଶରୁ ଜାଣି । ଦିବା ରଜନୀ ଯେ ।
ନାନାରତ୍ନ ପ୍ରଭା ଧରି । ନଭ ଚିତ୍ରବାଡ଼ ସରି
ଦେଖାଇବେ କେଉଁ ଜ୍ୟୋତି । ତାରକାପନ୍ତି ଯେ ।
ପ୍ରଭାହୀନ ପ୍ରଭାକର । ହିଙ୍ଗୁଳୀ କୁତୁକୀ ସାର
ଉଡ଼ାଇ କାକତ ଚକୀ । ଏମନ୍ତ ତର୍କି ଯେ ।

ଜଗତୀ ବିଳାସୀ ରାମା । ସନ୍ନିଧେ ଯାଉ ଚନ୍ଦ୍ରମା
ଭାବନ୍ତି ସେ ଆଦରଶ । ହୀନ ପାରସ ଯେ ।
ତୋରଣା ବିବିଧ ରତ୍ନେ । ପ୍ରାସାଦ ଖଞ୍ଜିତ ଯତ୍ନେ
ବଲ୍ମୀକରେ ଇନ୍ଦ୍ରରୂପ । ଜାତସ୍ୱରୂପ ସେ ।" (ଚତୁର୍ଥ ଛାନ୍ଦ)

ପ୍ରସଙ୍ଗକ୍ରମେ ଏଥିରେ ବିଭିନ୍ନ ଋତୁର ବର୍ଣ୍ଣନା ରହିଛି । କବିସମ୍ରାଟ ବିଭିନ୍ନ ସାମାଜିକ ବିଧିବିଧାନ ନିଖୁଣ ଭାବରେ ବର୍ଣ୍ଣନା କରିଛନ୍ତି । ବିବାହକାଳୀନ ବିଧିବିଧାନକୁ କବି ମଧ ଅତ୍ୟନ୍ତ ସଫଳତାର ସହ ଉଲ୍ଲେଖ କରିଛନ୍ତି । କବି ହାଟବାଣିଜ୍ୟର ବର୍ଣ୍ଣନାରେ ବେଶ୍ ପାରଦର୍ଶିତା ପ୍ରଦର୍ଶନ କରିଛନ୍ତି । ଶବର ଓ ସେମାନଙ୍କର ଜୀବନଚର୍ଯ୍ୟାର ବର୍ଣ୍ଣନା ଏଥିରେ ରହିଛି । ସମାଜରେ କେଳାକେଳୁଣି ନାଚ, ମଲ୍ଲଯୁଦ୍ଧ, ପଶାଖେଳ ଇତ୍ୟାଦି ଆମୋଦକର ବ୍ୟବସ୍ଥା ଥିଲା ବୋଲି କବି ବର୍ଣ୍ଣନା କରିଛନ୍ତି ।

'କୋଟିବ୍ରହ୍ମାଣ୍ଡସୁନ୍ଦରୀ' କାବ୍ୟରେ କବି ଶ୍ରୀଜଗନ୍ନାଥଙ୍କ ମହିମା ଓ କ୍ଷେତ୍ରମାହାତ୍ମ୍ୟ ବର୍ଣ୍ଣନା କରିଛନ୍ତି । ଭାରତବର୍ଷରେ ଶ୍ରୀକ୍ଷେତ୍ର ପୁରୁଷୋତ୍ତମ ପୁଣ୍ୟଧାମ ରୂପେ ସୁବିଦିତ । ସ୍ୱୟଂ ନାରାୟଣ ପୁରୁଷୋତ୍ତମ ଏହି କ୍ଷେତ୍ରରେ ବିରାଜିତ ହୋଇଥିବାରୁ ଏହାର ନାମ ପୁରୁଷୋତ୍ତମକ୍ଷେତ୍ର । ଏହି କ୍ଷେତ୍ରରେ ସାମୀପ୍ୟ, ସାଲୋକ୍ୟ, ସାଯୁଜ୍ୟ ଓ ସାରୋପ୍ୟ – ଏହି ଚତୁର୍ବିଧ ମୁକ୍ତି ମିଳିଥାଏ । ଭୂଷଣ୍ଡ କାକ ରୋହିଣୀ କୁଣ୍ଡରେ ଚତୁର୍ଭୁଜ ହୋଇ ବସି ନିରନ୍ତର ଏହାର ସାକ୍ଷ୍ୟ ଦେଉଅଛି । କବିଙ୍କ ଭାଷାରେ –

"ଶୁଣ କୋବିଦେ ଭରତ ଖଣ୍ଡେ ପୁଣ୍ୟଧାମ
ଯେଣୁ ନାରାୟଣ ଦେହୀ ତେଣୁ ସେହି ନାମ ହେ ।
ଗିର୍ବାଣ ମତେ ନିର୍ବାଣ ସାରୂପ୍ୟକୁ ଦେଇ
ସାକ୍ଷୀପକ୍ଷୀ କରଟ ପ୍ରତିମା ରୂପେ ଥାଇ ଯେ ।
ଯେ ବ୍ରହ୍ମ ହତ୍ୟାପାତକ ନିପାତକ ମହୀ
କପାଳମୋଚନ ତ୍ରିଲୋଚନ ସାକ୍ଷୀ ଯହିଁ ଯେ ।
ଆସି କାଶୀଶ୍ୱର ବାସକଲେ ଏହା ଜାଣି
ଅନ୍ୟକ୍ଷେତ୍ର ସମସ୍ତଙ୍କ ଏ ମସ୍ତକମଣି ହେ ।

ଏଣୁ କ୍ଷେତ୍ର ନରେନ୍ଦ୍ର ପଦତ ସମ୍ଭାବିତ
ବିନାଶେ ଭୁଜଙ୍ଗ ଦୋଷ ତାକୁ କେତେ ମାତ୍ର ହେ ।
ଅବିଦ୍ୟା ବିଷମ ଆଶୀବିଷ ଘାତୀ ଜନେ
ଜ୍ଞାନାଜ୍ଞାନେ ପରାଧୀନେ ସେ ସ୍ଥାନ ଗମନେ ହେ ।
ଶ୍ରୀ ମହାପ୍ରସାଦ ଗଦପଦ ଘଣ୍ଟ ଘୋଷ
ଭକ୍ଷଣେ ଶ୍ରବଣେ ଯେ କିଲ୍‌ବିଷ ବିଷ ନାଶହେ ।" (ପ୍ରଥମ ଛାନ୍ଦ)

ପୁନଶ୍ଚ ବଡ଼ଠାକୁରଙ୍କର ବଡ଼ଦେଉଳର ପତିତପାବନ ପତାକା ସିନ୍ଧୁ ସମୀରଣର ହିଲ୍ଲୋଳରେ ଫର ଫର ଉଡ଼ି କହିଥାଏ ଯେ ଏ କ୍ଷେତ୍ରରେ ଯମର ଭୟ ନାହିଁ । ଯଜ୍ଞରେ ପଶୁବଧ କଲେ ପାପତାପ ନାଶ ଯାଇ ସୁକର୍ମର ଫଳ ମିଳିଥାଏ, କିନ୍ତୁ ଏହି କ୍ଷେତ୍ରରେ ଶାଖାରାଜ ନିଗମ କଳ୍ପତରୁ ମନୁଷ୍ୟର ସମସ୍ତ ପାପତାପ ନଷ୍ଟକରି ସୁଫଳ ପ୍ରଦାନ କରିଥାଏ । କମ୍ବୁକଟକର ଗଡ଼ଖାଇ ଭାବରେ ରହିଥିବା ତୀର୍ଥରାଜ ମହୋଦଧି ଗର୍ଜନ ଛଳରେ କହିଥାଏ ଯେ ଏଥିରେ ସ୍ନାନ କଲେ ପାପରାଶି ବିନାଶ ହୋଇଥାଏ । କବିଙ୍କ ଭାଷାରେ –

"ଉନ୍ନତ ପ୍ରାସାଦ ରାଜ ପତାକା ଉଡ଼ାଇ
ଏ ପ୍ରଦେଶେ ସମବର୍ତ୍ତୀ ପଣ ନାହିଁ ନାହିଁ ହେ
ବଟରାଜା ଶାଖା ଘେନି ନିଗମ ସାକ୍ଷାତ
ପାପ ତାପ ପଶୁ ନାଶ ସୁକର୍ମ ଉଦିତ ଯେ ।
ସେ ଦୁର୍ଗ ପରିଖା ତୀର୍ଥରାଜ ଗର୍ଜନରେ
କହେ ଅବଗାହେ ପାପବ୍ୟୂହ ଦହନରେ ହେ ।" (ପ୍ରଥମ ଛାନ୍ଦ)

ଦାରୁରୂପୀ ଶ୍ରୀଜଗନ୍ନାଥ ପତିତପାବନ । ପତିତଜନଙ୍କୁ ଉଦ୍ଧାର କରିବା ପାଇଁ ସେ ସ୍ନାନଯାତ୍ରା ଓ ଗୁଣ୍ଡିଚାଯାତ୍ରାରେ ବଡ଼ ଦେଉଳରୁ ବାହାରକୁ ବିଜେ ହୋଇଥାନ୍ତି । କବି କହିଛନ୍ତି –

"ସ୍ନାନ ଗୁଣ୍ଡିଚା ଏ ବେନି ସ୍ୱୟଂ ଲୀଳାଯାର
ପତିତପାବନ ଅର୍ଥେ ପ୍ରାସାଦୁ ବାହାର ହେ ।"

ଏହି କାବ୍ୟର ପ୍ରଥମ ଛାନ୍ଦରେ କବିସମ୍ରାଟ ଶ୍ରୀଜଗନ୍ନାଥଙ୍କର ପବିତ୍ର ସ୍ନାନଯାତ୍ରା ଉତ୍ସବକୁ ମନୋଜ୍ଞ ଭାବରେ ବର୍ଣ୍ଣନା କରିଛନ୍ତି । ମହାପ୍ରଭୁ ବଳଭଦ୍ର, ଦେବୀ ସୁଭଦ୍ରା ଓ ରାଜଧିରାଜେଶ୍ୱର ଶ୍ରୀଜଗନ୍ନାଥ ଏବଂ ଚକ୍ରରାଜ ସୁଦର୍ଶନଙ୍କର

ରନ୍‌ବେଦୀରୁ ସ୍ନାନ ମଣ୍ଡପକୁ ବିଜେ ହେବାର ଦୃଶ୍ୟକୁ କବି ଅତ୍ୟନ୍ତ ମନୋମୁଗ୍ଧକର ପରିପାଟୀରେ ବର୍ଣ୍ଣନା କରିଛନ୍ତି । ସ୍ନାନବେଦୀରେ ପ୍ରଭୁମାନଙ୍କର ବିଜେ ହେବା ପରବର୍ତ୍ତୀ ଦୃଶ୍ୟରାଜିକୁ କବି ନିମ୍ନଭାବରେ ବର୍ଣ୍ଣନା କରିଛନ୍ତି –

"ଏମନ୍ତେ ସ୍ନାନ ମଣ୍ଡପେ ସିଂହାସନ ପର
ବିଜେ ମହାପ୍ରଭୁ ଘେନି ଭଗ୍ନୀ ସହୋଦର ହେ ।
ନାଗନର କିନ୍ନର ଗନ୍ଧର୍ବ ଛନ୍ତି ଚାହିଁ
ଅନେକ କନକ ଘଟେ ପୂର୍ଣ୍ଣ କରି ତହିଁ ହେ ।
ଢ଼ାଳିଲେ ଭୂସୁରେ ନୀର ଶ୍ରୀମୁଖ ମଣ୍ଡଳେ
ଧାରାମାନ ପତନ ହୋଇଲା ମହୋଜ୍ଜ୍ୱଳେ ହେ ।
କି ମେରୁ ହୀରା ମାରାଗ – ହେମ ଶୃଙ୍ଗୁ ଖସି
ଜାହ୍ନବୀ ଯମୁନା ହରିତାଳ ଧାରା ଆସି ହେ ।
ଲେପନ ଚନ୍ଦନ ଖସି ଦିଶିଲା ଏମନ୍ତ
ସେ ତିନି ଶୃଙ୍ଗୁ କି ଜାତ ତରଳ ରଜତ ହେ ।
ଦେଖିଲା ଆଖିରେ ଦରିଦ୍ରତା ନ ରହିଲା
ମନ ହିଁ ଦୁଃସଖ ଦୁଃଖମାନ ଉପେକ୍ଷିଲା ହେ ।" (ପ୍ରଥମ ଛାନ୍ଦ)

କବି ଉପେନ୍ଦ୍ର ଦୁର୍ଲଭ କବିତ୍ୱର ଅଧିକାରୀ ନିଶ୍ଚୟ । ଏହା କେବଳ ଶ୍ରୀରଘୁନାଥଙ୍କ କୃପାରୁ ସମ୍ଭବ ବୋଲି କବି ପ୍ରତିପାଦନ କରିଛନ୍ତି –

(କ) "ବିଚିତ୍ରକର୍ମା ଶ୍ରୀରଘୁନାଥ
ତାଙ୍କ ଧାନରେ ଉପଇନ୍ଦ୍ର ବିଚିତ୍ର ଚରିତ ରଚନେ ସମର୍ଥ ।" (ଦଶମଛାନ୍ଦ)

(ଖ) "କହେ ଉପଇନ୍ଦ୍ର ଉତ୍ତମ କବି ପୁଞ୍ଜ
ଦୁର୍ଲଭ ମାର୍ଗେ ମୋ ସଞ୍ଚାର ସେ ।" (ତ୍ରୟୋଦଶ ଛାନ୍ଦ)

(ଗ) "ତରଣି କୁଳର ସାର । ଆଶ୍ରୟରୁ ନିରନ୍ତର
କହେ ଉପଇନ୍ଦ୍ର ଭଞ୍ଜ ମୁଁ ଲଭିଛି ଶବଦ ସମୁଦ୍ର ପାର ।" (ଚତୁର୍ଦ୍ଦଶ ଛାନ୍ଦ)

(ଘ) "ପୂର୍ବେ ବହିଥିଲେ ସ୍ୱଚ୍ଛମତ୍ସ୍ୟରୂପ ପୁଣି ରଘୁବଂଶେ ଜାତ
ଯହୁଁ ବଡ଼ ନାହିଁ ବ୍ରହ୍ମାଣ୍ଡେ ଏ ଘେନି ରାଘବ ନାମ ବିଦିତ
ସେ ପ୍ରଭୁ । ଚରଣେ ଶରଣ ପଶି ।
କବି ଉପଇନ୍ଦ୍ର ଭଞ୍ଜ ବୀରବର ସେ ଗୀତ ବିଧାନେ ରସି ।" (ତ୍ରିଂଶ ଛାନ୍ଦ)

ଉପର୍ଯ୍ୟୁକ୍ତ ପଂକ୍ତିମାନଙ୍କରୁ ପ୍ରତିପାଦିତ ହୁଏ ଯେ, କବି ଉପେନ୍ଦ୍ର ଏକାନ୍ତ ଭାବରେ ଶ୍ରୀରାମଚନ୍ଦ୍ରଙ୍କ ନିକଟରେ ନିଜକୁ ସମର୍ପଣ କରିଥିଲେ । ଏଥିରୁ ତାଙ୍କର ରାମଭକ୍ତିର ଅପୂର୍ବ ନିଦର୍ଶନ ପରିଚୟ ମିଳିଥାଏ ।

'କୋଟିବ୍ରହ୍ମାଣ୍ଡସୁନ୍ଦରୀ' କାବ୍ୟ ଭଞ୍ଜୀୟ କାବ୍ୟମାନସର ଏକ ରସାଳ, ମନୋଜ୍ଞ ଏବଂ ସୁମଧୁର କାବ୍ୟକୃତି । ଏହାର ଚିରନ୍ତନ ଆବେଦନ ରହିଛି । ଏହା ଯୁଗେ ଯୁଗେ କାବ୍ୟପ୍ରେମୀ ବିଦଗ୍ଧମଣ୍ଡଳୀଙ୍କୁ ଅପୂର୍ବ କାବ୍ୟରସରେ ଆମୋଦିତ କରି ଆସୁଛି ଓ ଆସୁଥିବ ମଧ୍ୟ । ଏଥିରେ ସନ୍ଦେହ ନାହିଁ ।

୧୮୮୮ ସାଲରେ ଭିକ୍ଟୋରିଆ ପ୍ରେସ୍‌ରୁ ଏହା ପ୍ରଥମେ ପ୍ରକାଶ ପାଇଥିଲା ।

## ସୁଭଦ୍ରା ପରିଣୟ :

ଏହି କାବ୍ୟଟି ସପ୍ତଦଶ ଛାନ୍ଦ ବିଶିଷ୍ଟ 'ସ' ଆଦ୍ୟ ଅକ୍ଷରରେ ରଚିତ ଏକ ଆଳଙ୍କାରିକ କୃତି । କବି ସ୍ୱୟଂ ଲେଖିଛନ୍ତି –

'ସାଦ୍ୟ ସୁଭଦ୍ରାସାର ।'

ଏହି କାବ୍ୟର ଛାନ୍ଦ ଗୁଡ଼ିକ ସାଦ୍ୟ ବର୍ଣ୍ଣରେ ଅର୍ଥାତ୍ 'ସ' ଆଦ୍ୟ ନିୟମରେ ରଚିତ । ପୁନଶ୍ଚ ଏହାର ଛାନ୍ଦଗୁଡ଼ିକ ସତର, ସତାଇଶ, ସତତିରିଶି, ପ୍ରଭୃତି ପଦରେ ପୂର୍ଣ୍ଣ କରାଯାଇଛି । ଏହି କାବ୍ୟଟିର ପଦ ସଂଖ୍ୟା ସାତଶହ ପଞ୍ଚତିରିଶି ବୋଲି କବି ଉଲ୍ଲେଖ କରିଛନ୍ତି । ଏହି କାବ୍ୟର ବିଷୟବସ୍ତୁ ମଧ୍ୟ ସତ୍ୟ ବୋଲି କବି ଉଲ୍ଲେଖ କରିଛନ୍ତି । କବିଙ୍କ ଭାଷାରେ –

"ସତର ଛାନ୍ଦ ଏ ସରସ ଗୀତ । ସତ ଚରିତ ନୁହଁଇ କଳ୍ପିତ
ସହିତ ବହୁତ ସ-କାର ମାନ । ସାତଶ ପଞ୍ଚତ୍ରିଂଶ ପଦେ ପୂର୍ଣ୍ଣ ।
ଶ୍ରମ ଯେ ବହୁତ । ସକାର ଦତ୍ତ ପାଦାଦ୍ୟେ ବିହିତ ।"

କବି ପୁନଶ୍ଚ କହିଛନ୍ତି –

ସୁରସ ପୁରାଣ ଚରିତ ଯହୁଁ, ସାଧୁ ରସିକ ମାନସକୁ ମୋହୁ
ସହଜେ ଏକ ବର୍ଣ୍ଣ ନିୟମରୁ, ସକଳ ମୂର୍ଖଙ୍କୁ ସନ୍ତୋଷ କରୁ ।
ସର୍ବ କବିଚିତ୍ତ, ସୁପଦେ ଆଶ୍ରୟେ କରୁ ମୋହିତ ।
ସୁମନଭୁକ ଯେ କୀଟ ବୃଷ, ସକାଶେ ନୋହୁ ଏ ପୁସ୍ତକ ନାଶ
ସମସ୍ତ ଦେଶରେ ପ୍ରକାଶ ହେଉ, ସଂସାର ମଧ୍ୟେ ଚିରକାଳ ଥାଉ ।
ସ୍ତବ ଏଥିପାଇଁ, ଶ୍ରାନ୍ତେ ଶ୍ରୀ ରଘୁନାଥ ଆରାଧଇ ।

(ସପ୍ତଦଶ ଛାନ୍ଦ)

କାବ୍ୟର ମଙ୍ଗଳାଚରଣରେ କବି ଉପେନ୍ଦ୍ର ଶ୍ରୀଜଗନ୍ନାଥଙ୍କୁ ବନ୍ଦନା କରି ପୁରୁଷୋତ୍ତମ କ୍ଷେତ୍ରର ମହତ୍ତ୍ୱ ପ୍ରତିପାଦନ କରିଛନ୍ତି । ଏ ବର୍ଣ୍ଣନା ଅତୀବ ଉଚ୍ଚକୋଟୀର । ନଳିନୀଗୌଡ଼ା ରାଗରେ କବି ଲେଖିଛନ୍ତି –

"ସିନ୍ଧୁ ତଟେ ଶ୍ରୀପୁରୁଷୋତ୍ତମ କ୍ଷେତ୍ରରାଜ
ସାଧୁଜନେ ! ଅଛି ତହିଁ ବହୁତ ଆଶ୍ଚର୍ଯ୍ୟ ହେ ।
ସେ ଭୂମି ପ୍ରବେଶେ ବ୍ରହ୍ମହତ୍ୟା ପାପହରେ
ସାକ୍ଷାତ ହୋଇଛି ଏ କପାଳମୋଚନରେ ଯେ ।
ସେ ହୁଏ ଚତୁରଭୁଜ ସେ ଯେ କ୍ଷେତ୍ରେ ରହି
ସାକ୍ଷୀ ଏ କଥାଟିକୁ ଅଜ୍ଞାନ କାକତହିଁ ।"×××
ସମିଧ ଶରୀରକୃତ ବିଷ୍ଣୁନିକେ ତହିଁ
ସୁଦରଶନେ ଆଶ୍ଚର୍ଯ୍ୟ ଅପବର୍ଗ ଦେଇ ଯେ ।
ସ୍ୱରୂପ ଏ ନାଶା କର୍ଣ୍ଣ ହସ୍ତ ପାଦ ହୀନ
ସ୍ମରକୋଟି ନୋହେ ତେବେ ଶୋଭାକୁ ସମାନ ଯେ ।
ଶଙ୍କରଷଣ ଆପଣେ ବେନି ପାଶେ ବିଜେ
ସ୍ନେହୀ ବଡ଼ ଭଗ୍ନୀଠାରେ ମଧ୍ୟେ ଯେ ବିରାଜେ ଯେ ।
ସୁମନରେ ଉପଇନ୍ଦ୍ର ଭଞ୍ଜ ଏଣୁ ଭାବି
ସୁଭଦ୍ରାଚରିତ ମୁଁ ଗୀତରେ ବିରଚିବି ଯେ ।

କାବ୍ୟଟିର ବିଷୟବସ୍ତୁ ପୌରାଣିକ । ମହାଭାରତର ସୁଭଦ୍ରା – ଅର୍ଜ୍ଜୁନ ଉପାଖ୍ୟାନକୁ ଆଧାର କରି ଏହା ରଚିତ ।

ବସୁଦେବଙ୍କ ପତ୍ନୀ ରୋହିଣୀଙ୍କ ଗର୍ଭରୁ ସୁଭଦ୍ରା ଜାତ ହୋଇଛନ୍ତି । ଯୌବନ ଲାଭକଲାପରେ ତାଙ୍କର ସୌନ୍ଦର୍ଯ୍ୟରେ ମୁଗ୍ଧ ହୋଇ ବିଭିନ୍ନ ଦେଶର ରାଜାମାନେ ତାଙ୍କୁ ଲାଭ କରିବା ପାଇଁ ଲାଳାୟିତ ହୋଇଛନ୍ତି । ଅଗ୍ରଜ ବଳରାମ ସୁଭଦ୍ରାଙ୍କ ବିବାହ ଦୁର୍ଯୋଧନଙ୍କ ସହ ସ୍ଥିର କରିଛନ୍ତି । କିନ୍ତୁ ଶ୍ରୀକୃଷ୍ଣ ଏ ପ୍ରସ୍ତାବରେ ରାଜି ହୋଇ ନାହାନ୍ତି । ଶ୍ରୀକୃଷ୍ଣ ବଳରାମଙ୍କ ମନୋକଥା ଜାଣିପାରି ରୈବତ ପର୍ବତରେ ଏକ ଯାଗର ଆୟୋଜନ କରିଛନ୍ତି । ସେଠାରେ ଗୋଶୃଙ୍ଗ ଦୈତ୍ୟ ନିମନ୍ତ୍ରଣ ପାଇ ଅସୁର ସୈନ୍ୟକୁ ନେଇ ଉପସ୍ଥିତ ହେଲା । ସେ ବଳରାମ ଓ ଶ୍ରୀକୃଷ୍ଣଙ୍କୁ ଅଗ୍ନିରେ ନିକ୍ଷେପ କଲା । ସତ୍ୟଭାମାଙ୍କ ସୌନ୍ଦର୍ଯ୍ୟରେ ବିମୋହିତ

ହୋଇ ତାଙ୍କୁ ଅପହରଣ କଲା । ଏହି ସମୟରେ ଅର୍ଜ୍ଜୁନ ତୁଙ୍ଗଭଦ୍ରା ନଦୀକୂଳରେ ଥିଲେ । ସେ ସତ୍ୟଭାମାଙ୍କ ଆର୍ତ୍ତଚିତ୍କାର ଶୁଣି ମନ୍ତ୍ର ଉଚ୍ଚାରଣ କରି ଶର ପେଷିଥିଲେ । ଅର୍ଜ୍ଜୁନ ଗୋଶୃଙ୍ଗ ଦୈତ୍ୟକୁ ବଧ କଲେ ଏବଂ ସତ୍ୟଭାମାଙ୍କୁ ଉଦ୍ଧାର କଲେ । ଏଣୁ ଦ୍ୱାରକାପୁରରେ ଯଦୁକୁଳର ସମସ୍ତ ରମଣୀ ସୁବେଶ ହୋଇ ବୀର ଅର୍ଜ୍ଜୁନଙ୍କୁ ଅଭ୍ୟର୍ଥନା ଜଣାଇଲେ । ଏ ସମସ୍ତ କାର୍ଯ୍ୟର ନେତୃତ୍ୱ ନେଇଥିଲେ ସୁଭଦ୍ରା । ସେଠାରେ ସୁଭଦ୍ରା ଅର୍ଜ୍ଜୁନଙ୍କୁ ଦେଖି ଆକର୍ଷିତା ହୋଇଥିଲେ । ଶ୍ରୀକୃଷ୍ଣଙ୍କ ନିର୍ଦ୍ଦେଶରେ ସତ୍ୟଭାମା ଅର୍ଜ୍ଜୁନ ଓ ସୁଭଦ୍ରାଙ୍କର ଗୁପ୍ତ ମିଳନ ପାଇଁ ସମସ୍ତ ବ୍ୟବସ୍ଥା କରିଥିଲେ । କିନ୍ତୁ ଘଟଣାଟି ପ୍ରଘଟ ହେବାରୁ କୌରବ ଓ ଅର୍ଜ୍ଜୁନଙ୍କ ମଧ୍ୟରେ ଯୁଦ୍ଧ ସଂଘଟିତ ହୋଇଛି । ଏହାପରେ ବଳରାମ ନିଜର ମତ ପରିବର୍ତ୍ତନ କରିଛନ୍ତି ଏବଂ ସୁଭଦ୍ରାଙ୍କର ଅର୍ଜ୍ଜୁନଙ୍କ ସହିତ ପରିଣୟ ସମ୍ପାଦିତ ହୋଇଛି ।

କବି ଉପେନ୍ଦ୍ର ନାୟିକା ସୁଭଦ୍ରାଙ୍କର ରୂପ ବର୍ଣ୍ଣନାରେ ନୈପୁଣ୍ୟ ପ୍ରଦର୍ଶନ କରିଛନ୍ତି । ସୁଭଦ୍ରାଙ୍କର ଅବୟବ ବର୍ଣ୍ଣନା ପ୍ରସଙ୍ଗରେ କବି ସାତ ପ୍ରକାର ଫୁଲ, ସାତ ପ୍ରକାରର ଫଳ, ଏବଂ ସାତପ୍ରକାର ପକ୍ଷୀର ଉଲ୍ଲେଖ କରିଛନ୍ତି । ଦୃଷ୍ଟାନ୍ତସ୍ୱରୂପ,

"ସର୍ବପୁରେ ଯାଇ ପର୍ବତ କହିଲେ
ମହୀଜାତ ହେମମଞ୍ଜରୀ
ସୁଗନ୍ଧବତୀ ସ୍ୱଇଚ୍ଛାରେ ଚଳିତ
ପତ୍ରାବଳିରେ କି ମାଧୁରୀ ।
ସମ୍ଭୂଳ । ତହିଁ ପୁଣି ଫୁଲ ଏତେକ
ସରୋରୁହ ଚମ୍ପା କୁମୁଦ ପାଟଳି
ନିଆଳୀ ଶିରୀଷ ଅଶୋକ ।
ସଫଳ ଆମ୍ବ ଡାଳିମ୍ବ ବିମ୍ବ ଦ୍ରାକ୍ଷା
ତୁମ୍ବୀ ନାରଙ୍ଗ ମାତୁଳଙ୍ଗ
ସାରଙ୍ଗ ଖଞ୍ଜନ ଚକୋର ମୟୂର
ଶୁକ କପୋତ ହଂସ ସଙ୍ଗ
ସ୍ୱରୂପେ । ମହା ଅଦ୍ଭୁତ କଥା ଏହି,
ସପତ ଜାତି ଫଳ ଫୁଲ ବିହଙ୍ଗ ଲତାକେ
ଥିବା ଶୁଣା ନାହିଁ ।" (ଚତୁର୍ଥ ଛାନ୍ଦ)

'ସୁଭଦ୍ରା ପରିଣୟ' ସର୍ଜନା ପାଇଁ କବି ଉପେନ୍ଦ୍ର ସରଳ, ତରଳ ଓ ସାବଲୀଳ ପଦବିନ୍ୟାସ କ୍ଷେତ୍ରରେ ବିଶେଷ ଯତ୍ନବାନ ଥିଲେ । ତେଣୁ କବି ଲେଖିଛନ୍ତି –

"ସୁଜ୍ଞଜନେ ଶୁଣ ଏ ଗୀତରେ ଦେଇ ମତି
ସରଳ ପଦମାନଙ୍କେ ମୋହିବ ଏ ଶ୍ରୁତି ଯେ ।
ସହିତ ଶ୍ଳେଷରୂପକ ଯମକ ହୋଇବ
ସିଂହାବଲୋକନ ଛଳ ବିରୋଧାହିଁ ଥିବ ଯେ ।
ସଚିତ୍ର ହୋଇବ ଛାନ୍ଦବନ୍ଦୀ ଅନୁପ୍ରାସେ
ସ୍ଫୁଟ ଆଶୟରେ ପୁନରୁକ୍ତି ବଦାଭାଷେ ଯେ ।
ସାର୍ଥହେବ ଦତ୍ତାକ୍ଷର ଚ୍ୟୁତାକ୍ଷର କାହିଁ
ସୁମତି ହୋଇବ ଦତ୍ତ ଚ୍ୟୁତାକ୍ଷର ଥାଇ ଯେ ।
ସ୍ୱଭାବ କାକ ଉଲ୍ଲୁକ ଖଳ ଏହୁ ବେନି
ସନ୍ତୋଷ ଏ ଦୋଷୋଦୟେ ସଭୟ ଏ ଘେନି ଯେ ।
ସୈଂହିକେୟ ବିରୋଧୁଁ କି ବିନାଶ ବିଧୁର
ସମସ୍ତ ଦେବଙ୍କ ମିତ୍ର ଶିରେ ଧରେ ହର ଯେ ।
ସେହି ରୂପ ଏ ଗୀତ ସବର୍ଣ୍ଣ ଶ୍ରମ ଦେଖି
ସୁଧୀ ସୁରସିକମାନେ ଚିତ୍ତେ ହେବେ ସୁଖୀ ଯେ ।
ସୁର ଶୂର ଶମ୍ବର ଶମ୍ବରାଦି ଦ୍ୱିରୂପ
ସାବଧାନରେ ଶୁଣିବ ପଣ୍ଡିତ କଳାପ ଯେ ।" (ପ୍ରଥମ ଛାନ୍ଦ)

ରସିକ ଓ ପଣ୍ଡିତ ଜନଙ୍କର ହୃଦୟକୁ ରସାଇବା ପାଇଁ ରସିକ କବି ଉପେନ୍ଦ୍ର ଏହି କାବ୍ୟରେ ନବରସର ଅବତାରଣା କରିଛନ୍ତି । କବି ଉପେନ୍ଦ୍ର 'ସୁଭଦ୍ରା ପରିଣୟ' କାବ୍ୟର ଷଷ୍ଠଛାନ୍ଦରେ ଗୋଟିଏ ମାତ୍ର ପଦରେ ନବରସର ନାମୋଲ୍ଲେଖ କରିଛନ୍ତି । ଯଥା :

"ସପ୍ତତିରିଶ ପଦେ ପୂରିତ
ବୀର କାରୁଣ୍ୟ ହାସ୍ୟ ଅଦ୍ଭୁତ
ବିଭତ୍ସ ଭୟାନକ ସୁଶାନ୍ତ ରୌଦ୍ର ଶୃଙ୍ଗାର ଯେ ।
ସୁବ୍ୟକ୍ତ ପୁଣି ଛାନ୍ଦ ଛାନ୍ଦକେ

ପ୍ରତୀତହେବ ଆଳାଙ୍କରିକେ
ଶୁଣି ତୃପତ ହେବେ ରସିକେ ପଣ୍ଡିତନରେ ଯେ ।"

କବି ଉପେନ୍ଦ୍ର ନିଜର ପରିଚିତି ସମ୍ପର୍କରେ ଏହି ଗ୍ରନ୍ଥରେ ଲେଖିଛନ୍ତି –

"ସୀତା ବଲ୍ଲଭ ପଦ ସୁମନ ମନେ ଚିନ୍ତି
ସଂଜ୍ଞା ଭଞ୍ଜନାମ ଉପଇନ୍ଦ୍ର ପଦ ବୀରବର ଯେ ରଚନ୍ତି ।"

'ସୁଭଦ୍ରା ପରିଣୟ" କାବ୍ୟରେ ସେନାଯାତ୍ରା ପ୍ରସଙ୍ଗ ମଧ ବର୍ଣ୍ଣିତ ହୋଇଛି । ଶ୍ରୀକୃଷ୍ଣଙ୍କର ଯାଗଯଜ୍ଞର ନିମନ୍ତ୍ରଣ ପାଇ ସୌରାଷ୍ଟ୍ର, ନଟ, ଚୋଡ଼ଙ୍ଗ, ଭୋଟ, ଅଙ୍ଗ, କଳିଙ୍ଗ, ମର୍ହଟ, ଦ୍ରାବିଡ଼, ଗୌଡ଼, ମଘ, କର୍ଣ୍ଣାଟ, ମଲ୍ଲ, ଲୋମଶ, ସିନ୍ଧୁ ଉତ୍କଳ, ଚୋଳ ଆଦି ଦେଶର ନୃପତିମାନେ ନିଜ ନିଜର ସେନାବାହିନୀ ସହିତ ଦ୍ୱାରକାକୁ ଯାତ୍ରାକରିବାର ପ୍ରସଙ୍ଗ କବି ବର୍ଣ୍ଣନା କରିଛନ୍ତି । ସୈନ୍ୟମାନଙ୍କର ସାଜସଜ୍ଜାର ଦୃଶ୍ୟକୁ ବର୍ଣ୍ଣନା କରି କବି ଲେଖିଛନ୍ତି –

"ସେ ଆଡ଼ମ୍ବର ମେଘାଡ଼ମ୍ବର ଶ୍ୱେତ ଅମ୍ବର ଛତ୍ର ଚାମର
ଅଦୃଶ୍ୟ ହେଲା ସୈନ୍ୟ ସମ୍ଭାର ସାଜିଣୀ ସାଜେ ଯେ ।
ସମୁଦାୟର ପଦାନ୍ତି ଧାଟୀ ଧାପେ ପ୍ରକଟି ଘର୍ଘରି ଘଣ୍ଟି
ସୁରଙ୍ଗ ମାଟି ଲେପନ କଟୀ, ତଟରେ କାତିଯେ ।
ସାବେଳୀ ନଳୀ ଝଳକ ଫରି ଖଣ୍ଡାସୁଦଣ୍ଡା ଭଲ୍ଲକଧରି
ଫୁଲି ଚାମର ପକ୍ଷେ ମାଧୁରୀ ହୋଇ ଅଛନ୍ତି ଯେ।" (ଷଷ୍ଠ ଛାନ୍ଦ)

କବି ଉପେନ୍ଦ୍ର ପ୍ରସଙ୍ଗ କ୍ରମେ ବିଭିନ୍ନ ନଦୀମାନଙ୍କର ସୂଚନା ପ୍ରଦାନ କରି ତାଙ୍କର ଭୌଗୋଳିକ ଜ୍ଞାନର ପରିଚୟ ପ୍ରଦାନ କରିଛନ୍ତି । ଯଥା :

"ସିନ୍ଧୁ କାବେରୀ ଜାହ୍ନବୀଗୋଳା ଯମୁନା ବ୍ରାହ୍ମୀ ଚିତ୍ରଉତ୍ପଳା
ଭାର୍ଗବୀ ସରସ୍ୱତୀ ମେଖଳା ରେବା ନର୍ମଦା ଯେ,
ସୁବର୍ଣ୍ଣରେଖା ସୁରଷିକୁଲ୍ୟା ସରଯୂ ଚନ୍ଦ୍ରଭାଗା ସୁରଳା
କୌଶକୀ ସରାବତୀ ବିମଳା ସୁତୁଙ୍ଗଭଦ୍ରା ଯେ ।"

ଏହି କାବ୍ୟରେ କବି ତତ୍କାଳୀନ ସାମାଜିକ ଚଳଣି, ବେଶଭୂଷା, ସ୍ତ୍ରୀ ମାନଙ୍କର ସଙ୍ଗୀତ ଶିକ୍ଷା, ସାମନ୍ତମାନଙ୍କ ନବପୁଷ୍ପବତୀ ଚେଟୀଙ୍କ ସହ ରମଣ କରିବା, ରାଜଦରବାରରେ ଭାଟ ମାନଙ୍କର ସ୍ତୁତିଗାନ ଏବଂ ବଣିଆଁ, ଶବର, ଗୁଡ଼ିଆ, ତନ୍ତୀ, କୁମ୍ଭାର ପ୍ରଭୃତି ଲୋକମାନଙ୍କର ଜୀବନଯାପନ ପ୍ରଣାଳୀ

ଇତ୍ୟାଦିକୁ ବର୍ଣ୍ଣନା କରିଛନ୍ତି । ଏହି କାବ୍ୟରେ ବାଦ୍ୟ, ବିବାହମଣ୍ଡପନିର୍ମାଣ, ଛାୟାମଣ୍ଡପ ନିର୍ମାଣ, ଝନ୍ଦୁଆମଣ୍ଡନ, ଚୂର୍ଣ୍ଣ ଲେପନ, ସୁନାରୀମାନଙ୍କ ଦ୍ୱାରା ଯୌତୁକ ଅଳଙ୍କାର ଗଢ଼ଣ, ଗଣିକାମାନଙ୍କର ମଙ୍ଗଳଗୀତ ଶିକ୍ଷା ଇତ୍ୟାଦି ପ୍ରସଙ୍ଗ ବର୍ଣ୍ଣନା କରାଯାଇଛି । ସୁତରାଂ ଜଣାଯାଏ କବି ଉପେନ୍ଦ୍ର ଥିଲେ ସାମାଜିକ ଜୀବନର ନିଖୁଣ ଚିତ୍ରକର । କବି ଲେଖିଛନ୍ତି –

"ସ୍ତନୟିତନୁ ଘୋଷପ୍ରାୟେ ଶୁଭେ ବାଦ୍ୟସ୍ୱନ
ସ୍ରଷ୍ଟାଏ ବିଭାମଣ୍ଡପ କରନ୍ତି ଯତନ ଯେ ।
ସକାମ ବିପ୍ର ଛାୟାମଣ୍ଡପକୁ ରଚନ୍ତି
ସିଂହାକେ ବସ୍ତ୍ର ଝମର ବିତାନ ମଣ୍ଡନ୍ତି ଯେ ।
ଶୋଭାରେ ନବତନୁରେ ମୋତି ଚୂନଚୂର୍ଣ୍ଣ
ସୁଧାଲେପନ ନିକର କଲେ ବିଲେପନ ଯେ ।
ସୁନାରୀ ଯୌତୁକ ଅଳଙ୍କାର କରେ ଉଜ
ଶିଖନ୍ତି ଗଣିକା ଗୀତ ମଙ୍ଗଳ ସମାଜ ଯେ ।
ସକାମେ ବିପ୍ରେ ଦେଖନ୍ତି କର୍ମପୋଥିମାନ
ସାମଗ୍ରୀ ବହୁତ କରି ଆଣେ ଭୃତ୍ୟଜନ ଯେ ।
ସଚିତ୍ର କରନ୍ତି ଭିତ୍ତିମାନ ଚିତ୍ରକାରେ
ସଜାଡ଼ି ଭିଡ଼ନ୍ତି ବାଣ ଜାଣିଲା ଜନରେ ଯେ ।"

(ସୁଭଦ୍ରା ପରିଣୟ – ୧୬ଶ ଛାନ୍ଦ)

ଏବେ ମଧ ଓଡ଼ିଶାର ଗାଁ ଗହଳିରେ ଏସବୁ ଦୃଶ୍ୟ ଦେଖିବାକୁ ମିଳିଥାଏ ।

'ସୁଭଦ୍ରା ପରିଣୟ' କାବ୍ୟରେ କବିସମ୍ରାଟ ବିଭିନ୍ନ ଅଳଙ୍କାରର ବିନ୍ୟାସ କରି ନିଜର ଅଳଙ୍କାର ମାନସକୁ ସାବ୍ୟସ୍ତ କରିଛନ୍ତି । ଯଥା –

ଆଦ୍ୟ ଯମକ – ସୁରଭୀ ସୁରଭୀ ଆଶ୍ରିତ ଯହିଁ ଲବଙ୍ଗଲତା
ସୁନାରୀ ସୁନାରୀ ପରାୟେ ଧବ ଅଗ୍ରତେ ସ୍ଥିତା । (୫ମ ଛାନ୍ଦ)

ମଧ୍ୟଯମକ – ସଫଳ ରସାଳ ରସାଳ ତରୁ ବକୁଳବନ୍ତ
ସକ୍ରୀଡ଼ିତ ଝହିଁ ବିଡ଼ାଳେ ବିଡ଼ାଳେ ଆରୋହିତ । (୫ମ ଛାନ୍ଦ)

ପ୍ରାନ୍ତଯମକ – ସୁବାହା କୁସୁମଣ୍ଡିତ ମହୀ ତରୁଣୀ କରେ
ସୌଗନ୍ଧ ନଥିଲେ ଚିତ୍ତକୁ ଲୋଭିତ ରଣୀକରେ । (୫ମ ଛାନ୍ଦ)

ଆଦ୍ୟପ୍ରାନ୍ତ ଯମକ – ସୁମନସରେ ମହୋଜ୍ଜ୍ୱଳ ଯେ ଅଶୋକ ବିଟପୀ
ସୁମନଶରେ ଶୋକବତୀ ଦେଖି ହେବେ ବିଟପୀ ।(୫ମ ଛାନ୍ଦ)

ସର୍ବଯମକ – "ସନ୍ତାନ ପାଇଁ ବିହରନ୍ତି ଯହିଁ ଖଞ୍ଜନ ଚକ୍ର
ସନ୍ତାନ ପାଇଁ ବିହରନ୍ତି ଯହିଁ ଖଞ୍ଜନ ଚକ୍ର ।
ସୁକାନ୍ତି ମାଧବୀ ମୋହନ କରେ ମଧୁସୂଦନ
ସୁକାନ୍ତି ମାଧବୀ ମୋହନ କରେ ମଧୁସୂଦନ ।
ସାରସ କଦମ୍ବ ଯୋଗରେ ଯହିଁ ଶୋଭା ଅନନ୍ତ
ସାରସ କଦମ୍ବ ଯୋଗରେ ଯହିଁ ଶୋଭା ଅନନ୍ତ ।"
(୫ମ ଛାନ୍ଦ)

ରୂପକ – ସରୋଜିନୀକି ସରୋଜିନୀ କରି ସେ କଳ୍ପନା କଲେ ମନେ ମନେ
ସୁବାହୁ ମୃଣାଳ ଉଦର ପଲାଶ କାନ୍ତି କେଶର ବିଦ୍ୟମାନେ
ସୁମୁଖ, ଫୁଲ୍ଲାରବିନ୍ଦ ମଧୁପୂର୍ଣ୍ଣ ।
ସୌରଭ ପର ଚିରକୁ ମଧୁକରପନ୍ତି କୁଟଳ ଚାରୁସ୍ତନ ।
(୪ର୍ଥ ଛାନ୍ଦ)

ଅଭଙ୍ଗଶ୍ଳେଷ – ସ୍ୱର୍ଣ୍ଣଦୀ ପରାୟେ ପାପ ନାଶନରେ କ୍ଷମ
ସୁଗନ୍ଧ ପାରିଜାତକ ଫୁଲେ ମନୋରମ ଯେ । (ପ୍ରଥମ ଛାନ୍ଦ)

ସଭଙ୍ଗଶ୍ଳେଷ – ସଉଧ ସଦନେ ଘନ କୁଣ୍ଡଳୀରେ ଶୋଭା
ସେନାନୀ ଗଉରୀ ଈଶେ ପ୍ରକାଶ ପ୍ରତିଭା ଯେ । (ପ୍ରଥମ ଛାନ୍ଦ)

ପର୍ଯ୍ୟାୟଶବ୍ଦଶ୍ଳେଷ – ସୁରଭୀ କାଳ ପରିସେ ଶୋଭା ସୁମନରେ
ସରସ୍ୱାନ ପ୍ରାୟେ ମହୋଜ୍ଜ୍ୱଳ ଯାଦବରେ ଯେ । (ପ୍ରଥମ ଛାନ୍ଦ)

ମହାଯମକ – ସୁରୁଚି କେଶର କେଶର କେଶର ତରୁ ତହିଁ
ସଞ୍ଚରି ପରାଗ ପରାଗ ପରା ଗଗନେ ଶୋହି
ସତୁଷ୍ଟ ମଧୁର ମଧୁର ମଧୁର ବଶେ ଆଳି
ସାଦରେ ଫୁଲ ଫୁଲ ଫୁଲ ଚୁମ୍ବୀ ଚୁମ୍ବନ୍ତି ମିଳି । (୪ର୍ଥ ଛାନ୍ଦ)

ପୁନରୁକ୍ତି ବଦାଭାଷ –
ସରୋଜ ଅମ୍ବୁଜ ଚନ୍ଦ୍ର ଆଦରଶ ବଦନୀ ସୁଝୀନ ବସନା
ସୁରମ୍ୟ ବିଦ୍ରୁମ ପ୍ରବାଳ ମିହିର ଅରୁଣ ଦଶନ ବସନା

ସୁଧାଂଶୁ ଇନ୍ଦୁ, ସୁଧା ଦରହାସ ପ୍ରସନ୍ନା
ସୁବର୍ଣ୍ଣ ହେମ କନକଗାତ୍ରୀ ଘନ ଜଳଦ କେଶୀ ସୁଦର୍ଶନା ।

(୧୦ମ ଛାନ୍ଦ)

ଆଶୟ – ସେ କୁହୁଧ୍ୱନି ଘେନି କୁହୁକ ବିରହିଣୀଠାରେ କୁହୁରଜନୀ କଲା
ସ୍ୱରୂପ ତ ନ ମଣି ରମଣୀ ଶିରୋମଣି ଚମକି କ୍ଷିତିରେ ପଡ଼ିଲା ସେ
ସୁକୁମାରୀ । ସ୍ୱମନ୍ତ୍ର ମୁଖେ ଉଚ୍ଚାରିଲା । ସ୍ୱଜନେ ଏତେ ପଚାରିଲା ।
ସମ୍ବତ୍ସରରୁ କ୍ଷୟେ ପକ୍ଷୁଁ ତିଥି ପରାୟେ ଗ୍ରୀଷମ ଋତୁକି ହୋଇଲାରେ ।

(୮ମ ଛାନ୍ଦ)

ରସଚର୍ଯ୍ୟା, ଅଳଙ୍କାରର ବିନ୍ୟାସ, ସରଳ ଓ ସୁବୋଧ ପଦାବଳୀର ପ୍ରୟୋଗ ଇତ୍ୟାଦିଯୋଗୁଁ 'ସୁଭଦ୍ରା ପରିଣୟ' କାବ୍ୟ ଏକ ରସୋତ୍ତୀର୍ଣ୍ଣ କାବ୍ୟ ଭାବରେ କୋବିଦ ମଣ୍ଡଳୀଙ୍କର ଦୃଷ୍ଟି ଆକର୍ଷଣ କରିଛି । କାବ୍ୟଟି ୧୮୫୭ ମସିହାରେ ପ୍ରଥମେ ପ୍ରକାଶିତ ହୋଇଥିଲା ।

**ସୁବର୍ଣ୍ଣ ରେଖା :**

ପାଞ୍ଚଛାନ୍ଦ ବିଶିଷ୍ଟ ଏହି କାଳ୍ପନିକ କାବ୍ୟଟି ଭଞ୍ଜୀୟ କାବ୍ୟମାନସର ଅନୁପମ ସୃଷ୍ଟି । କୋଶଳ ଦେଶର ରାଜକୁମାର କାବ୍ୟର ନାୟକ ଏବଂ କୌଣସି ଏକ ରାଜ୍ୟର ମନ୍ତ୍ରୀକୁମାରୀ ସୁବର୍ଣ୍ଣରେଖା କାବ୍ୟର ନାୟିକା । ପ୍ରଥମ ଛାନ୍ଦରେ ନାୟକ ଓ ନାୟିକାର ଗାନ୍ଧର୍ବ ରୀତିରେ ବିବାହ ଓ ନାୟକର ପ୍ରବାସ, ଦ୍ୱିତୀୟ, ତୃତୀୟ ଓ ଚତୁର୍ଥ ଛାନ୍ଦରେ ବର୍ଷାଋତୁର ଆଗମନୀକ୍ରମେ ନାୟକର ବିରହ, ଏବଂ ଶେଷ ଛାନ୍ଦରେ ନାୟକ ପ୍ରବାସରୁ ପ୍ରତ୍ୟାବର୍ତ୍ତନ ଓ ନାୟିକା ସହିତ ମିଳନ ଘଟଣା ବର୍ଣ୍ଣିତ ।

ଶେଷ ଛାନ୍ଦରେ ନାୟକ ଓ ନାୟିକାର ଦୈହିକ ମିଳନ ବର୍ଣ୍ଣନା କବିଙ୍କ ଲେଖନୀରେ ଅତ୍ୟନ୍ତ ବାସ୍ତବ ।

ପୁନଶ୍ଚ ବିଭିନ୍ନ ଋତୁରେ ସେମାନଙ୍କର ମିଳନ ଘଟିଛି । କବି ଗାଇଛନ୍ତି–

"ହିମ ଶିଶିର ଯେ ବସନ୍ତ, ଗ୍ରୀଷମ, ବରଷା ଶରଦ ପୁଣି
ନାନା ବିନୋଦରେ ମନ୍ଦିର ଭିତରେ ବଞ୍ଚେ ରସିକ-ରମଣୀ ।
ପାଞ୍ଚ ଛାନ୍ଦେ ଶେଷ ହୋଇଲା ଏ ରସ କରିବ ରସିକ ବଶ
ହେ ଜନେ ପ୍ରେମସୁଧାନିଧି ରସିକହାରାବଳୀର ଏ ଶେଷ ।
ସୁବର୍ଣ୍ଣରେଖାର ବର୍ଣ୍ଣନା ଯେତେକ ରସେ ଏହୁ ତିନି ଗୀତ
କହେ ଉପଇନ୍ଦ୍ର ଭଞ୍ଜ ବୀରବର ଅନୁଭବୁଁ ଏ ବିଦିତ ।"

(ପଞ୍ଚମ ଛାନ୍ଦ)

କାବ୍ୟଟିରେ 'ଅନୁଭବରୁ ଏହା ବିଦିତ' ଉକ୍ତିଟି ବେଶ୍ ତାତ୍ପର୍ଯ୍ୟପୂର୍ଣ୍ଣ । କବିଙ୍କର ଜୀବନାନୁଭୂତିର କିଞ୍ଚିତ ଝଲକ ଏଥିରେ ଉପଲବ୍ଧ । ସେହିପରି 'ରସିକ ହାରାବଳୀ' କାବ୍ୟରେ ମଧ୍ୟ କବି ଉପେନ୍ଦ୍ର ଅନୁରୂପ ଭାବରେ କହିଛନ୍ତି – "ଅନୁଭବରୁ ପ୍ରଖ୍ୟାତ ମାନସ ରଚନା" । କବିଙ୍କର ପ୍ରେମସୁଧାନିଧି, ରସିକ ହାରାବଳୀ ଓ ସୁବର୍ଣ୍ଣରେଖା – ଏହି ତିନିଗୋଟି ଶୃଙ୍ଗାର ରସ ପ୍ରଧାନ କାବ୍ୟ ପ୍ରାୟ ପାଖାପାଖି ସମୟରେ ସୃଷ୍ଟି ବୋଲି ଅନୁମାନ କରାଯାଏ ।

'ସୁବର୍ଣ୍ଣରେଖା' କାବ୍ୟର ପ୍ରଥମ ଛାନ୍ଦରେ କବି ତାଙ୍କର ଉପାସ୍ୟ ଦେବତା ରାମଚନ୍ଦ୍ରଙ୍କର ଶୁଭାଶିଷ ଭିକ୍ଷା କରିଛନ୍ତି । ଯଥା –

"ଜୟ ଜୟ ରାମଚନ୍ଦ୍ର   ଅସୁର କରି ପାରିନ୍ଦ୍ର
ସୀତା ହୃଦୟ ଚନ୍ଦନ   ଜଗଦ୍ବନ୍ଦନ ଯେ ।
ନବୀନ ନୀରଦ ଶ୍ୟାମ   କାମଜିତ ଅଭିରାମ
ଭକତ ମୁକତିଧାମ   ଅନଉପମ ଯେ ।
ଉପଇନ୍ଦ୍ର ବୀରବର   ମାଗଇ ଯୋଡ଼ିଣକର
କହିବ ରସ ଚରିତ   କରିଣ ଗୀତ ଯେ ।"×××
ସେ ରାମାରେ ଦତ୍ତମନା ବଢ଼େ ବିରହ ବେଦନା
କହେ ଭାବି ବୀରବର   କାମେ ଅଧୀର ଯେ ।" (ପ୍ରଥମ ଛାନ୍ଦ)

ଜଣେ ରସିକ ନାୟକ ନିକଟରେ ନାୟିକାର ଲାଜ ଓ ପ୍ରେମ ମିଶା ଚାହାଁଣୀ ସ୍ମୃତିର ସମ୍ପଦ ହୋଇ ରହିଥାଏ । ଯେପରି କୋଶଳ ରାଜକୁମାର ନାୟିକାର ଲାଜୁଆ ଭାବକୁ ସ୍ମରଣ କରି ନିଜର ସନ୍ତାପିତ ପ୍ରାଣକୁ ଶୀତଳ କରିଛି–

"ମୋହ ଆଗରେ ଉଭାହେଲା ବେଳେ । ମୁଖ ନୁଆଇଁ ଥାଇ ସବୁବେଳେ ।
ପାଦ ବୃଦ୍ଧାଙ୍ଗୁଳି ଘଷି ଅବନୀ   । ଚିବୁକରେ ଦେଇଥାଇ ତର୍ଜନୀ ।
ନାସା ଅଳପ ଅଳପ ଫୁଲାଇ   । ପଦେ ପଦେ କହୁଥାଏ ଗେହ୍ଲାଇ
ମୋର ନ ଚାହିଁଲା ବେଳେ ଅନାଇ   । ଚାହିଁ ଦେଲେ ମହୀ ଦୃଷ୍ଟି କରଇ।
ଯେବେ ହାସ ପ୍ରକାଶ ରହସ୍ୟରେ   । ଶେଷକରେ ରସବତୀ ଅଧରେ ।।
ମୋତେ ଚାହିଁବାକୁ ବଡ଼ ଶରଧା   । ଲାଜ କୃପଣ କରୁଥାଇ ବାଧା ।।"

ସର୍ବୋପରି ନାୟିକାର ଓଦାସରସର ଦେହ ଦେଖିବା ନାୟକ ପକ୍ଷରେ ବଡ଼ ଭାଗ୍ୟର କଥା । କାବ୍ୟଟିର ନାୟକ ନାୟିକାର ଏହି ଅଭୁଲା ଦୃଶ୍ୟକୁ ସ୍ମୃତିଚାରଣ କରି ଆତ୍ମପ୍ରସାଦ ଲାଭ କରିଛି । କବିଙ୍କ ଭାଷାରେ–

"ଦିନେ ନାଗରୀ ଆସୁକରି ସ୍ନାନ । ଅଙ୍ଗେ ଜଡ଼ିଯାଇଥିଲା ବସନ ।
ଦେଖି ମନେ କଲି ଆଜ କି ଲଗ୍ନ । ଅନାୟାସରେ ଦେଖିଲି ଉଲଗ୍ନ ।
ମୋହଠାରେ ତାର ଦୃଷ୍ଟି ପଡ଼ିଲା । ଲାଜଭୟେ ଓଷ୍ଠେ ଦନ୍ତଭିଡ଼ିଲା ।
ମୁଁ ଯେ ଶୁଭାଇ ବୋଇଲି ଅଙ୍ଗନା । ମଦନକୁ କିବା ମୋତେ ତର୍ଜନା ।
ନାହିଁ କାହାକୁ ବୋଲି ପଳାଇଣ । ପୁରେ ପଶିଲା ହସିଲା ହୋଇଣ ।
ଆଉ ଯାଇ କି ସେ ଶୋଭା ଦେଖିବି । ମୋର ଚିର ବିରହ ଉପେକ୍ଷିବି ।
(ଚତୁର୍ଥ ଛାନ୍ଦ)

ଏହି କାବ୍ୟଟି ୧୮୭୦ ମସିହାରେ ପ୍ରଥମେ ପ୍ରକାଶ ପାଇଥିଲା । ଏହା କଟକ ପ୍ରିଣ୍ଟିଂକମ୍ପାନି ଆନୁକୂଲ୍ୟରେ ବ୍ରଜବଲ୍ଲଭ ପଟ୍ଟନାୟକଙ୍କ ଦ୍ୱାରା ପ୍ରକାଶିତ ହୋଇଥିଲା ।

**ଛାନ୍ଦ ଭୂଷଣ :**

'ଛାନ୍ଦ ଭୂଷଣ' ଏକ କୃଷ୍ଣଲୀଳାତ୍ମକ କାବ୍ୟ । ଓଡ଼ିଆ ବର୍ଣ୍ଣମାଳାର 'କ' ଠାରୁ 'କ୍ଷ' ପର୍ଯ୍ୟନ୍ତ – ୩୪ ଗୋଟି ବର୍ଣ୍ଣକୁ ପାଦର ଆଦ୍ୟରେ ରଖି କବି ଉପେନ୍ଦ୍ର ଚଉତିରିଶି ଗୋଟି କ୍ଷୁଦ୍ର କ୍ଷୁଦ୍ର ଛାନ୍ଦରେ କୃଷ୍ଣଲୀଳାକୁ ବର୍ଣ୍ଣନା କରିଛନ୍ତି । କୃଷ୍ଣ କଥା ଥାଉ ଥାଉ ଅନ୍ୟାନ୍ୟ ପ୍ରସଙ୍ଗକୁ ନେଇ କାବ୍ୟ ରଚନାରେ କୌଣସି କାର୍ଯ୍ୟ ନାହିଁ ବୋଲି କବି ଉପେନ୍ଦ୍ର ମତପୋଷଣ କରନ୍ତି । ତେଣୁ ସେ କହିଛନ୍ତି –

"କବି ସ୍ତୁତି ଅନ୍ତରେ ଯେ ଏମନ୍ତ ଭାବିତ
କଲି କାମିନୀ ବର୍ଣ୍ଣନା କରି ବହୁଗୀତ ।
କେଉଁ କାର୍ଯ୍ୟ ଅଛି ତହିଁ କୃଷ୍ଣ କଥା ଥାଉ
କହୁଛି ଯାହା ଅବିଘ୍ନେ ସମାପତ ହେଉ ।
କଞ୍ଜପଦେ ଯାର ସରସ୍ୱତୀ ପରିଚାରୀ
କହିବି ତାଙ୍କ ଚରିତ କିଞ୍ଚିତ ବିଚାରି ।
କହୁଛି ସୁଜନେ ନ ଘେନିବ ଥିଲେ ଦୋଷ
କର୍ଣ୍ଣ ତୁଣ୍ଡେ ପାନକର ଏ ଅମୃତରସ ।" (ପ୍ରଥମ ଛାନ୍ଦ)

ଏହା ଏକ ସଫଳ ପୌରାଣିକ କାବ୍ୟ । କାବ୍ୟର ମୂଳ ଉତ୍ସ ହେଉଛି ଶ୍ରୀମଦ୍‌ଭାଗବତର ଗୋପ, ମଥୁରା ଓ ଦ୍ୱାରିକାଲୀଳା । ଏହି କାବ୍ୟର ପ୍ରଥମ ଅଣତିରିଶି ଗୋଟି ଛାନ୍ଦରେ ଗୋପଲୀଳା, ତ୍ରିଂଶ ଛାନ୍ଦରେ ମଥୁରାଯାତ୍ରା,

ଏକତ୍ରିଂଶ ଛାନ୍ଦରେ ମଧୁବନର ଶୋଭା ବର୍ଣ୍ଣନା, ମାର୍ଗରେ ଦ୍ୱିଜମାନଙ୍କର ପୂଜାର୍ଚ୍ଚନା ବର୍ଣ୍ଣନା, ଦ୍ୱାତ୍ରିଂଶ ଛାନ୍ଦରେ ଶ୍ରୀକୃଷ୍ଣଙ୍କର ମଥୁରାକଟକରେ ପ୍ରବେଶ, କୁବ୍‌ଜାର ଉଦ୍ଧାରଣ, କଂସର ହସ୍ତୀ ଓ ମଲ୍ଲମାନଙ୍କ ଦ୍ୱାରା କୃଷ୍ଣବଳରାମଙ୍କୁ ବଧକରିବାର ପ୍ରୟାସ ପ୍ରଭୃତି ବର୍ଣ୍ଣିତ । ତ୍ରୟତ୍ରିଂଶ ଛାନ୍ଦରେ କଂସ ବଧ, କୃଷ୍ଣଙ୍କ କର୍ତ୍ତୃକ ଉଗ୍ରସେନଙ୍କୁ ମଥୁରା ରାଜା ପଦରେ ଅଭିଷିକ୍ତ କରାଇବା ଏବଂ ଚଉତ୍ରିଂଶ ଛାନ୍ଦରେ କୁବୁଜାରମଣ, ରୁକ୍ମିଣୀହରଣ, ଜରାସନ୍ଧବଧ, ସ୍ୟମନ୍ତକମଣି ହରଣ, ଶିଶୁପାଳବଧ, ରୁକ୍ମଣବଧ, ପାରିଜାତକ ହରଣ ପ୍ରଭୃତି ପ୍ରସଙ୍ଗ ବର୍ଣ୍ଣିତ ।

କବି ଉପେନ୍ଦ୍ର ବର୍ଣ୍ଣମାଳାର ଚଉତିରିଶି ଗୋଟି ବର୍ଣ୍ଣକୁ କ୍ରମରେ ରଖି ଗୋଟିଏ ଗୋଟିଏ ଛାନ୍ଦ ରଚନା କରିଥିବାରୁ ସେ ଏହି ଶ୍ରେଣୀର ରଚନାକୁ ବର୍ଣ୍ଣୋଦୟ ବା ବର୍ଣ୍ଣାଦ୍ୟ ଛାନ୍ଦ ବୋଲି ଉଲ୍ଲେଖ କରିଛନ୍ତି । କବି ପୁନଶ୍ଚ ବର୍ଣ୍ଣନା କରିଛନ୍ତି ଯେ ଦାରୁରୂପୀ ଜଗନ୍ନାଥ ହେଉଛନ୍ତି ଅବତାରୀ ପୁରୁଷ । ସେ ଲୀଳାମୟ ପୁରୁଷ । ସେ ଲୀଳା ପ୍ରକଟନ ପାଇଁ କେତେବେଳେ ରାମାବତାର ଧାରଣ କରିଥିଲେ ତ କେତେବେଳେ କୃଷ୍ଣାବତାର ଧାରଣ କରିଥିଲେ । କବିଙ୍କ ଭାଷାରେ–

"କମ୍ବୁ କଟକରେ ଯେହୁ ଦାରୁ ରୂପଧାରୀ
କାଳେ କାଳେ ଶ୍ୱେତଦ୍ୱୀପ ମଧ୍ୟେ ଯେ ବିହରି ।
କମଳବନ୍ଧୁ ବଂଶେ ଯେ ଥିଲେ ଅବତରି
କର୍ଣ୍ଣୀରବ ତନୁ ଯେ ପୂର୍ବରେ ଥିଲେ ଧରି ।
କୁତୁକେ ସେ ବିଧୁଜାତ ଦେବକୀ ଉଦର
କମଳାବ୍‌ଧିରୁ ପ୍ରକାଶ ରାକା ଆକାଶର
କଇରବ ଯୁଦକୁଳ ନିଶ୍ଚେ ଉଲ୍ଲସିବେ
କଉଣପ ତମସ୍ତୋମ ସୁକରେ ନାଶିବେ ।
କରିବେ ବରଜନାରୀ ଚନ୍ଦ୍ରକାନ୍ତି ଦ୍ରବ
କଂସ କୁଶେଶୟର ହୋଇବ ତୋଷ ଖର୍ବ
କୁପତି ତସ୍କରଚୟ ଗରବ ଧ୍ୱଂସିବେ
କଉତୁକେ ରାଜଶ୍ରୀ ତାରକା ବିଳସିବେ
କରି ଏତେ ଲୀଳାରେ ମାନସ ବଶ ତହିଁ
କଲେ ମଣ୍ଡନ ସେ ଗୋପ ଉଦୟାଦ୍ରି ପାଇଁ ।" (ପ୍ରଥମ ଛାନ୍ଦ)

ଏହି କାବ୍ୟରେ ତତ୍ସମ, ତଦ୍ଭବ ଓ ଦେଶଜ ଶବ୍ଦର ପ୍ରୟୋଗ ରହିଛି । କାବ୍ୟଟି ବିବିଧ ଅଳଙ୍କାରରେ ଭାରାକ୍ରାନ୍ତ ନୁହେଁ । କବି ଉପେନ୍ଦ୍ର ଏହି କାବ୍ୟରେ ସ୍ୱଳ୍ପ କେତୋଟି ଅଳଙ୍କାରର ପ୍ରୟୋଗ କରିଛନ୍ତି । ଓଡ଼ିଆ ବର୍ଣ୍ଣମାଳାର ପ୍ରତ୍ୟେକ ବର୍ଣ୍ଣକୁ ଆଦ୍ୟରେ ରଖି ଛାନ୍ଦରଚନା କରିବା କ୍ଷେତ୍ରରେ ଏହାହିଁ ହେଉଛି ଓଡ଼ିଆ ସାହିତ୍ୟରେ ପ୍ରଥମ କାବ୍ୟ । କାବ୍ୟଟିରେ ଉପେନ୍ଦ୍ର ଗୋପୀ - କୃଷ୍ଣଲୀଳା ବର୍ଣ୍ଣନା ଭିତରେ ବୃନ୍ଦାବତୀଙ୍କ ନାମ ଉଲ୍ଲେଖ କରିଛନ୍ତି । କିନ୍ତୁ ରାଧାଙ୍କ ନାମ ଉଲ୍ଲେଖ କରିନାହାନ୍ତି । କବି ଉପେନ୍ଦ୍ର ଗୋପୀଭକ୍ତିର ପରାକାଷ୍ଠା ବର୍ଣ୍ଣନା କରିବାକୁ ଯାଇ ଲେଖିଛନ୍ତି –

"ଲେଖି ଲେଖି ଗୋପୀଭକ୍ତି କେ ଲେଖା କରିବ
ଲକ୍ଷ ଲକ୍ଷ ପ୍ରବନ୍ଧରେ ବର୍ଣ୍ଣନା ନ ଯିବ ଯେ ।"

'ଛାନ୍ଦଭୂଷଣ' କାବ୍ୟ କୃଷ୍ଣଗାଥା ବର୍ଣ୍ଣନା, ଗୋପୀଭକ୍ତି ଭାବନା ଏବଂ ବୈଷ୍ଣବୀୟ ଚେତନାର ଏକ ସଫଳ ଅଭିବ୍ୟକ୍ତି । ସୂଚନାଯୋଗ୍ୟ ଏହା ୧୮୯୧ ମସିହାରେ ପ୍ରଥମେ ପ୍ରକାଶିତ ହୋଇଥିଲା । ଏହା କଟକ ଭିକ୍ଟୋରିଆ ପ୍ରେସରୁ ମୁଦ୍ରିତ ହୋଇଥିଲା । ଏହା ଗୁରୁପ୍ରସାଦ ଦାସଙ୍କ ଦ୍ୱାରା ପ୍ରକାଶିତ ହୋଇଥିଲା ।

**କାଳା କଉତୁକ :**

"କହେ ଉପଇନ୍ଦ୍ର ଏ ଗୀତ ପଦାଦ୍ୟପ୍ରାନ୍ତରେ ଦେଇ ଅବନା 'କ' ।"

ପ୍ରତ୍ୟେକ ପାଦର ଆଦ୍ୟ ଓ ପ୍ରାନ୍ତରେ 'କ' ଅକ୍ଷର ଥାଇ କବି ଉପେନ୍ଦ୍ର କାବ୍ୟମାନସର ଉଲ୍ଲେଖଯୋଗ୍ୟ କୃତି 'କଳାକଉତୁକ' ଏକ କୃଷ୍ଣଲୀଳାତ୍ମକ କାବ୍ୟଗ୍ରନ୍ଥ । ଏହି କାବ୍ୟର ଦଶଗୋଟି ଛାନ୍ଦରେ ଶ୍ରୀକୃଷ୍ଣଙ୍କ ଜନ୍ମ, ବାଲ୍ୟଲୀଳା, ଗୋପୀମାନଙ୍କର କୃଷ୍ଣପ୍ରତି ଆସକ୍ତି, ଚନ୍ଦ୍ରାବଳୀ ଓ କୃଷ୍ଣଙ୍କ ଅନୁରାଗ, ମଧୁମଙ୍ଗଳ ଓ ଶୈବ୍ୟାଙ୍କ ରାସଲୀଳାର ନାୟକ ଶ୍ରୀକୃଷ୍ଣ ଓ ନାୟିକା ଚନ୍ଦ୍ରାବଳୀଙ୍କ ମିଳନପାଇଁ ଉଦ୍ୟମ କରିବା ଇତ୍ୟାଦି ପ୍ରସଙ୍ଗ ବର୍ଣ୍ଣନା କରାଯାଇଛି । କାବ୍ୟଟିର ସମ୍ପର୍କରେ କବିଲେଖିଛନ୍ତି –

"କବି କବିରେ ଅଗୋଚର ଖ୍ୟାତ କୀର୍ତ୍ତିଚୟକ
କବି କରିଅଛି ହୋଇବି କବି ହେ ସଞ୍ଚୟକ ।
କରୁଣାକର ହେ କରୁଣାକର ହୋଇ ହେତୁକ
କହିବି ଚନ୍ଦ୍ରାବଳୀ - କୃଷ୍ଣ - କଳା କେଳି କୁତୁକ ।

କଳାକଉତୁକ ଏ ଗୀତ ନାମ ହେବ ଖ୍ୟାତକ
କରୁଥିବେ ପ୍ରତି ପାଦରେ ବାସ ଆଦ୍ୟ ପ୍ରାନ୍ତକ ।"(ପ୍ରଥମ ଛାନ୍ଦ)

କାବ୍ୟଟିରେ କବିତ୍ୱ ସମ୍ପର୍କରେ କବି କହିଛନ୍ତି–

"କବିତ୍ୱ ନାମ ଘେନି କଳାକୌତୁକ
କଥନେ ଉପଇନ୍ଦ୍ର ଭଞ୍ଜ ତୋଷକ ଯେ ।" (ସପ୍ତମ ଛାନ୍ଦ)

କବି ଉପେନ୍ଦ୍ର 'ଛାନ୍ଦଭୂଷଣ' କାବ୍ୟରେ ଶ୍ରୀକୃଷ୍ଣ ବୃନ୍ଦାବତୀ ଲୀଳାକୁ ପ୍ରାଧାନ୍ୟ ଦେଇଥିବାବେଳେ 'କଳାକଉତୁକ' କାବ୍ୟରେ "ଶ୍ରୀକୃଷ୍ଣ - ଚନ୍ଦ୍ରାବଳୀ" ଲୀଳାକୁ ପ୍ରାଧାନ୍ୟ ଦେଇଛନ୍ତି । ଗୋପୀ ଏବଂ ଶ୍ରୀକୃଷ୍ଣଙ୍କର ପରକୀୟ ରସ ଏଥିରେ ବର୍ଣ୍ଣିତ ହେବା କଥା କବି କହିଛନ୍ତି –

"କହିବା ବ୍ରଜ ବିଳାସ ଶୁଣିଜନେ ହୁଅ ତୋଷ
ଗୋପରେ ଜନମ ନିତ୍ୟ ନାୟକ ଯାକ
କଳ୍ପାନ୍ତରୁ ଦେବରଷି ହେବା ସ୍ତ୍ରୀ ଭାବ ମନାସି
ଥିଲେ ସେ ତାଙ୍କୁ ହେଲେ କାମନାଦାୟକ
କଉସ୍ତୁଭ ମଣିଧାରକ
କରି ଚିତ୍ତେ ପରକୀୟ ରସ ଅଧିକ ।" (ଦ୍ୱିତୀୟ ଛାନ୍ଦ)

'କଳା କଉତୁକ' କାବ୍ୟର ଭାଷା ସରଳ ଓ ସହଜ ନୁହେଁ । ଏହି କାବ୍ୟରେ କଠିନଶବ୍ଦ ଓ କ୍ଲିଷ୍ଟ ପଦ ସଂଯୋଜନା ଯୋଗୁଁ ଏହା କୋମଳ ମଧୁର ହୋଇପାରି ନାହିଁ । ଦୃଷ୍ଟାନ୍ତ ସ୍ୱରୂପ –

"କହି ନୁହେଁ ନବୀନା ରତ୍ନପଦକ
କରିବାକୁ ଉତ୍ସାହ ଯତ୍ନ ପଦକ ଯେ ।
କମ ନିର୍ମାଣେ ଦିଶୁନାହିଁ ବଣିକ
କରଣେ ମୂଲ୍ୟ ଅମୂଲ୍ୟ ମୁଁ ଉତ୍ସୁକ ଯେ ।
କର୍ତ୍ତାମଣ୍ଡଳେ ସୁଖ ମୁଁ ସମ୍ପାଦକ
କଟକ କୃତଘେନି ଶୋଭା ରଟକ ଯେ ।
କଳା ମର୍କତ ଆଭରଣ ଅଳକ
କରମେ ପଡ଼ି ବନ୍ଦୀ ଲୋକ ଅମ୍ବକ ।
କର ଦମ୍ଭକୁ ଦେଇ ଭୂତ ପ୍ରାୟେକ
କରନ୍ତି ପୁରମନ କାଳ କାଳକ ଯେ ।

କଥିତ ଅଙ୍ଗଦେଶ ରାଜ ଦର୍ପକ
କଟାକ୍ଷେ ଅନୁସରଣକୁ ରଚକ ଯେ ।
କାଳକରରେ ରଜାପଦ ରାଜକ
କଳପ ଅଳପ ହାସେକ ସେବକ ଯେ ।" ଇତ୍ୟାଦି (ସପ୍ତମ ଛାନ୍ଦ)

ପୁନଶ୍ଚ 'କ' ଆଦ୍ୟପ୍ରାନ୍ତ ନିୟମରେ ରଚିତ ହୋଇଥିବା ଯୋଗୁଁ ଏହା ଏକ କଷ୍ଟସାଧ କାବ୍ୟକୃତି ନିଶ୍ଚୟ । ତେଣୁ କବିଙ୍କର ଅଭିବ୍ୟକ୍ତି ହେଉଛି –

"କଷ୍ଟକୁ ଜାଣିବେ ସୁକବି ଯେଉଁମାନେ ପ୍ରାଚିକ
କି ଥାଉ ଭ୍ରମରେ ଯେ ଖେଳ ସେହି ପରିପନ୍ଥିକ ।" (ପ୍ରଥମ ଛାନ୍ଦ)

୧୮୮୪ ମସିହାରେ ଏହା ଉତ୍କଳ ହିତୈଷିଣୀ ପ୍ରେସ୍‌ରୁ ପ୍ରଥମେ ପ୍ରକାଶିତ ହୋଇଥିଲା ।

## କୁଞ୍ଜ ବିହାର :

ଏହା କବିଙ୍କର କୃଷ୍ଣଲୀଳା ବିଷୟକ ଏକ ରସାଳ ରଚନା । ସାତଗୋଟି ଛାନ୍ଦ ବିଶିଷ୍ଟ ଏହି କାବ୍ୟରେ ଶ୍ରୀରାଧା ଏବଂ ଶ୍ରୀକୃଷ୍ଣଙ୍କର ପ୍ରେମାନୁଭୂତିର ଦିବ୍ୟ ବର୍ଣ୍ଣନା ରହିଛି । ଏହି କାବ୍ୟର ଛାନ୍ଦଗୁଡ଼ିକ ଯଥାକ୍ରମେ କଉଶିକ, ବରାଡ଼ି, ମାଳବ, ପଞ୍ଚମବରାଡ଼ି, ଗୁଜ୍ଜରୀ, ଆହାରୀ ଓ କାଳୀ ରାଗରେ ରଚିତ । ଶ୍ୟାମଚରିତ ଆଧାରିତ ଏହି କାବ୍ୟ ସମ୍ପର୍କରେ କବି ଲେଖିଛନ୍ତି –

"କରିବି କୁଞ୍ଜବିହାର ନାମେ ଗୀତ ହେବ ସୁଧାରସପୂରିତ
କହିବି ରାଧାମାଧବ ରସ କେଳି ସୁଜନେ ଶୁଣ ଏଥୁ ଅନ୍ତ ।"

ଏହି କାବ୍ୟରେ କବି ଉପେନ୍ଦ୍ରଙ୍କ କବିଚାତୁରୀ, ବର୍ଣ୍ଣନାବିଳାସ ଓ ରାଧାକୃଷ୍ଣଙ୍କ ମିଳନ ବର୍ଣ୍ଣନା ଅତ୍ୟନ୍ତ ହୃଦୟଗ୍ରାହୀ ହୋଇପାରିଛି ।

## ଅବନାରସ ତରଙ୍ଗ :

ଏହା ଭଞ୍ଜୀୟ କାବ୍ୟ ମାନସର ଏକ ପାଣ୍ଡିତ୍ୟପୂର୍ଣ୍ଣ କୃତି । ବାରଗୋଟି କ୍ଷୁଦ୍ରକ୍ଷୁଦ୍ର ଛାନ୍ଦରେ କବି ଉପେନ୍ଦ୍ର ରାମାୟଣର କଥାବସ୍ତୁକୁ ଅବନା ଅକ୍ଷରରେ ରଚନାକରି ତାଙ୍କର 'ବିଚିତ୍ରକବିତ୍ୱ'ର ପରିଚୟ ଦେଇଛନ୍ତି । କାବ୍ୟାରମ୍ଭରେ କବିଙ୍କର ଶ୍ରୀରାମ ସ୍ତୁତି ଯେପରି ଭାବୋଦ୍ଦୀପକ, ସେହିପରି ଭକ୍ତି ରସାଶ୍ରିତ । ଯେପରି –

"ଜୟ ଭକତବତ୍ସଳ ଜଗତ ଈଶ୍ୱର
ଦଶରଥ ନନ୍ଦନ ବନ୍ଦନ ଜନଙ୍କର ।
ବରଧନ ଅନନ୍ତ ଯଶ ଏ ଜଗତର
କର ଧନ ଅନନ୍ତ ସହଜ ଭକତର ।
ରକ୍ଷ ଚକ୍ରଧର କର ସକଳ ସମୟ
ରକ୍ଷଚକ୍ର ଦରକର ନବ ରସମୟ ।
ଲକ୍ଷଣବନ୍ତ ଅଲକ୍ଷ ଲପନ ସହଜ
ସକଳ ଲକ୍ଷଣବନ୍ତ ଲକ୍ଷ୍ମଣ ଅଗ୍ରଜ ।
ଧର୍ମବନ୍ତ ବରମଖ ରକ୍ଷଣ ତତ୍ପର
ଇନ୍ଦ୍ରପଦ ବହ ତପସ୍କର ସଙ୍ଗତର ।
ବଡ଼ ଦମ୍ଭପଣ ହତ କର ରକ୍ଷଗଣ
ଅଶରଣ ଶରଣ ଅମର ପ୍ରବରଣ ।" (ପ୍ରଥମ ଛାନ୍ଦ)

ଏହି କାବ୍ୟରେ ରାମ ଜନ୍ମଠାରୁ ଆରମ୍ଭ କରି ରାମଙ୍କ ବନବାସ, ରାବଣଦ୍ୱାରା ସୀତାହରଣ, ଯୁଦ୍ଧରେ ରାବଣବଧ, ସୀତାଉଦ୍ଧାର, ରାମସୀତାଙ୍କ ଅଯୋଧ୍ୟା ପ୍ରତ୍ୟାବର୍ତ୍ତନ, ରାମାଭିଷେକ ପର୍ଯ୍ୟନ୍ତ ବିଷୟ ବର୍ଣ୍ଣିତ । କାବ୍ୟଟିରେ କବିଙ୍କର ଉଚ୍ଚାଙ୍ଗ କବିତ୍ୱ ସହିତ ଶବ୍ଦ ପାଣ୍ଡିତ୍ୟର ଅପୂର୍ବ ନିଦର୍ଶନ ଦେଖିବାକୁ ମିଳେ । ଏହି କାବ୍ୟର ୪ର୍ଥ ଛାନ୍ଦରେ ବିରହୀ ରାମଚନ୍ଦ୍ର ବର୍ଷାକାଳ ଉପସ୍ଥିତ ହେବାରୁ କନ୍ଦର୍ପ ଜ୍ୱାଳାରେ ପୀଡ଼ିତ ହୋଇ କନ୍ଦର୍ପକୁ ସମ୍ବୋଧନ କରି ଯେପରି ସ୍ତବ କରିଛନ୍ତି, ତହିଁରୁ ତାଙ୍କର କଳ୍ପନାଚାତୁରୀ ଓ ଶବ୍ଦବିନ୍ୟାସର ଅପୂର୍ବ ସଫଳତା ଲକ୍ଷ୍ୟ କରାଯାଏ । ଯଥା –

"ଏ ସ୍ତବ କଥନ ସତ୍ୱର
ମମ ଏକଜନହର ଭ୍ରମ ନ କର ।
ଜନକସତ୍ୟ ବତ୍ସଳ          ଗମନ ଗହନ ସ୍ଥଳ
ଭସ୍ମଚର୍ମ ଜଟଧର ନଗ ଭବନ
ଅଳକତଳର ସତ          ଅର୍ଦ୍ଧ ଶଶଧର ବତ
ଦଗ୍ଧ ସ୍ୱର୍ଣ୍ଣବତ ଧନ ଦତ୍ତ ବସନ
ତବ ପରତ୍ରୟ ନୟନ, ଉତ୍ତଗ ଅଙ୍ଗଦ ବୃଷଧ୍ୱଜ ଉଲଗ୍ନ ।

ଚଳ ଚଳ ମନ ମଥ ରଜତସ୍ତବ ପ୍ରମଥ
ବରସଙ୍ଗ ଅନରଥ ସମର୍ଥପଣ
ଏକସ୍ଥ ଦସ୍ଥ ନମନ୍ଥ ଏ ଯଶ ପ୍ରକଟ ବ୍ୟର୍ଥ
ନବହ ନବହ ଏଣ ମଦ ଲକ୍ଷଣ
ସର୍ପସମ ପର ଅପର
ନକର ନକର ହତ ପଞ୍ଚମ ଶର ।"

ଏହି କାବ୍ୟଟିରେ ଶ୍ରୀରାମଙ୍କର ବସନ୍ତରେ ମଳୟ ପବନକୁ, ବର୍ଷାକାଳରେ ଜଳଧରକୁ, ଦୂତ କରି ଯେଭଳି ଭାବରେ ବିରହ ବେଦନାର ଚିତ୍ରଣ କରାଯାଇଛି, ତାହା ବେଶ୍ ମାର୍ମିକ । କାବ୍ୟଟିରେ ବର୍ଷା, ବସନ୍ତ, ଶରତ ଓ ଶୀତଋତୁ ବର୍ଣ୍ଣନା ବେଶ୍ ମଞ୍ଜୁଳ । "ଅବନାରସତରଙ୍ଗ" କବିଙ୍କର ଏକ ଉଲ୍ଲଖଯୋଗ୍ୟ ରାମକାବ୍ୟ । ସୂଚନାଯୋଗ୍ୟ ଯେ ନୟାଗଡ଼ ନିବାସୀ (ବିନାୟକପୁର ଶାସନ) ପଣ୍ଡିତ ବୀରମହାପାତ୍ର ଶର୍ମାଙ୍କ ଟୀକାସହ ଏହାର ଗୋଟିଏ ସଂସ୍କରଣ ପ୍ରକାଶିତ ।

**ରସପଞ୍ଚକ :**

ଏହି କାବ୍ୟଟି ସମ୍ପର୍କରେ ଉପେନ୍ଦ୍ର କହନ୍ତି – "ଅଳଙ୍କାରରୀତି ରସପଞ୍ଚକ" । କବି ଉପେନ୍ଦ୍ର ସଂସ୍କୃତ ଆଳଙ୍କାରିକ ଗ୍ରନ୍ଥ 'ସାହିତ୍ୟଦର୍ପଣ' ଓ 'ରସତରଙ୍ଗିଣୀ'ର ଅନୁସରଣରେ ଏହି ଗ୍ରନ୍ଥକୁ ରଚନା କରିଛନ୍ତି ବୋଲି ଉଲ୍ଲେଖ କରିଛନ୍ତି । କବି ଲେଖିଛନ୍ତି –

"ରୁଚ୍ୟବୋଲି ଛାନ୍ଦ ଚଉପଦୀ ଚଉତିଶା ଢଗ ପଞ୍ଚବିଧି ଗୀତେ ଥିବ
ରସପଞ୍ଚକ ବର୍ଣ୍ଣରେ ବର୍ଣ୍ଣନା ହେବାରୁ ରସପଞ୍ଚକ ଏ ବୋଲାଇବ ।
ରସ ତରଙ୍ଗିଣୀ ଗ୍ରନ୍ଥ ସାହିତ୍ୟ ଦର୍ପଣ କବି ସମ୍ମତିକି ଏ ଆସିବ
ରସାଇବ ଚିତ୍ତ ଗୀତ ନାୟିକା ନାୟକ ଲକ୍ଷଣରେ ପରିପୂର୍ଣ୍ଣ ହେବ ।"

କବିସମ୍ରାଟ୍ ର, ସ, ପ, ଞ୍ଚ, କ – ଏହି ପାଞ୍ଚଗୋଟିଏ ଅକ୍ଷରକୁ ଆଦ୍ୟାନୁପ୍ରାସରୂପେ ଗ୍ରହଣ କରି ଏହି ଅଳଙ୍କାର ଗ୍ରନ୍ଥଟିକୁ ରଚନା କରିଛନ୍ତି । ଏହି ଦୃଷ୍ଟିରୁ ଗ୍ରନ୍ଥଟିକୁ କବି ପାଞ୍ଚଟି ଭାଗରେ ବିଭକ୍ତ କରିଛନ୍ତି ଏବଂ ପ୍ରତ୍ୟେକ ଭାଗରେ ବହୁ ଉପବିଭାଗ ରହିଛି । ପ୍ରତ୍ୟେକ ଭାଗ ବା ପଞ୍ଚକରେ ବୋଲି, ଛାନ୍ଦ, ଚଉପଦୀ, ଚଉତିଶା ଓ ଢଗ – ଏହି ପାଞ୍ଚ ପ୍ରକାର ଗୀତ ସନ୍ନିବେଶିତ । ପ୍ରଥମ ପଞ୍ଚକରେ 'ର' କାର ବୋଲିରେ କାବ୍ୟର ନବରସ, ଛାନ୍ଦରେ ଉଦ୍ଦୀପନ,

ଆଲମ୍ବନ, ଚୌପଦୀରେ ନବାନୁରାଗ, ଚାଟୂକ୍ତି, ପଶ୍ଚାତ୍ତାପ, ଦୂତୀନିବେଦନ, ପ୍ରାପ୍ତିଇଛା, ଚଉତିଶାରେ ନାୟକର ତ୍ରିବିଧ ଚିଟାଉ, ଚାଟୁଲେଖନ ଏବଂ ଢଗରେ ନାୟକର ବିନୟ, କାମିନୀପୁଂସକ ଉକ୍ତିପ୍ରତ୍ୟୁକ୍ତି ବର୍ଣ୍ଣିତ ଦ୍ୱିତୀୟ ପଞ୍ଚକରେ ରତିଗୋପନାନାୟକ ନାୟିକାର ଭେଦ, ଯୌବନପ୍ରାପ୍ତି ପରେ ନାୟିକାର ମାନସିକ ଅବସ୍ଥା, ତୃତୀୟ ପଞ୍ଚକରେ ନାୟିକାର ଅଷ୍ଟାବିଂଶତି ପ୍ରକାର ସ୍ୱଭାବଜ, ଅଳଙ୍କାର, କେଳି, କାମର ଦଶଦଶା, ଅଷ୍ଟାସାତ୍ତ୍ୱିକ ଅନୁଭାବ ବର୍ଣ୍ଣିତ ।

ଚତୁର୍ଥ ପଞ୍ଚକରେ ଦିନାନ୍ତ ବର୍ଣ୍ଣନା, ଚାରିଚାରି ପ୍ରକାରର ନାୟକ, ନାୟିକାଭେଦ, ଅନୁରାଗ, ଦୋହଦ, ଦୂତୀ ଓ ବିଦୂଷକର ପ୍ରକାରଭେଦ ବର୍ଣ୍ଣିତ । ପଞ୍ଚମ ପଞ୍ଚକରେ କଳାକର ଉଦୟ ବର୍ଣ୍ଣନା, ବିଭିନ୍ନ ଦେଶ ସ୍ତ୍ରୀଲକ୍ଷଣ (ମାଳବ, ସିଂହଳ, କୋଶଳ, ମହାରାଷ୍ଟ୍ର, କଳିଙ୍ଗ) ଅଷ୍ଟଜାତି କରଜ ଚିହ୍ନ ଲକ୍ଷଣ (ଅଷ୍ଟପ୍ରକାର ଦନ୍ତକ୍ଷତଲକ୍ଷଣ, ଚୁମ୍ବନଲକ୍ଷଣ, ଆଠପ୍ରକାର ଆଲିଙ୍ଗନ ଲକ୍ଷଣ (କୁଚୋପଗୂହନ, ବିଟପାରୂଢ଼, ଉରଗୂପହନ, ଲାଲାଟିକ, ଦୁଗ୍ଧଜଳ, ତିଳତଣ୍ଡୁଳ, ଲତାବେଷ୍ଟନ, ଜଘନୋପଗୂହନ), ବାତ୍ସାୟନଙ୍କ କାମସୂତ୍ର ଅନୁସାରେ ରତି, ପ୍ରୀତିର ଭେଦ ବର୍ଣ୍ଣନା ରହିଛି ।

ଏହି ଗ୍ରନ୍ଥର ଶେଷଭାଗରେ କବି ନିଜର ବଂଶପରିଚୟ, ନିଜର ଶିକ୍ଷା, ପାଣ୍ଡିତ୍ୟ, କବିତ୍ୱଶକ୍ତି, ସାଧନା ଏବଂ ଲୋକମୁଖରେ ତାଙ୍କର ଅସାଧାରଣ ରଚନାଶକ୍ତିର ପ୍ରଶଂସାଦି ବିଷୟ ବର୍ଣ୍ଣନା କରିଛନ୍ତି । ଯଥା–

କଞ୍ଜେଶ ବଂଶ ହୋଇ ପ୍ରକାଶ । କ୍ରମେ ଘୁମୁସରେ ହେଲେ ନରେଶ ।
କୁନ୍ଦେନ୍ଦୁ କୀର୍ତ୍ତି ରଣରଣ କାନ୍ତି । ରଣେଶ୍ୱର ରଣଭଞ୍ଜ ନୃପତି ।
କୃଶାନୁତେଜ ତାଙ୍କ ତନୁଜ । କୃତରୁ ପ୍ରାପତ ପ୍ରତାପ ଭଞ୍ଜ ।
ବଳିଷ୍ଠ ସୁତ, ତାଙ୍କ ଭୂଭୃତ । କବି ଗୋପୀନାଥ ନାମ ବିଦିତ୍ ।
କବିନୃପବର ତାଙ୍କ କୁମର । ବହି ଧନଞ୍ଜୟ ନାମ ତାଙ୍କର ।
କାଶ୍ୟପୀକାନ୍ତ ତାହାଙ୍କ ସୁତ । କୃତଜ୍ଞ ନୀଳକଣ୍ଠ ଭଞ୍ଜ ସୁତ ।
କୁମର ଜ୍ୟେଷ୍ଠ ତାଙ୍କର ଶ୍ରେଷ୍ଠ । କବି ପଣରେ ଅତିପରିନିଷ୍ଠ ।
କାବ୍ୟ ନାଟକ ଅଳଙ୍କାର ଯାକ । କୋବିଦେ କେବଳ ବୋଲନ୍ତି ଏକ ।
କୋଷାଭିଧାନ ସାକ୍ଷାତ ଜନ । କବିତ୍ୱ ଛନ୍ଦ ବନ୍ଧେ କେ ସମାନ ।
କଥିତ କୀର୍ତ୍ତି ଗୀତେ ଏମିତି । କାଳିଦାସ ବାଣୀ ପରାୟ ସ୍ଫୁର୍ତ୍ତି ।

କଳାପିଙ୍ଗଳ ଶାସ୍ତ୍ରେ ଅନର୍ଗଳ । କେତେ ପ୍ରବନ୍ଧେ ପୂରାଇ ଭୂତଳ ।××
କୁତର୍କୀ ଭଞ୍ଜ ଉପେନ୍ଦ୍ର ଭଞ୍ଜ । କରେ ଧ୍ୟାନ ତାଙ୍କ ଚରଣ କଞ୍ଜ ।

## ଗୀତାଭିଧାନ :

କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ ପଦ୍ୟରେ ଯେଉଁ କ୍ଷୁଦ୍ର ଶବ୍ଦ କୋଷଗ୍ରନ୍ଥଟି ରଚନା କରିଛନ୍ତି, ତାହାହିଁ ହେଉଛି 'ଗୀତାଭିଧାନ' । ଏହି ଗ୍ରନ୍ଥ ସମ୍ପର୍କରେ ଉପେନ୍ଦ୍ର ଲେଖିଛନ୍ତି – "ନାନା କୋଷଶବ୍ଦେ ଗୀତାଭିଧାନ" । ଉପେନ୍ଦ୍ର ସମସ୍ତ ଶବ୍ଦକୋଷକୁ ଅଧ୍ୟୟନ କରିଥିଲେ । ସେ ଅମରସିଂହଙ୍କ 'ଅମରକୋଷ', ଶାଶ୍ୱତଙ୍କର 'ଅନେକାର୍ଥ ସମୁଚ୍ଚୟ', ଯାଦବ ପ୍ରକାଶଙ୍କର 'ବୈଜୟନ୍ତୀ', ମହେଶ୍ୱର ଆଚାର୍ଯ୍ୟଙ୍କର 'ବିଶ୍ୱପ୍ରକାଶ" ମେଦିନୀକରଙ୍କର 'ମେଦିନୀକୋଷ' ଏବଂ ପୁରୁଷୋତ୍ତମଙ୍କର 'ତ୍ରିକାଣ୍ଡ କୋଷ' – ଏହି ଷଟ୍‌କୋଷ ଅଧ୍ୟୟନ କରିଥିଲେ । ଶବ୍ଦ ଉପରେ ଉପେନ୍ଦ୍ରଙ୍କର ଅସାଧାରଣ ଦଖଲ ଥିବାରୁ ସେ କହିଥିଲେ – "କହେ ଉପଇନ୍ଦ୍ର ଭଞ୍ଜ ମୁଁ ଲଭିଛି ଶବଦସାଗର ପାର ।"

ଉପେନ୍ଦ୍ର ହେଉଛନ୍ତି କବିଗୁରୁ । ସେ କବିମାନଙ୍କର କାବ୍ୟରଚନା ଓ ପାଠକମାନଙ୍କର ଅବବୋଧ ପାଇଁ 'ଗୀତାଭିଧାନ' ଗ୍ରନ୍ଥ ରଚନା କରିଥିଲେ । କବି ଉପେନ୍ଦ୍ର 'ଗୀତାଭିଧାନ' ଗ୍ରନ୍ଥ ସମ୍ପର୍କରେ ସୂଚାଇଛନ୍ତି –

"ଗୀତ ଅଭିଧାନ ହୋଇ ସାବଧାନ ଶୁଣ ସୁଜନେ ସନ୍ତୋଷେ
ଅମର, ତ୍ରିକାଣ୍ଡ, ଯାଦବ, ଶାଶ୍ୱତ, ମେଦିନୀ, ବିଶ୍ୱପ୍ରକାଶେ ।
ପ୍ରଚୁର ଶବଦ ଯେତେ ତା' କହିବା ଛାଡ଼ି ଅପ୍ରଚୁର ମାନ
ବୁଝାଇଲେ ମୂର୍ଖେ ବୁଝିବେ ଅକ୍ଲେଶେ ସ୍ୱଭାବେ କୋବିଦ ଜନ ।
କ – ଠାରୁ କ୍ଷ– ଯାଏ ପ୍ରାନ୍ତାକ୍ଷର ଘେନି ବର୍ଗ ବର୍ଗ ଏ ହୋଇବ
ଏକା ଶବଦକୁ ନାନାର୍ଥେ ବୁଝାଇ କବିଙ୍କି ପ୍ରମୋଦ ଦେବ ।"

(୧ମ ଛାନ୍ଦ)

କବି ଉପେନ୍ଦ୍ର 'କ' ଠାରୁ 'କ୍ଷ' ପର୍ଯ୍ୟନ୍ତ ବର୍ଣ୍ଣଭେଦରେ ଶବ୍ଦଗୁଡ଼ିକୁ ସଜିତ କରି ପ୍ରତ୍ୟେକ ଶବ୍ଦର ନାନା ଅର୍ଥ ଉଲ୍ଲେଖ କରିଛନ୍ତି । ଯଥା –

'କ ବୋଲି ପବନ ଜଳକୁ କ ବୋଲି ବ୍ରହ୍ମାକୁ ଶିରକୁ ସତ
କୁ ବୋଲି କୁତ୍ସିତ କଥାକୁ ପୃଥ୍ୱୀକି ଶୁଣ ବୁଧେଦେଇ ଚିତ୍ତ
ଅର୍କ ବୋଲି ଅର୍କ ପର୍ଣ୍ଣୀକି ରବିକି ତାମ୍ର ସ୍ଫଟିକ ଇନ୍ଦ୍ରକୁ
ଅଙ୍କ ବୋଲି ଜାଣ କ୍ରୋଡ଼, ଚିହ୍ନ, ପାପ, ଦୁଃଖ, ଦୂଷଣ ରେଖାକୁ ।'

ଏହି ଗୀତ-ଅଭିଧାନ ଗ୍ରନ୍ଥ ରଚନା କରିବା ପାଇଁ ଅନେକ ଅଭିଧାନ ଗ୍ରନ୍ଥ ଅଧ୍ୟୟନ କରି ସାର ସାର ବିଷୟକୁ ସ୍ଥାନିତ କରାଯାଇଛି ବୋଲି କବି ଉଲ୍ଲେଖ କରିଛନ୍ତି । ଏହିପରି ଶବ୍ଦ ସମୁଦ୍ରକୁ ପାରିହୋଇଥିବାରୁ କବି ଅନେକ ଶ୍ଳାଘ୍ୟ ଅନୁଭବ କରିଛନ୍ତି । ଏହି 'ଗୀତାଭିଧାନ' ଗ୍ରନ୍ଥ ଉଭୟ ମୂର୍ଖ ଓ ବୁଧ ଶ୍ରେଣୀଙ୍କ ପାଇଁ ଉଦ୍ଦିଷ୍ଟ । କବି ଗ୍ରନ୍ଥର ଶେଷ ଭାଗରେ କହିଛନ୍ତି –

"ନାନାର୍ଥ ଗୀତ – ଅଭିଧାନ କଲି ମୁଁ ସାରସାର ଯେତେବାଛି
ଶବ୍ଦ ସମୁଦ୍ରବତ ପାରହେବାକୁ କାହାର ସାମର୍ଥ୍ୟ ଅଛି ?
ମନଦେଲେ ମୂର୍ଖେ ପଣ୍ଡିତ ହୋଇବେ ବୁଧେ କରିବେ ପ୍ରଶଂସା
ସଂସ୍କୃତ ଲିଙ୍ଗ ସଂଗ୍ରହରେ ଅବ୍ୟକ୍ତ ବୋଧକ ପ୍ରାକୃତ ଭାଷା ।
କ ଠାରୁ କ୍ଷ ଯାଏ ବର୍ଣ୍ଣ ବିରଚନା ଅକ୍ଷର ଧରି ହେଜିବ
କହେ ଉପଇନ୍ଦ୍ର ଭଞ୍ଜ ବୀରବର ଲୋଡ଼ା ଶବ୍ଦକୁ ଘେନିବ ।"

ଗୀତ ଦ୍ୱାରା ଅଭିଧାନ ରଚନା କରିବା କ୍ଷେତ୍ରରେ ଉପେନ୍ଦ୍ର ଭଞ୍ଜ ହେଉଛନ୍ତି ପ୍ରଥମ ବ୍ୟକ୍ତି । ସୁତରାଂ ଏ କ୍ଷେତ୍ରରେ ସେ ପଥପ୍ରଦର୍ଶକ ବୋଲି ସ୍ୱୀକାର କରାଯାଇଛି ।

## ଚିତ୍ରକାବ୍ୟ ବନ୍ଧୋଦୟ :

ଉପେନ୍ଦ୍ର ଥିଲେ ଅଦ୍ଭୁତ ସର୍ଜନଶୀଳ ସ୍ରଷ୍ଟା । ଛାନ୍ଦପରେ ଛାନ୍ଦ, କାବ୍ୟ ପରେ କାବ୍ୟ ରଚନା କରିବାପରେ ଭଞ୍ଜ କାବ୍ୟ ମାନସ ଚିତ୍ର କବିତ୍ୱ ପ୍ରତି ଆକର୍ଷିତ ହୋଇଥିଲା । ତେଣୁ କବିଙ୍କର ସ୍ୱୀକାରୋକ୍ତି –

"ଏତେ ପ୍ରକାରେ କରି ଛାନ୍ଦ ଗୀତ
ଚିତ୍ର କବିତ୍ୱେ ବଳାଇଲି ଚିତ୍ତ ।
ଚିତ୍ରବୋଲି କହି ଏତେ କଥାକୁ
ଏକେକେ ମୋହି ପାରନ୍ତି ମନକୁ ।
ଛାନ୍ଦ ବନ୍ଧ ହୋଇ ବେନି ପ୍ରକାର
କେ କେତେ ଛନ୍ଦ କେତେ ବନ୍ଧସର ।
ଶାର୍ଦ୍ଦୁଳକ୍ରୀଡ଼ିତ ମଣ୍ଡୁକପ୍ଲୁତି
ଲୋମ ବିଲୋମ ତୁରଙ୍ଗମ ଗତି ।
ବହିର୍ଲିପିକା ଜାଣ ଜାତି ପାଞ୍ଚ
ଷଟ ପ୍ରକାରେ ଅନ୍ତର୍ଲିପି ସଞ୍ଚ ।

ପ୍ରଶ୍ନ ଉତ୍ତର ଅଜା-ମେଷ ଯୁଦ୍ଧ
ଯମକ ରୀତି ପଦଛେଦ ସିଦ୍ଧ ।×××
ବନ୍ଧବୋଲିଟି ଏମାନଙ୍କୁ କହି
ଏତେ ଲକ୍ଷଣମାନ ଥାଇ ଯହିଁ ।
ଅମ୍ବୁଜ ଚକ୍ରବନ୍ଧ ବହୁବିଧି
କମ୍ବୁ ଶମ୍ଭୁ ଗଦା ଶୂଳ ପ୍ରସିଦ୍ଧି ।
ରଥବନ୍ଧ ଅଛି ତିନି ବିଧାନ
ଚନ୍ଦ୍ରସୂର୍ଯ୍ୟ ଚତୁଷ୍କ ସ୍ୟନ୍ଦନ ।
ପରଶୁ ଖଡ଼୍‌ଗ ହାର କବାଟ
ସର୍ବତେ ଭଦ୍ର ସୁକଙ୍କଣ ଅଟ । (ଇତ୍ୟାଦି)

ଏହି ଗ୍ରନ୍ଥଟି କେବଳ ପଣ୍ଡିତ ଓ କାବ୍ୟାମୋଦୀ ବିଦଗ୍ଧଙ୍କ ପାଇଁ ଅଭିପ୍ରେତ ବୋଲି କବି ଉଲ୍ଲେଖ କରିଛନ୍ତି –

"ଏଥୁ ଅନନ୍ତେ ମେଧାବୀ ସୁବୁଦ୍ଧି, ବୁଝ ଚିତ୍ରପ୍ରବନ୍ଧ ବନ୍ଧବିଧି ।
ଛନ୍ଦମଞ୍ଜରୀ ଛାନ୍ଦ ରତ୍ନାକର, ଯେତେ ବିଦଗ୍ଧ ମଣ୍ଡନ – ବିଚାର ।
ଶିକ୍ଷାଥିଲା ଜନ ଦେଖ ଏ ପୋଥି, ହେବ ନୋହିଲେ ସିନା ଏଥି ମତି ।
ଦ୍ୱିଜହୀନ ଜନ ଯଥା ଅଭଗ୍ନ, ପୂଗ ଚର୍ବଣେ ମୂର୍ଖ ହୁଏ ଭଗ୍ନ ।
ଏହା ଜାଣି ଜାଣି ଆଣି ବିଚାରି, ନ କହିବଟି ଗୀତ ଆଗ କରି ।"

ଏହି କାବ୍ୟର ପ୍ରଥମ ଛାନ୍ଦରେ କବି ଆହାରୀରାଗ ଓ ରୋତାବାଣୀରେ ତାଙ୍କ ଇଷ୍ଟଦେବତାଙ୍କୁ ନିମ୍ନଭାବରେ ବନ୍ଦନା କରିଛନ୍ତି –

"ଚନ୍ଦ୍ରବତ କୀରତି ରାମଚନ୍ଦ୍ର । ଇନ୍ଦ୍ର ବିପଦହାରୀ ରାଜଇନ୍ଦ୍ର ।
ସୀତାଂଶୁ ଶିତାମ୍ବୁଜମୁଖୀ ସୀତା । ନିତାନ୍ତ ଯାହାର ପ୍ରିୟବନିତା ।
ରଥିମାନଙ୍କ ଶ୍ରେଷ୍ଠ ଦାଶରଥି । ପଥିକ ବନେ ଦୈତ୍ୟ ପରିପନ୍ଥୀ ।
ଦରନାଶନ ହାସଜିତ ଦର । ଧରଣୀକରତା କୋଦଣ୍ଡଧର ।
ହରିଜିତ ଠାଣି ସାକ୍ଷାତ ହରି । କରିକି ଗତିକି ସମାନ କରି ।
କଞ୍ଜନୟନ ଚରଣ ପଙ୍କଜ । ଭଞ୍ଜ ଉପଇନ୍ଦ୍ରର ଦୁଃଖ ଭଞ୍ଜ ।"

ଚିତ୍ରକବିତା ସୃଷ୍ଟିରେ କବି ଉପେନ୍ଦ୍ର ସଂସ୍କୃତ କବିକଳ୍ପଲତା, ସାହିତ୍ୟରତ୍ନାକର, ମାଘକାବ୍ୟ, ଛାନ୍ଦମଞ୍ଜରୀ, ଛାନ୍ଦରତ୍ନାକର ପ୍ରଭୃତିକୁ କାବ୍ୟିକ ଆଦର୍ଶ ଭାବରେ ଗ୍ରହଣ କରିଛନ୍ତି । ତେଣୁ କବିଙ୍କର ସ୍ୱୀକାରୋକ୍ତି ହେଲା –

"ଭେଦମାନ ପୁଣି ଅପାର ଅଛି
ଯେଉଁ କବିଯେତେ ଭେଦି ପାରିଛି ।
କବିକଳ୍ପଲତା ମତେ ଏ ଭାବେ
ସାହିତ୍ୟ ରତ୍ନାକର ମାଘକାବ୍ୟେ ।"

କବି ଏହି ଗ୍ରନ୍ଥରେ ଶାର୍ଦ୍ଦୂଳବିକ୍ରୀଡ଼ିତ, ମଣ୍ଡୁକପ୍ଳୁତି, ଲୋମବିଲୋମ, ତୁରଙ୍ଗମଗତିଛନ୍ଦ, ପାଞ୍ଚପ୍ରକାର ବହିର୍ଲିପିକା, ଛଅପ୍ରକାରର ଅନ୍ତର୍ଲିପିକା, ଅବନା, ବନା, ଏକାକ୍ଷର, ଦ୍ୱି-ଅକ୍ଷର, ସକାରତ୍ରୟ, ସଓଷ୍ଠ୍ୟ, ନିରୋଷ୍ଠ୍ୟ, ଲୋମବିଲୋମ ଇତ୍ୟାଦିର ବିବିଧ ଉଦାହାରଣ ପ୍ରଦାନ କରିଛନ୍ତି । ଯଥା –

**ଅବନା–** କୁଚଚୟ ନବଘନ ଉଜ୍ଜ୍ୱଳ, ଲପନ ତର ଅମଳକମଳ ।
ଶଶଧର ଦରପଣ ଗଞ୍ଜନ, ଅକ୍ଷ ଖଞ୍ଜନ ଗଞ୍ଜନ ରଞ୍ଜନ ।

**ବନା–** ବିଦେଶେ ରହି କେବଣ ନାଗର, ବନାରେ ଭାଷଇ ଧନୀକି ତାର ।
ଶୋଭାରେ ମୋହିପାରେ ସେ ଶୂଳିକି, ନାହିଁ ନାହିଁ ଲୋକେ ତୁଳାବାଳୀକି ।

**ଏକାକ୍ଷର –**

ହାହାହାହାହା ହୁଁ ହୁଁ ହୁଁ ହୁଁ ହୁଁ ହୁଁ
ହଁ ହଁ ହଁ ହଁ ହଁ ହୁଁ ହୁଁ ହୁଁ ହୁଁ ହୁଁ ହୁଁ ।

ଏହାବ୍ୟତୀତ କବି ଉପେନ୍ଦ୍ର ଏଥିରେ ୮୩ ଗୋଟି ବନ୍ଧର ବର୍ଣ୍ଣନା କରିଛନ୍ତି । ଏଥିରେ ଅଟାଳୀ, ସୂର୍ଯ୍ୟରଥ, ପ୍ରାସାଦ, ପୀଢ଼ପ୍ରାସାଦବନ୍ଧ, ବିମାନ, ମଣ୍ଡପ, ରଥ, ମହାରଥ, ପୁଷ୍କରଥ, ଚକ୍ର, ଶୂଳ, ଖଡ୍‌ଗ, ପୁଚ୍ଛ, ପରଶୁ, ମତ୍ସ୍ୟ, ଶଙ୍ଖ, କବାଟ, ଗଦା, ଡମ୍ବରୁ, ଶକଟ, କୂର୍ମ, କାତି, ଧନୁ, ଲତା, ଅଜାଯୁଦ୍ଧ, ସ୍ୱସ୍ତିକ, ଲଙ୍ଗଳ, ଚାମର, ଛୁରିକା, ଛତ୍ର, ବହିତ୍ର, ଜଗତୀ, ପର୍ଯ୍ୟଙ୍କ, ବୃକ୍ଷବନ୍ଧ ଇତ୍ୟାଦି ସ୍ଥାନିତ ।

'ଚିତ୍ରକାବ୍ୟ ବନ୍ଧୋଦୟ' ଭଞ୍ଜୀୟ ମାନସର ଏକ ଅମଳିନ କୃତି ।

## ରାମଲୀଳାମୃତ :

'ରାମଲୀଳାମୃତ' କାବ୍ୟଟି ଚଉଦଗୋଟି ଛାନ୍ଦରେ ପରିକଳ୍ପିତ । ରାମାୟଣର ଆଦ୍ୟକାଣ୍ଡରୁ ଶ୍ରୀରାମଚନ୍ଦ୍ରଙ୍କ ଜନ୍ମଠାରୁ ପର୍ଶୁରାମଙ୍କ ଦର୍ପଭଞ୍ଜନ ପର୍ଯ୍ୟନ୍ତ ବିଷୟ ଏହି କାବ୍ୟରେ ସ୍ଥାନିତ । ଏଥିରେ ଶ୍ରୀରାମଙ୍କ ଜନ୍ମ, ବାଲ୍ୟଶିକ୍ଷା, ବିଶ୍ୱାମିତ୍ରଙ୍କ ଯାଗରକ୍ଷା ପାଇଁ ନିମନ୍ତ୍ରଣ, ତାଡ଼କୀଅସୁର ବଧ, ଅହଲ୍ୟାଉଦ୍ଧାର,

ମିଥିଳାରେ ଶିବଧନୁ ଭଗ୍ନ ଓ ସୀତାବିବାହ, ପିତାଙ୍କ ସହ ମିଥିଳାରୁ ଅଯୋଧ୍ୟା ଫେରିବା ବାଟରେ ପର୍ଶୁରାମଙ୍କ ଗର୍ବଗଞ୍ଜନ ପ୍ରସଙ୍ଗ ପର୍ଯ୍ୟାୟକ୍ରମେ ବର୍ଣ୍ଣନା କରାଯାଇଛି । 'ରାମଲୀଳାମୃତ' କାବ୍ୟର ଛାନ୍ଦଗୁଡ଼ିକ ଯଥାକ୍ରମେ ମଙ୍ଗଳଗୁଜ୍ଜରୀ, ରାମକେରୀ, ବଙ୍ଗଳାଶ୍ରୀ, ବସନ୍ତବରାଡ଼ି, ଚୋଖି, କୌଶିକ, କଲ୍ୟାଣଆହାରୀ, ବରାଡ଼ି, ମାଳବ, ଘଣ୍ଟାରବ, ନଳିନୀଗୌଡ଼ା, କେଦାର, ଶଙ୍କରାଭରଣ, ପାହାଡ଼ିଆକେଦାର ରାଗରେ ରଚିତ ହୋଇଛି । ଏହି କାବ୍ୟଟି ପାଞ୍ଚଶହ କୋଡ଼ିଏ ପଦରେ ରଚିତ ହୋଇଛି । କାବ୍ୟଟିର ଚଉଦଟି ଛାନ୍ଦର ଏଗାରଟି ସ୍ଥାନରେ କବି 'ବୀରବର' ପଦବୀକୁ ବ୍ୟବହାର କରିଛନ୍ତି । କବିଙ୍କର ପ୍ରସିଦ୍ଧ କାବ୍ୟ 'ବୈଦେହୀଶ ବିଳାସ'ର ପ୍ରଥମ ଷୋଳଟି ଛାନ୍ଦର ବର୍ଣ୍ଣିତ ବିଷୟ ବସ୍ତୁ ସହିତ ଏହି କାବ୍ୟର ସାମଞ୍ଜସ୍ୟ ରହିଛି ।

କବି ଉପେନ୍ଦ୍ର ଏହି କାବ୍ୟରେ ହରିହରଙ୍କର ସୂଚନା ଦେବା ସଙ୍ଗେ ସଙ୍ଗେ ବୈଷ୍ଣବ, ଶୈବ, ଶାକ୍ତ, ଗାଣପତ୍ୟ ଧର୍ମ ସମ୍ପ୍ରଦାୟର ଉଲ୍ଲେଖ କରିଛନ୍ତି । କାବ୍ୟଟିର ଶେଷ ଛାନ୍ଦ ଅର୍ଥାତ୍ ଚଉଦ ଛାନ୍ଦର ମନୋହାରିତା ସମ୍ପର୍କରେ କବି ଉଲ୍ଲେଖ କରିଛନ୍ତି –

"ମୋହୁ ଭୁବନ ଚଉଦ ଛାନ୍ଦ    ଗୀତ ରଞ୍ଜନ ପଦକୁପଦ
ସୁବୁଦ୍ଧି କାବ୍ୟ ପ୍ରଶଂସା ଏଥି ନିଶ୍ଚେ ସମ୍ଭବ ଯେ,
ଘେନିବେ ସହୃଦୟ ଭାବରେ    କହିବେ ସାଧୁ କବି ମୁଖରେ
ଏ ପ୍ରୀତିପଦ ଅର୍ଥ ବୁଧକୁ ବୋଧ କରିବ ଯେ ।"

ପୁନଶ୍ଚ କବି ଲେଖିଛନ୍ତି –

"ରାମଲୀଳାମୃତ ଏ ଗୀତାଭିଧାନଯେ
ଧନଞ୍ଜୟ ନୃପତି ସୁତନନ୍ଦନ ଯେ
ସୁକବି ଭଞ୍ଜବୀରବରର    ରଚନା ହେଉ ଲୋକପ୍ରଚାର
ଶ୍ରୁତି ଲପନେ କୋବିଦମାନେ କରନ୍ତୁ ଧ୍ୟାନହେ ।"

'ରାମଲୀଳାମୃତ' କାବ୍ୟର ଭାଷା ମାର୍ଜିତ, ସରସ ଓ ରୁଚିପୂର୍ଣ୍ଣ । ଏଥିରେ ଅଳଙ୍କାରବିନ୍ୟାସରେ ଆଧିକ୍ୟ ପରିଲକ୍ଷିତ ହୁଏ ନାହିଁ । ରାମଚରିତ ଧାରାରେ ଏହା ଏକ ଉଲ୍ଲେଖଯୋଗ୍ୟ କୃତି । ୧୮୯୬ ମସିହାରେ ଗୋବିନ୍ଦ ରଥଙ୍କ ଦ୍ୱାରା ଏହା ପ୍ରଥମେ ପ୍ରକାଶିତ ହୋଇଥିଲା ।

## ବୈଦେହୀଶ ବିଳାସ :

କବି ଉପେନ୍ଦ୍ର ଭଞ୍ଜଙ୍କର ଶେଷ କୀର୍ତ୍ତି ହେଉଛି 'ବୈଦେହୀଶବିଳାସ' । ଉପେନ୍ଦ୍ରଙ୍କ କାବ୍ୟ ସାଧନାର ସକଳ ସିଦ୍ଧି ଲାଭ କରିଥିବା ଏହି ପ୍ରସିଦ୍ଧ କାବ୍ୟଟି ଭାରତୀୟ ସାହିତ୍ୟରେ ଏକ ବିରଳ କାବ୍ୟକୃତି । 'ବୈଦେହୀଶ ବିଳାସ' ପରି ଉଚ୍ଚାଙ୍ଗ କାବ୍ୟ ସର୍ଜନା କରି ଉପେନ୍ଦ୍ର କୋବିଦ ମଣ୍ଡଳୀଙ୍କର ହୃଦୟ ସିଂହାସନରେ ଅମୃତର ଆସନ ପାତି ବସିଛନ୍ତି । ଏହି ଗ୍ରନ୍ଥ ସମ୍ପର୍କରେ ଉପେନ୍ଦ୍ର ଲେଖିଛନ୍ତି –

"ବୈଦେହୀଶ ବିଳାସ ଏ ଗୀତ ମନୋରମ
ବାନ ଛାନ୍ଦେ ଶେଷଆଦ୍ୟ ବକାରେ ନିୟମ ଯେ ।" (୫୨ ଛାନ୍ଦ)
"ବଇଦେହୀଶବିଳାସ ନାମଗୀତ 'ବ'କାରେ ରଚନ
ବାନପଦେ ଛାନ୍ଦ ଉପଇନ୍ଦ୍ରକୃତ ବୁଝିବ ସୁଜନ ।" (୨୪ଶ ଛାନ୍ଦ)

ରାମଭକ୍ତିର ଶ୍ରେଷ୍ଠ ନିଦର୍ଶନ ହେଉଛି ଏହି କାବ୍ୟ । 'ବୈଦେହୀଶବିଳାସ' କାବ୍ୟ ଉପେନ୍ଦ୍ର କାବ୍ୟ ସାଧନାର ସର୍ବୋତ୍ତମ ଓ ଶ୍ରେଷ୍ଠ ସିଦ୍ଧି । ଉପେନ୍ଦ୍ର ସ୍ୱୟଂ ଲେଖିଛନ୍ତି –

"ବୀରବର ପଦ ଉପଇନ୍ଦ୍ର ମୋ ନାମ
ବାରେ ବାରେ ସେବାରେ ମନାଇ ସୀତାରାମ ଯେ ।
ବିଚିତ୍ର କବିତ୍ୱ ମାର୍ଗେ ପ୍ରସରିଲା ବୁଦ୍ଧି
ବିରଚିଲି ରାମାୟଣ ଏ ମୋ ବଡ଼ ସିଦ୍ଧି ଯେ ।" (୫୨ ଛାନ୍ଦ)

କବି ଉପେନ୍ଦ୍ର ଥିଲେ ରାମାନନ୍ଦୀ ପନ୍ଥୀ ବୈଷ୍ଣବ । ସେ ଜୀବନରେ ରାମତାରକ ମନ୍ତ୍ର ସିଦ୍ଧ କରିଥିଲେ । ତେଣୁ ସୀତାଶ୍ରୀରାମଙ୍କ ପବିତ୍ର ଚରିତକୁ କାବ୍ୟରେ ପ୍ରକାଶ କରିବାକୁ ସେ ମନ ବଳାଇଥିଲେ । କବି ଲେଖିଛନ୍ତି –

"ବଳାଇ ଚିତ୍ତ ଅନବରତ ଭାଗ୍ୟେ ଗ୍ରହଣ ତାରକ ମନ୍ତ୍ର
ସୀତା ଶ୍ରୀରାମ ଚରିତଗୀତ କୃତେ ଲାଳସ ଯେ ।" (୧ମ ଛାନ୍ଦ)

"ବୈଦେହୀଶବିଳାସ" ଏକ ଦୋଷମୁକ୍ତ କାବ୍ୟ । ଏଥିରେ ବିଷ୍ଣୁରୂପୀ ଶ୍ରୀରାମଚନ୍ଦ୍ରଙ୍କର ଚରିତ ବର୍ଣ୍ଣନା କରାଯାଇଥିବାରୁ ଏହା ବିଦୂଷଜନଙ୍କୁ ଆନନ୍ଦ ପ୍ରଦାନ କରିବ । କବିଙ୍କ ଭାଷାରେ –

"ବିଦୂଷ ! ଦୂଷଣ ବିବର୍ଜିତ ଗୀତେ ରସ
ବିଷ୍ଣୁ ଚରିତ ଦ୍ୱରିତ କରିବ ହରଷ ଯେ ।" (୨ୟ ଛାନ୍ଦ)

"ବୈଦେହୀଶ ବିଳାସ" କାବ୍ୟର ପ୍ରଥମ ଛାନ୍ଦରେ କବି ଯେଉଁ ମଙ୍ଗଳାଚରଣ କରିଛନ୍ତି ତାହା ଅତ୍ୟନ୍ତ ଉଚ୍ଚକୋଟୀର । ଏହି ଛାନ୍ଦର ପ୍ରଥମ ଦୁଇଟି ପଦରେ କବି କେବଳ ଜଣେ ମାତ୍ର ଦେବତାଙ୍କର ବନ୍ଦନା କରିନାହାନ୍ତି । 'ଶ୍ଳେଷ ଅଳଙ୍କାର' ଓ ଆଶୟବଳରେ କବି ଉପେନ୍ଦ୍ର ରାମଚନ୍ଦ୍ର, ବିଷ୍ଣୁ, ଶିବ, ଦୁର୍ଗା, ଗଣେଶ ସୂର୍ଯ୍ୟ, ବ୍ରହ୍ମା ଓ ଜଗନ୍ନାଥ – ଏହି ଆଠଗୋଟି ଦେବତାଙ୍କର ବନ୍ଦନା କରିଛନ୍ତି । କବି ଭକ୍ତିପ୍ରବଣ ହୃଦୟରେ ଗାଇଛନ୍ତି –

"ବନ୍ଦଇ ଦୀନବାନ୍ଧବ ହରି ଯେ ତମଚକ୍ର ଖଣ୍ଡନକାରୀ
ସଦାକମଳାନନ୍ଦ ବିସ୍ତାରି ସ୍ୱଭାବେ ଇନଯେ,
ବିଭୁ ଅନନ୍ତ ଅଙ୍କ ବିହାରୀ କର ପ୍ରତାପଯାର ସଂଚରି
ନିଶାଚରଙ୍କ ଉଲ୍ଲାସ ହରି ପୂଜେ ସୁମନ ଯେ
ବଇନତେୟ ଯାହା ଅଗ୍ରତେ ସ୍ଥିତ ଯେ
ବଇକୁଣ୍ଠ ପକ୍ଷକ ଲୋକ ତୋଷିତ ଯେ
ବିକାଶ ଅଖଣ୍ଡିତ ମଣ୍ଡଳେ ସିଂହଭାବରେ କ୍ରୀଡ଼ିତକାଳେ
ଭବେ ତରଣି ହୋଇ ମଞ୍ଜୁଳେ ଗିରି ଉଦିତ ଯେ
ବହିତ ଯେହୁ ରୋହିତ ମୂର୍ତ୍ତି ଶ୍ରୁତିରଞ୍ଜନ କାରକ ଅତି
ହଂସ ହୋଇଣ ଯାହା ପ୍ରଶସ୍ତି ଅଛି ପ୍ରବର୍ତ୍ତି ଯେ ।
ବିରାଜ ରୂପ ଯାହାର ପୁଣି ଦ୍ୱିଜଚକ୍ର ଯା' ଦର୍ଶନ ଗୁଣି
ଆତ୍ମଭୂପର ସଂସାରେ ଭଣି କି ଶୁଭ୍ରକୀର୍ତ୍ତି ଯେ ।
ବୁଧଜନକ ଶିରୋଭୂଷଣ ଯେହି ଯେ
ବିନୟରୁ ବଚନ ଆନ ନ କହି ଯେ
ବଳି ଯାହାକୁ ସର୍ବଦା ନାହିଁ ଦ୍ୱୀପପ୍ରସନ୍ନ କରତା ସେହି
ପୁନତଧର୍ମ ସ୍ୱରୂପଗ୍ରାହୀ କି ସ୍ତୁତି ତହିଁ ଯେ ।" (୧ମ ଛାନ୍ଦ)

ମହାକବି ଉପେନ୍ଦ୍ର ଏ ଦେଶରେ ରାମାୟଣର ରଚନା ପରମ୍ପରା ସମ୍ପର୍କରେ ଉଲ୍ଲେଖ କରିଛନ୍ତି । କବିଙ୍କ ଭାଷାରେ –

"ବାଲ୍ମୀକି ବ୍ୟାସ କବି ଯହିଁରେ ମହାକାବ୍ୟକେ ପୁରାଣ କରେ
ମହାନାଟକ ବାତସୁତରେ ହେଲେ ରଚିତା ଯେ ।
ବିହିଲେ କାବ୍ୟ ଯେ କାଳିଦାସେ ଚମ୍ପୂରଚନା ଭୋଜନରେଶେ
କୃପାସିନ୍ଧା ଏ ଗୀତପ୍ରକାଶେ ଛାଡ଼ିଲି ଚିନ୍ତା ଯେ ।

ବିବେକ ହିଁ ଉଦୟ ଏମନ୍ତ ଧାୟି ଯେ ।
ବ୍ୟୋମେ ତାରକା ଯେବେ ଝଲକୁ ଥାଇ ଯେ ।
ବିଭାବରୀରେ ଜ୍ୟୋତିରିଙ୍ଗଣ ଗଣଜ୍ୟୋତିକି ଦେଖାନ୍ତି ପୁଣ
ସୁଜନେ ସାବଧାନରେ ଶୁଣ ଛାନ୍ଦ ରଚଇ ଯେ ।"

(ବୈ.ବି. - ୧ମ ଛାନ୍ଦ)

ଶ୍ରୀରାମଚରିତ ଅତ୍ୟନ୍ତ ପୁଣ୍ୟ ଓ ପବିତ୍ର । ଶ୍ରୀରାମ ନାମ ଏତେ ଦିବ୍ୟ ଓ ପାବନ ଯେ ମହାଦେବ ନିତ୍ୟ ନିରନ୍ତର ଏହି ରାମନାମକୁ ଉଚ୍ଚାରଣ କରୁଛନ୍ତି । କୁହାଯାଇଛି –

"ରାମ ରାମେତି ରାମେତି ରମେ ରାମେ ମନୋରମେ
ସହସ୍ର ନାମ ତତ୍ତୁଲ୍ୟ ରାମ ନାମ ବରାନନେ ।"

(ଶ୍ରୀ କୌଶିକ ମୁନି ବିରଚିତ ଶ୍ରୀରାମ ରକ୍ଷା ସ୍ତୋତ୍ରମ୍, ଶ୍ଳୋକ -୩)

ଅର୍ଥାତ୍ ସ୍ୱୟଂ ମହାଦେବ ପାର୍ବତୀଙ୍କୁ କହୁଛନ୍ତି – "ହେ ସୁମୁଖୀ! ରାମନାମ ହେଉଛି ବିଷ୍ଣୁ ସହସ୍ରନାମ ସମାନ । ମୁଁ ସର୍ବଦା ରାମରାମ ରଟି ଏପରିଭାବରେ ମନୋରମ ରାମ ନାମରେ ରମଣ କରୁଛି ।" ସୁତରାଂ କହିବାର ତାତ୍ପର୍ଯ୍ୟ ଏହି ଯେ ଯେଉଁ ରାମନାମ ଏତେ ପବିତ୍ର, ତଦପେକ୍ଷା ରାମଚରିତ ପରମପବିତ୍ର ଓ ଆନନ୍ଦ ଦାୟକ । ରାମାୟଣ ଗ୍ରନ୍ଥରେ ବିସ୍ତୃତ ଭାବରେ ବର୍ଣ୍ଣିତ ଶ୍ରୀରାମ ଚରିତ ନିମ୍ନ ସଂକ୍ଷିପ୍ତ ଶ୍ଳୋକରେ ପ୍ରତିପାଦିତ –

"ଅଥ ସଂକ୍ଷିପ୍ତ ରାମାୟଣମ୍ ।"
"ଶ୍ରୀମତେ ରାମାନୁଜାୟ ନମଃ । ଆଦୌରାମ ତପୋବନାଭିଗମନ
ହତ୍ୱା ମୃଗଂ କାଞ୍ଚନଂ ବୈଦେହୀ ହରଣଂ ଜଟାୟୁ ମରଣଂ ସୁଗ୍ରୀବ
ସମ୍ଭାଷଣମ୍ ॥ ବାଳୀ ନିର୍ମର୍ଥନଂ ସମୁଦ୍ର ତରଣଂ ଲଙ୍କାପୁରୀ ଦହନଂ
ପଶ୍ଚାଦ୍ରାବଣ କୁମ୍ଭକର୍ଣ୍ଣ ହନନଂ ଚୈତଦ୍ଧି ରାମାୟଣମ୍ ।୧।"

ପାବନ ରାମାୟଣ ଗ୍ରନ୍ଥର ମହାତ୍ମ୍ୟ ସର୍ବକାଳୀକ । ସୁତରାଂ ଏ ସମ୍ପର୍କରେ ଉଲ୍ଲେଖ କରାଯାଇଛି –

"ରାମାୟଣ ମହାକାବ୍ୟଂ ସର୍ବବେଦେଷୁ ସମ୍ମତମ୍ ।
ସର୍ବପାପ ପ୍ରଶମନଂ ଦୁଷ୍ଟଗ୍ରହ ନିବାରଣମ୍ ।
ଧର୍ମାର୍ଥକାମ ମୋକ୍ଷାଣାଂ ହେତୁ ଭୂତଂ ମହାଫଳମ୍ ।

ଅପୂର୍ବ ପୁଣ୍ୟଂ ଫଳଦଂ ଶୃଣୁଧ୍ୱଂ ସୁସମାହିତାଃ
ଯତ୍ ଅସ୍ମିନ୍ ଶ୍ରୁତେ ଜନ୍ମ ଜରାଦି ନାଶୋ
ଭବତ୍ୟଦୋଷଃ ସନରୋ ଅଚ୍ୟୁତସ୍ୟାତ୍ ।"

(ବାଲ୍ମୀକି ରାମାୟଣ କଥା - ଆଦ୍ୟକାଣ୍ଡ - ପୃଷ୍ଠା -୧ ୨)

ଅର୍ଥାତ୍ ରାମାୟଣ ସମ୍ପୂର୍ଣ୍ଣ ବେଦ ସମର୍ଥିତ । ସମସ୍ତ ପାପ ନାଶକାରୀ । ଦୁଷ୍ଟଗ୍ରହ ନିବାରକ । ଧର୍ମ, ଅର୍ଥ, କାମ, ମୋକ୍ଷ – ଚତୁଃବର୍ଗ ପ୍ରଦାନକାରୀ । ଏହାର ଶ୍ରବଣରେ ଜନ୍ମ, ଜରା, ମୃତ୍ୟୁଭୟ, ଶୋକ ନାଶ ହୁଏ । ମନୁଷ୍ୟ ପାପ ଏବଂ ସମସ୍ତ ଦୋଷ ମୁକ୍ତ ହୋଇ ଅଚ୍ୟୁତରୂପ ପାଇଥାଏ । ତୁଳସୀଦାସ ଗୋସ୍ୱାମୀ ମଧ୍ୟ ଏହି କଥା ଉଲ୍ଲେଖ କରିଛନ୍ତି –

"ରଘୁବଂଶ ଭୂଷନ ଚରିତଯହ ନର କହହିଁ ସୁନହିଁ ଯେ ଗାଓ୍ୱାହାଁ
କଲିମଲ ମନମଲ ଧୋଇ ବିନୁଶ୍ରମ ରାମଧାମ ସିଧାଓ୍ୱହାଁ ।"

(ରାମାୟଣ - ଜାନକୀବଲ୍ଲଭ ପଟ୍ଟନାୟକ - ପୃଷ୍ଠା - ୪୮)

ଅର୍ଥାତ୍ ଏହି ପବିତ୍ର, ପାପନାଶକ, ପୁଣ୍ୟପ୍ରଦ ରାମଚରିତ ଯେ ପାଠ କରନ୍ତି, ତାଙ୍କର ସମସ୍ତ ପାପ କ୍ଷୟ ହୁଏ ।

"ବୈଦେହୀଶ ବିଳାସ" କାବ୍ୟରେ ନୀଳାମ୍ବୁଜ ଶ୍ୟାମଳକାନ୍ତି ବିଶିଷ୍ଟ, ରଘୁବଂଶ ଅବତଂସ, ମର୍ଯ୍ୟାଦାପୁରୁଷୋତ୍ତମ, ଅଯୋଧ୍ୟାନରେଶ, ନୟନାଭିରାମ, ଦଶରଥନନ୍ଦନ ଶ୍ରୀରାମଚନ୍ଦ୍ରଙ୍କର ଅପୂର୍ବ ଲୀଳାବିଳାସ ବର୍ଣ୍ଣିତ । ରାବଣାଦି ଅସୁର ମାନଙ୍କର ଅତ୍ୟାଚାର, ଦେବତାଙ୍କ ପ୍ରାର୍ଥନାରେ ବିଷ୍ଣୁ ରାମରୂପେ ଜନ୍ମନେବା, ଋଷ୍ୟଶୃଙ୍ଗଙ୍କ ଦ୍ୱାରା ପୁତ୍ରେଷ୍ଟିଯଜ୍ଞ ଫଳରେ ରାମ-ଭାରତାଦିଙ୍କ ଜନ୍ମ, ତାଡ଼କାବଧ, ଶିବଧନୁଭଙ୍ଗ, ସୀତାବିବାହ, ମନ୍ଥରାର କୁମନ୍ତ୍ରଣା, ରାମଲକ୍ଷ୍ମଣ ଏବଂ ସୀତାଙ୍କର ବନଗମନ, ସୂର୍ପଣଖାର ନାସାକର୍ଣ୍ଣ ଛେଦନ, ମାୟାମୃଗ ପ୍ରସଙ୍ଗ ଓ ବୈଦେହୀହରଣ, ସୁଗ୍ରୀବସହମିତ୍ରତା, ବାଳୀବଧ, ହନୁମାନଙ୍କର ସୀତାଠାବ, ରାମ - ରାବଣ ଯୁଦ୍ଧ, ଅଗ୍ନିପରୀକ୍ଷା, ପୁଷ୍ପକ ବିମାନରେ ଶ୍ରୀରାମଙ୍କର ଅଯୋଧ୍ୟା ପ୍ରତ୍ୟାବର୍ତ୍ତନ ଓ ଅଭିଷେକୋତ୍ସବ – ଏହାହିଁ ହେଉଛି 'ବୈଦେହୀଶ ବିଳାସ' କାବ୍ୟର ମୁଖ୍ୟ ପ୍ରସଙ୍ଗ । 'ବୈଦେହୀଶ ବିଳାସ' କାବ୍ୟର ନବମ ଛାନ୍ଦରେ ଶ୍ରୀରାମଙ୍କ ଗଙ୍ଗାପାରି ହୋଇ ମିଥିଳାରେ ପ୍ରବେଶ ଓ ଧନୁଭଙ୍ଗ ପ୍ରସଙ୍ଗ ବେଶ୍ ଚିତ୍ତାକର୍ଷକ । 'ଚୋଖି' ରାଗରେ ଉପେନ୍ଦ୍ର ଏହି ପ୍ରସଙ୍ଗକୁ ଯେପରି ବର୍ଣ୍ଣନା

କରିଛନ୍ତି, ତାହା ତାଙ୍କର ଅପୂର୍ବ ସର୍ଜନଶୀଳତାର ପରିଚୟ ଦେଉଅଛି । କବି ଲେଖିଛନ୍ତି –

"ବିତଳକୁ ଆଲିଙ୍ଗନ କରି ଜାହ୍ନବୀ ଶୋଭନ
ହରେ ସୁରବର ତାପ ଚାରୁଧାରା ସେ
ବହେ ମକରକେତନ ଉଚ୍ଛନ୍ନରତି ସମାନ
ପୂରିତ ହୋଇଛି ପୁଣି ଅଶେଷ ରସେ
ବିଦ୍ୟ ହୈମବତୀପଦରେ
ବିଷକଣ୍ଠ ତୋଷଦାନୀ ବେନିମତରେ ।
ବିଷ୍ଣୁପଦୀ ବିଷ୍ଣୁପଦ ଈକାର ଭେଦ ଶବଦ
ତରଣୀର ଗତାଗତ ତହିଁ ଉଚିତ ।
ବିଶାରଦ ସେ ସାମନ୍ତ ମତ୍ତରେ ଦାସ ସେବିତ
ତାକୁ ନଶୁଣନ୍ତେ ରଘୁନାଥ କଥିତ
ବିଷଧର ପ୍ରାୟେକି ତୁହି
ବେଳେ ନେତ୍ର ଢ଼ାଳି ଶୁଣ ଉଦାସ ନୋହି ।
ବଧିର ନୁହଇ ବୀର ବୋଇଲା ତହିଁ ଧୀବର
ଶୁଣିଲିଣି ପଥରେ ପଥର ଅବଳା
ବାଲି ପଡ଼ି ତୋ ଚରଣୁ ଆଶଙ୍କା ଉପୁଜେ ଏଣୁ
ନଉକା ନାୟିକା ହେଲେ ବୁଡ଼ିବ ଭେଳା ।
ବୁଡ଼ି ଏ ମୋ ପୋଷେ କୁଟୁମ୍ବ
ବସାଇ ନ ଦେବି ପାଦ ନ ଧୋଇ ନାବ ।" (ନବମ ଛାନ୍ଦ)

ଧୀବରର ଏ କଥାଶୁଣି ଭକ୍ତବତ୍ସଳ ଦାଶରଥି ପାଦ ପ୍ରକ୍ଷାଳନ ପାଇଁ ପାଦ ବଢ଼ାଇ ଦେଇଛନ୍ତି –

"ବଢ଼ାଇ ଦେଲେ ପୟର ଭାବଗ୍ରାହୀ ରଘୁବୀର
ପୟରେ କ୍ଷାଳିତ କରି ବସନେ ପୋଛି
ବ୍ରହ୍ମାରେ ଧୌତ ଯେ ପଦ ନୋହିଛି ଶିବ ବିଷାଦ
ନ ପାଇ ଚରଣାମୃତ ପାନକୁ ଇଛି ।
ବିଜ୍ଞାନୀ କୈବର୍ତ୍ତ ଧୋଇଲା
ବିଶ୍ୱେ ପତିତପାବନ ନାମ ରହିଲା ।" (ନବମ ଛାନ୍ଦ)

ସେହିପରି ସ୍ୱୟଂମ୍ବର ସଭାକୁ ଜନକ ଋଷି ଶ୍ରୀରାମ ଓ ଲକ୍ଷ୍ମଣଙ୍କୁ ନେଇ ରାଜସଭାରେ ପ୍ରବେଶ କରାଇବା ଏବଂ ରାମଲକ୍ଷ୍ମଣଙ୍କ ଶୋଭାଦେଖି ରାଜସଭାରେ ବସିଥିବା କେଉଁ କେଉଁ ନୃପତି ଲୋଭିତ ହେଲେ ତାହା କବିଙ୍କ ଲେଖନୀରେ ସ୍ଥାନ ପାଇଛି । କବିଙ୍କ ଭାଷାରେ –

"ବିତପନ କଲେ ନେଇ ତପନ ବଂଶିକ ତହିଁ
ସଭାରେ ଲୋଭା ଅନାଇ ନୃପ ସକଳ
ବିଦର୍ଭ, କର୍ଣ୍ଣାଟ, ଭୋଟ ସଉରାଷ୍ଟ୍ର, ମରହଟ୍ଟ
କୁନ୍ତଳ, କେରଳ, ଚୋଳ, ସିନ୍ଧୁ, ଉତ୍କଳ ।
ବାହ୍ଲିକ, ତୁରଷ୍କ, ନିଷେଧ
ବଙ୍ଗ, ଅଙ୍ଗ, କଳିଙ୍ଗ, ଚୋଡ଼ଙ୍ଗ ମଗଧ ।
ବେଦି, ଚେଦି, ମଘ ମତ୍ସ୍ୟ ଦ୍ରାବିଡ଼, ଗଉଡ଼, ମ୍ଳେଚ୍ଛ
ଆରବ, ମାଳବ, କଚ୍ଛ କୁରୁ, ପାଞ୍ଚାଳ
ବନାଉଜ, କନାଉଜ କାଶ୍ମୀର, କାମେରୀ କୁଞ୍ଚ
ଗଳ, ଡାହାଳ, ଲୋମଶ, ପୁଣ୍ଡ୍ର, କୋଶଳ
ବେଲାଉଳ ଆଦି ଏ ଠିକ ।
ବିଶେଷି କହିବା କେତେ କହେ ଜନକ ।" (ନବମଛାନ୍ଦ)

କାବ୍ୟଟିରେ ଶିବଧନୁ ଭଙ୍ଗ ପ୍ରସଙ୍ଗ ବେଶ୍ ଚିତ୍ତାକର୍ଷକ ।

ଶିବଧନୁ ଭଙ୍ଗ ପ୍ରସଙ୍ଗକୁ କବି ଅତ୍ୟନ୍ତ ତେଜୋଦୀପ୍ତ ଭାବରେ ବର୍ଣ୍ଣନା କରିଛନ୍ତି, ଯେପରି –

"ବୃଦ୍ଧାଙ୍ଗୁଳିପରେ ପଦେ ରାମ ରଖିଲେ ସମଦେ
ଜାଣିଲେ ତା ଅତ୍ୟନ୍ତ ଅଧୈର୍ଯ୍ୟ ହେବାର
ବାସୁକି କି ବହେ କୂର୍ମ ବହିଲା ସେ ମନୋରମ
ଗୁଣବନ୍ତ ଗୁଣଦତ୍ତ କଲେ ସତ୍ୱର ।
ବୈନାଶିକ ନାଡ଼ୀ ମୋ ହେଲା ।
ବାମେ ରହି ଅଜଗବ ବିଚାର କଲା ।
ବିଗୂଢ଼ ବଶେ ଓଟାରେ ପ୍ରଚଣ୍ଡ ମଲ୍ଲ ହସ୍ତରେ
ଏରଣ୍ଡ ଦଣ୍ଡ ପଡ଼ିଲା ପରି ଭାଜିଲା ।

ବ୍ରହ୍ମାଣ୍ଡ ଭାଣ୍ଡ ପୂରିତ ପ୍ରଳୟ କାଳେ ଏକତ୍ର
ଚାରିମେଘ ଗର୍ଜିଲା ଶବଦଗଞ୍ଜିଲା ।
ବିବୁଧେ ମୂର୍ଚ୍ଛିତ ଚେତାରେ
ବେଳେ ପ୍ରାଣ ଅମୃତ ରଖିଲା ବିଚାରେ ।"

ଧନୁଭଙ୍ଗ କାର୍ଯ୍ୟ ସମାପ୍ତି ପରେ ମିଥିଳାର ରାଜା ଜନକ ରଘୁବଂଶ ତିଳକ ଶ୍ରୀରାମଚନ୍ଦ୍ରଙ୍କୁ ସିଂହାସନରେ ବସାଇ ତାଙ୍କୁ ବୀରେଶ୍ୱର ଜ୍ଞାନରେ ପୂଜା କଲେ । କବିଙ୍କ ଭାଷାରେ –

"ବୀରେଶ୍ୱର କରି ପୂଜା କଲା ସେ ମିଥିଳା ରାଜା
ବସାଇ ରଘୂତ୍ତମଙ୍କୁ ସିଂହାସନରେ
ବିହାୟସେ ଦେବେ ଆସେ ରାମ ଦର୍ଶନ ଲାଳସେ
ଶବ୍ଦଶୁଣି ରାବଣ ମିଳିଲା ସେଠାରେ
ବୀର ସେ ବାହୁଡେ ବିରସେ
ବୟାଳିଶ ପଦେ ଛାନ୍ଦ ଉପେନ୍ଦ୍ର ଭାଷେ ।"

ଶିବଧନୁଭଗ୍ନ ପରେ ସୀତାଙ୍କୁ ମଣ୍ଡନ କରାଇ ରାମଚନ୍ଦ୍ରଙ୍କ ନିକଟରେ ବିଜେ କରାଇବା ପାଇଁ ବିଶ୍ୱାମିତ୍ର ଜନକଙ୍କୁ ପରାମର୍ଶ ଦେଲେ । ଏହି ବର୍ଣ୍ଣନାଟି କବିଙ୍କ ଲେଖନୀରେ ବେଶ୍ ଚିତ୍ତାକର୍ଷକ ଓ ମନୋଜ୍ଞ ହୋଇଛି । ସେହି ପ୍ରସିଦ୍ଧ ରମଣୀୟ ପଦପଂକ୍ତି ହେଉଛି –

"ବିଭୂଷଣେ ପୁଷ୍ପେ ଯା' କାନ୍ତି ଜାଣ
ବିଭୂଷଣ କରି କନ୍ୟାକୁ ଆଣ
ବାରଣ ଶିରେ ପଦ ଦେଇ ଆସୁ
ବରଣ କରି ରାମ ମନ ତୋଷୁ ସେ
ବୋଲି ଦେଲେ କଉଶିକ ଯେ
ବୋଳି ଦେଲା ପ୍ରାୟେ ଗୋଳି ଚନ୍ଦନକୁ
ବୋଇଲେ ରଘୁବଂଶିକ ଯେ ।"

ପୁନଶ୍ଚ – "ବିଧାନ ହୋଇଛି ଯା' ନାମ ସୀତା
ବର୍ଣ୍ଣନେ ଶୋଭା ଅତି ମଧୁରତା
ବୁଡ଼ି ନେତ୍ର ଆଜ ହେବ ପବିତ୍ର

ବିଶେଷେ କର୍ଷି ଦେଇ ହୃଦକ୍ଷେତ୍ର ସେ
ବୁଣିଲାଣି ସ୍ନେହ ବୀଜେ ଯେ
ବିଚାରୁ ଏମନ୍ତ ଜନକ ସମ୍ମତି
ଶୁଣିଲେ ସଖୀ ସମାଜ ଯେ ।" (ଦଶମଛାନ୍ଦ)

ରାମସୀତାଙ୍କ ବାସର ରଜନୀରେ ପ୍ରଥମ ମିଳନ ପରିପ୍ରେକ୍ଷୀରେ କବିସମ୍ରାଟ ଯେଉଁ ଏକ ପତିପତ୍ନୀ ଆଦର୍ଶର କଥା କହିଛନ୍ତି, ତାହା ବେଶ୍ ଯୁଗ ଯୁଗ ପାଇଁ ମାର୍ଗଦର୍ଶନ କରୁଥିବ । ବାସର ରାତିରେ ଶ୍ରୀରାମଙ୍କ ଶପଥ–

"ବିଦଗ୍ଧ ଶ୍ରୀରାମଚନ୍ଦ୍ର କହେ । ବନ୍ଧୁ ଜୀବନ ଥିବାର ଏ ଦେହେ ॥
ବିଳାସିନୀ ନ କରିବି ଆନକୁ । ବୋଲି ଛୁଇଁ ଦୀପ ହୁତାଶନକୁ ॥"

ଏହା ଶୁଣି ସୁଚତୁରା ବୈଦେହୀ ମଧ୍ୟ ଶପଥ ନେଇଛନ୍ତି –

"ବଇଦେହୀ କେଶୁଁ କାଢ଼ି କେତକୀ ।
ବର୍ଣ୍ଣଲିଖିତ ପୋଛି କସ୍ତୁରୀକି ॥
ବଳିନାହିଁ ଆନେ ଆଜଯାଏ ତ
ବଳାଇବି ଜନ୍ମେ ଜନ୍ମେ ମୋ ଚିତ୍ତ ॥
ବରମଣ୍ଡପରୁ ଯିବ ବାହୁଡ଼ି
ବାର୍ତ୍ତାବହେ ତୁମ୍ଭଙ୍କୁ ନେବି ଲୋଡ଼ି ॥
ବୀର ମୁକୁଟେ ପତ୍ର କରି ଦତ୍ତ
ବିନ୍ୟସ୍ତ ଯେ ପ୍ରଦୀପେ କଲେ ହସ୍ତ ॥" (ପଞ୍ଚଦଶଛାନ୍ଦ)

ସେହିପରି ଶ୍ରୀରାମଙ୍କ 'ବକପକ୍ଷୀକୁ ବର ପ୍ରଦାନ' ପ୍ରସଙ୍ଗଟିରୁ କବିଙ୍କର କଳ୍ପନା ଓ ବର୍ଣ୍ଣନାବିଳାସର ପରିଚୟ ମିଳେ । ଯଥା –

"ବକେ ବସିଥିଲା ଧ୍ରୁବ ଉପରେ । ବିଷ୍ଣୁ ପଦକୁ ଭଜିଲା ଉତ୍ତାରେ ।
ବଳକ୍ଷ ପକ୍ଷକୁ ଅଙ୍ଗରେ ବହି । ବହନ ସେ ତମ ନାଶନ ବିହି ।
ବକତା ଏ ଗିର । ବିଶ୍ରାମ ବାର୍ତ୍ତା କହିବା ସୁନ୍ଦର ।
ବଧୁ କାମ ଧର୍ମେ ଅଛି ଜୀବନେ । ବଧୁ କାମ ବଶେ ଭ୍ରମ ଏ ବନେ ।
ବାଉନୁ ଅଛ ଯେଉଁ ରମଣୀୟେ । ବିଶେଷ ଶୋଭା ତହୁଁ ରମଣୀଏ ।
ବିଂଶବାହୁରଥେ । ବିଲୋକିଛି ଗଲା ଦକ୍ଷିଣ ପଥେ ।

ବିଷପ୍ରସୂନ ଇନ୍ଦୁ ନିତି ଦେଖେ । ବିଲକ୍ଷ୍ୟ ପ୍ରସନ୍ନ ନଥିଲା ମୁଖେ ।
ବାଷ୍ପ ହେଉଛି ନୟନୁଁ ଜନିତା । ବୋଲନ୍ତି ମୀନ ଉଦ୍‌ଗାରେ ମୁକ୍ତା ।
ବଡ଼ ଉଣା ସେହି । ବାରିରେ ଲୁଚେ ଧରି ଭକ୍ଷେ ମୁହିଁ ।
ବାସ ଚହଟି ଅଙ୍ଗୁ ଯାଉଥିଲା । ବେଢ଼ିଥିଲେ ରଥେ ଭ୍ରମର ମାଳା ।
ବର୍ଣ୍ଣ ଝଟକ ବିଜୁଳିରେ ନାହିଁ । ବାରିଦ ନିକଟେ ଦେଖିଛି ମୁହିଁ ।
ବୀଣା କି ମଧୁର । ବାହାରୁ ଥିଲା ଯେଉଁ ରାମସ୍ୱର ।
ବୋଲିବ ତୁ ବୀଣା ଶୁଣିଲୁ କାହୁଁ । ବାଜଇ ସପତ ସ୍ୱରରେ ସେହୁ ।
ବର୍ଷାଭୂ ଧୈବତ ମୟୂର ଷଡ଼ଜ । ବନପ୍ରିୟରେ ପଞ୍ଚମ ସହଜ ।
ବାଜୁଛି ମୋ କର୍ଣ୍ଣେ । ବିଧିରେ ଏହିପରି ଆଉମାନେ ।
ବାର୍ତ୍ତା ଶୁଣି ବର ଯାଚୁଁ କୃପାଳୁ । ବସାରେ ବର୍ଷାରେ ଆହାର ମିଳୁ ।
ବଳାକା ଭାଷୁ ଆଜ୍ଞା ଦେଲେ ହେଉ । ବନ୍ଦୀ ଚତୁରମାସ ଆଣି ଦେଉ ।
ବଲ୍ଲଭୀ ଉଚ୍ଛିଷ୍ଟ । ବୋଲୁଁ ବୋଇଲେ ପାନ କରୁ ଓଷ୍ଠ ।"

(ବୈ.ବି- ଏକତ୍ରିଂଶ ଛାନ୍ଦ)

'ବୈଦେହୀଶ ବିଳାସ' କାବ୍ୟର ସପ୍ତଦଶ ଛାନ୍ଦରେ ଶ୍ରୀରାମ ସୀତା ଓ ଲକ୍ଷ୍ମଣ ବନବାସୀ ହେବାପରେ ଚିତ୍ରକୂଟରେ ପ୍ରବେଶ କରିବାପୂର୍ବରୁ ଭରଦ୍ୱାଜ ମୁନିଙ୍କ ଆଶ୍ରମରେ ଗୋଟିଏ ଦିନ ରହି ପରଦିନ ପ୍ରତ୍ୟୁଷରୁ ଅରଣ୍ୟପଥରେ ଗମନ କଲେ । ତାଙ୍କର ଏହି ଯାତ୍ରାକାଳୀନ ଦୃଶ୍ୟ ବେଶ୍ ମନୋରମ । ସର୍ବୋପରି ଏହି ଅରଣ୍ୟପଥରେ ଯିବାସମୟରେ ତାଙ୍କୁ ଦେଖି ଶବରବାଳାଙ୍କ ମନରେ ବେଶ୍ କୌତୁହଳ ସୃଷ୍ଟି ହୋଇଥିଲା ଏବଂ ସେହି କୌତୁହଳକୁ ସୀତା ଅତ୍ୟନ୍ତ ବିଚକ୍ଷଣତାର ସହିତ ସମାଧାନ କରିଥିଲେ । କବି ଲେଖିଛନ୍ତି –

"ବଞ୍ଚି ସେ ଦିନକ କନକ ଗଉରୀ ଗଉର ମର୍କତ ଗାତ୍ର
ବର୍ତ୍ମରେ ଗମନ ବନ୍ୟନାରୀ ଚାହିଁ ଚକିତ ସ୍ଥକିତ ନେତ୍ର ।
ବର କାଗଜଚକୀ ।
ବିଲୋକନ୍ତି ଯେମନ୍ତ କୁତୁକୀ ।
ବୋଲାବୋଲି ହେଲେ ପରମସୁନ୍ଦର ବର ଏ ପଥିକ ଦୁଇ
ବଲ୍ଲଭୀ ପୁଣି ରମଣୀ ଶିରୋମଣି କାହାର ଥିବଟି ହୋଇ ।
ବୋଲି ନିକଟେ ଗଲେ
ବଇଦେହୀଙ୍କି ସେ ପଚାରିଲେ ।

ବରାରୋହା ଏ ପୁରୁଷସାର ଦୁହେଁ ସୋଦର କିବା ତୁମ୍ଭର
ବୁଲନ୍ତି ଜଗତେ ଘେନି ସଙ୍ଗତରେ ସୁଷମେ ନ ମିଳେବର ।
ବୋଲୁଁ ଶିର କମ୍ପାଇ
ବରଦେବର କେ ଯାଅ କହି ।
ବିଳମ୍ବ କରନ୍ତେ ପ୍ରଳମ୍ବ କୁନ୍ତଳା ଡାକେ ଲକ୍ଷ୍ମଣ କୁମାର
ବାମାଙ୍କୁ ବୋଧିଲେ ଏ ଦେବର ବୋଲି ମନ୍ଥର ଗତି ସତ୍ୱର ।
ବୁଦ୍ଧି କରନ୍ତେ ନୋହି ।
ବରଟା କି ଗର୍ଭାଳସୀ ହୋଇ ।" (ସପ୍ତଦଶ ଛାନ୍ଦ)

କବି ବର୍ଣ୍ଣନା କରିଛନ୍ତି ଯେ ବନବାସ ସମୟରେ ଏକଦା ସୀତା ଦୁଃଖ ପ୍ରକାଶ କରି ଶ୍ରୀରାମଙ୍କୁ କହିଲେ –

"ବୋଇଲେ ସୀତା ସୀତାଂଶୁମୁଖୀ ଏକଦିନେ ଅତିଦୀନ ହୋଇ
ବିହି ବିହିଲା ବନବାସ ବାସରେ ନୃପତି ହେବାର ଯାଇ ।
ବିଳସାଇ ଯଥା ଅଳକା ତେଜାଇ ଈଶ୍ୱରଙ୍କୁ ଶମଶାନେ
ବିଷ୍ଣୁଙ୍କୁ ରତନ ପଲଙ୍କ ଛଡ଼ାଇ ଜଡ଼ାଇ ସର୍ପଶୟନେ ।
ବିସୋରି ନ ପାରି ଅବିଧି ବିଧିକି କିମ୍ପାଇଁ ବୋଲାଇ ବିଧି
ବସାଇ କୋଳେ ଶ୍ରୀରାମ କହେ ଭୋଳେ ରସାଇ ଲାବଣ୍ୟନିଧି ।"

ଜାନକୀଙ୍କ ମୁଖରୁ ଏହାଶୁଣି ବିଦଗ୍ଧ ରାମଚନ୍ଦ୍ର କହିଲେ –

"ବିରଞ୍ଚି ଏକାନ୍ତ କେଳି କି ବିରଚି ଗଉରୀ କମଳାସଙ୍ଗେ
ବିଜନ ସ୍ଥାନ ବୋଲି ତୋତେ ମୋତେ ବନେ ବିହରାଇ ରଙ୍ଗେ ।
ବିବେକ କର ରସିକ ରସିକାର ଏଥୁ ଅଛି କି ଉତ୍ସବ ?
ବୃଷଭାସ୍ୟା ତେଜି ମଳୟ ପର୍ବତେ ବସନ୍ତେ ଆସେ ବାସବ ।
ବ୍ରହ୍ମଲୋକ ଛାଡ଼ି ସେହି ପୁଣି ଲୋଡ଼ି ଗନ୍ଧମାଦନ ଶିଖରୀ
ବିଭବୁ ଆମ୍ଭର ସୁରସ ପ୍ରବୀଣା କି ଊଣା ଅଛି କି କରି ?
ବିହରି ସଉଧ ସଦନେ ବିହରି ଶଉଦ୍ଧ ସଦନେ ଧନ
ବେଢ଼ି ଡାକୁଥାନ୍ତି କଞ୍ଚୁକିନ ବେଢ଼ି ଡାକୁଛନ୍ତି କଞ୍ଚୁକୀନ ।
ବସିଥାଇ ଚନ୍ଦ୍ରାତପ ତଳେ ବସିଥାଇ ଚନ୍ଦ୍ରାତପ ତଳେ
ବେଷ୍ଟିତ ଯେ ସହଚରୀକୁଳେ ବେଷ୍ଟିତ ଯେ ସହଚରୀ କୁଳେ ।

ବୁଲିବା ଥିଲା ଜଗତୀରେ ବୁଲିବା ଜଗତିରେ ହେଲା ଘେନ
ବିଲୋକୁଥାଇ ଚିତ୍ରଲେଖା ବିଲୋକୁଥାଇ ଚିତ୍ରଲେଖ ପୁନ
ବିକ୍ଷିପ୍ତଶେଯେ ରଜନୀକର ଶେଯେ ବିକ୍ଷିପ୍ତ ରଜନିକର
ବୋଧକ ସୁକବି ଗିର ହେଉଥିଲା ବୋଧକ ଶୁକ-ବିଗିର ।
ବାରେ ବାରେ ଦେଖି ଭଦ୍ର ଉତ୍ସବକୁ ଭଦ୍ର ଉତ୍ସବକୁ ଦେଖି
ବିଶେଷ ଖଦିର ଚଳିତ ବିଶେଷ ଖଦିର ଚଳିତସଖି ।"

(ବିଂଶଛାନ୍ଦ)

ଏହାଠାରୁ ବଳି ଆଉ ଉଚ୍ଚକୋଟୀର ଭାବନା କ'ଣ ପାଇପାରେ ? ସୁତରାଂ କବି ଉପେନ୍ଦ୍ର ଥିଲେ ଗଭୀର ଆଶାବାଦୀ କବି । ସେ ଉଚ୍ଚକୋଟୀର ଭାବନା ରାଜ୍ୟର ବିହାରୀ ଥିଲେ ନିଶ୍ଚୟ ।

କବି ସମ୍ରାଟଙ୍କ କବିତ୍ୱର ନିଆରା ପଣ ହେଉଛି ବିରହକୁ ଯଥାଯଥ ଭାବରେ ଚିତ୍ରଣ କରିବା । କାରଣ ସେ ଥିଲେ ବିରହୀ କବି । ଏହା ସତ୍ୟ ଯେ ପ୍ରେମର ପୋଖତ କବି ବିରହାତ୍ମକ । ତେବେ ସୀତାହରଣ ପରେ ବିଚ୍ଛେଦ ଜନିତ ଦୁଃଖରେ ଅତ୍ୟନ୍ତ ମ୍ରିୟମାଣ ହୋଇ ରାମଚନ୍ଦ୍ର ଯେଉଁ ବିଳାପ କରିଛନ୍ତି, ତାହାକୁ ଉପେନ୍ଦ୍ର ଅତ୍ୟନ୍ତ ମର୍ମସ୍ପର୍ଶୀ ଭାବରେ ଲେଖିଛନ୍ତି । ଯଥା –

"ବନେ ଘନେ ରଘୁମଣି
ବିପଥ ପଥ ନ ମଣି
ବନ ପୂର୍ଣ୍ଣ ଅନୁକ୍ଷଣ
ବେନି ଈକ୍ଷଣ ଯେ ।

ବିଛନ୍ନ ମନ ଉଚିତ
ବଚନ ଉଚ୍ଚେ ରଚିତ
ବିଚ୍ଛେଦ ହେଲୁ ଈଷିତେ
ବୈଦେହୀସୀତେ ଗୋ ।

ବନଦ ତମାଳ ତମ
ବାଳେ ନୋହେ ତାରତମ
ବିଚ୍ଛେଦାଇ ହେଲେ ତମ
ବିଶ୍ୱେ ଉତ୍ତମ ଏ ।

ବାୟୁ ବାହନ ଚମରୀ
ବନ୍ଧେ ଗର୍ଭକ ସୁମରି
ବିଧୁର ସେହି ସକାଶେ
ବହି ପ୍ରକାଶେ କି ।

ବିଭୋଗ କାଳ ବିଚାରି
ବନ୍ଧୁ କଲି ବନଚାରୀ
ବାଞ୍ଛିଲା ଅକର୍ମବନ୍ତ
ବିଫଳ ବତ ଏ ।

ବାହୁରେ କରି ବନ୍ଧନ
ବୋଲୁଥାଉ ଏକା ଧନ
ବାଧି ନ ପାରେ ଦୀନତା
ବଡ଼ ଉନ୍ନତା ମୁଁ ।

ବିଚିତ୍ରକଳା ସେବନ
ବିମ୍ବ ଚନ୍ଦ୍ରର ଚୁମ୍ବନ
ବାଳାରୁଣୁ ପାନ ସୁଧା
ବଡ଼ ବିଶୁଦ୍ଧା ଯେ ।

ବପୁ ନ ମରୁ ପୋଡ଼ଇ
ବେଳ ପ୍ରଭାତୁ ବୁଡ଼ଇ
ବିଶେଷେ ଅନ୍ଧାର ଦିଶେ
ବ୍ୟୋମାଦି ଦିଶେ ଯେ ।” (ଷଡ଼ବିଂଶ ଛାନ୍ଦ)

କବି ଉପେନ୍ଦ୍ର ଉତ୍ତର ରାମଚରିତ ଅର୍ଥାତ୍ ସୀତା ନିର୍ବାସନ, ପାତାଳଗମନ ଓ ଶ୍ରୀରାମଙ୍କର ବୈକୁଣ୍ଠଗମନ ପ୍ରସଙ୍ଗକୁ ପରିତ୍ୟାଗ କରିଛନ୍ତି । ତେଣୁ କବି ଲେଖିଛନ୍ତି–

“ବାଲ୍ମୀକି ସଦନେ ଯାଇ ଜାନକୀ ରହିବା
ବଧ ଲବଣର ଲବକୁଶ ଜନ୍ମ ହେବା ଯେ ।
ବିରଚିବ ଯାଗ ରାମସୁତ ଗୀତଗାନ
ବୈଦେହୀ ଆଣିବା ପୁଣି ପାତାଳେ ଗମନ ଯେ ।

ବିଧୁର ହେବା ଲକ୍ଷ୍ମଣ ରାମ ମାତୃଭ୍ରାତ
ବହ୍ନିରେ ପଶିବା ଘନି ସ୍ୱାମୀର ସଙ୍କେତ ଯେ ।
ବସୁଧାଭୃତ କରିଣ ଲବକୁଶ ବେନି
ବୈକୁଣ୍ଠେ ଗମିବା ରାମ ସ୍ୱଜନକୁ ଘେନିଯେ ।
ବିଭଙ୍ଗ ରସ ବୋଲିଣ ନ ବର୍ଣ୍ଣିଲି ଏଥେ
ବୁଧେ ଯେଣୁ ବୋଲିଛନ୍ତି ଦୋଷ ଛାନ୍ଦଗୀତେ ଯେ ।" (୫୨ ଛାନ୍ଦ)

'ବୈଦେହୀଶ ବିଳାସ' ଏକ ଉଚ୍ଚକୋଟୀର ରାମକାବ୍ୟ । ଏଥିରେ କବିଙ୍କର ବର୍ଣ୍ଣନାଚାତୁର୍ଯ୍ୟ ଯେପରି ଉଚ୍ଚତାରେ ପହଞ୍ଚିଛି, ସେହିପରି ଆଧ୍ୟାତ୍ମିକ ଭାବନା ମଧ୍ୟ ଉଚ୍ଚକୋଟୀର ହୋଇପାରିଛି । 'ବ' ଆଦ୍ୟ ନିୟମରେ ରଚିତ ଏହି ଉତ୍ତମ କାବ୍ୟଟି ସମଗ୍ର ଭାରତୀୟ ପ୍ରାନ୍ତୀୟ ଭାଷାରେ ରଚନା କରାଯାଇଥିବା ରାମଗାଥା ମଧ୍ୟରେ ସର୍ବୋତ୍ତମ କୃତି । 'ବ' ନିୟମ ହେତୁ କବି ଉପେନ୍ଦ୍ର ଏହି କାବ୍ୟ ଅନ୍ତର୍ଗତ ଛାନ୍ଦଗୁଡ଼ିକୁ ବିଂଶ, ବତିଶ, ବୟାଳିଶ, ବାନ, ବାଷଠି, ବାସ୍ତରି, ବୟାଶୀ, ବୟାଶୋଇ, ବାସ୍ତରିଅଧିକ ଶତଶ (୧୭୨) ପ୍ରଭୃତି ପଦରେ ରଚନା କରିଛନ୍ତି । କବି ଉପେନ୍ଦ୍ର ଭଞ୍ଜଙ୍କର ଏହା ଏକ କାଳଜୟୀ ସର୍ଜନା ଏବଂ ଏଥିରେ 'ବିଚିତ୍ରକବିତ୍ୱ' ବିଳସିତ । ଯୁଗେ ଯୁଗେ ଏହି କାବ୍ୟଟି ଭଞ୍ଜ ପ୍ରତିଭାର ସ୍ୱର୍ଣ୍ଣଦ୍ୟୁତି ବିତରଣ କରିଆସୁଅଛି । ତେଣୁ 'ବୈଦେହୀଶବିଳାସ' ସମ୍ପର୍କରେ କାଳଜୟୀ ମନ୍ତବ୍ୟ ପରିଦୃଷ୍ଟ –

(କ) "କାଳବଳିଆର ଆଣଇ ସଂସ୍କାର
ନବରୁଚି ନବଜ୍ଞାନ
କିନ୍ତୁ ବୈଦେହୀଶ ବିଳାସ ପାଇବ
କାଳେ କାଳେ ଉଚ୍ଚସ୍ଥାନ ।" (ଅବକାଶ ଚିନ୍ତା)

(ଖ) "ଧନ୍ୟ ରାଜକବି ତୁମି ! ଜନମ ସୁକ୍ଷଣେ
ଗ୍ରହନିଲା ଏ ପ୍ରଦେଶେ ହେ କବୀନ୍ଦ୍ର ମଣି ।
ସୁଯଶସ୍ୱୀ ସୁସମୟେ ସରସ ଲେଖନୀ
ଧରିଲା ଉପେନ୍ଦ୍ର ! ମରି ଯେ ଚାରୁ ଭୂଷଣେ ।
ସାଜାୟେଛେ ବୈଦେହୀଶେ ହେ କବିରତନ
ତୋମା ବିନା ସାଧ୍ୟକାର ସାଜାୟ ଏମନ ।"
(ରାଧାନାଥ ରାୟ- କବିତାବଳୀ-୧ମଭାଗ)

ଏହି କାବ୍ୟଟି ୧୮୭୫ ମସିହାରେ ପ୍ରଥମେ ପ୍ରକାଶ ପାଇଥିଲା ।

## ଯମକରାଜ ଚଉତିଶା :

ଯମକରାଜ ଚଉତିଶା ଉପେନ୍ଦ୍ରଙ୍କର ଏକ ଉଲ୍ଲେଖନୀୟ କୃତି । ଏହି ଚଉତିଶାଟିରେ ମୁଖ୍ୟତଃ ମଧ୍ୟଯମକର ବହୁଳ ବ୍ୟବହାର କରାଯାଇଛି । ତେଣୁ ଚଉତିଶାଟିର ନାମକରଣ କରାଯାଇଛି ଯମକରାଜ ଚଉତିଶା । ଚଉତିଶାଟି କୌଶିକ ରାଗରେ ରଚିତ । କ ଠାରୁ କ୍ଷ ପର୍ଯ୍ୟନ୍ତ ଚଉତିରିଶିଟି ଅକ୍ଷରକୁ ଆଦ୍ୟ ନିୟମରେ ରଖି ଏହି ଚଉତିଶାଟି ରଚିତ ହୋଇଛି । ଉପେନ୍ଦ୍ର ଭଞ୍ଜଙ୍କ ପୂର୍ବରୁ ଅବଶ୍ୟ ଅନେକଗୁଡ଼ିଏ ଚଉତିଶା ରଚନା କରାଯାଇଛି । କେତେଗୋଟି ସ୍ମରଣୀୟ ଚଉତିଶା ହେଉଛି ମାର୍କଣ୍ଡଦାସଙ୍କ କେଶବକୋଇଲି ଚଉତିଶା, ବଚ୍ଛାଦାସଙ୍କ 'କଳସା ଚଉତିଶା', ବଂଶୀଦାସଙ୍କ 'ଉଦ୍ଧବଚଉତିଶା', ଚାନ୍ଦଦାସଙ୍କ 'ଗୋପଜୀବନ ଚଉତିଶା', ରଘୁନାଥ ହରିଚନ୍ଦନଙ୍କ 'ସୁମୁଖୀ ଚଉତିଶା' ଇତ୍ୟାଦି । କବିଙ୍କର 'ଯମକରାଜ ଚଉତିଶା' ଏକ ପ୍ରଣୟାନୁଚିନ୍ତା ଭିତ୍ତିକ ଚଉତିଶା । ନାୟକ ଶିରୋମଣି ଶ୍ରୀକୃଷ୍ଣ ପ୍ରଣୟିନୀ ଶ୍ରୀରାଧାଙ୍କ ବିରହରେ ବ୍ୟଥିତ ହୋଇ ବସନ୍ତର ଦୂତ କୋକିଳକୁ ସମ୍ବୋଧନ କରି ନିଜର ବିରହାନୁଚିନ୍ତାକୁ ପ୍ରକଟନ କରିଛନ୍ତି । ଅନ୍ୟାନ୍ୟ ଚଉତିଶା ପରି ଏହି ଚଉତିଶାଟି ସାଧାରଣତଃ ସୁବୋଧ ନୁହେଁ । କାରଣ ଏଥିରେ କବିଙ୍କର ଶବ୍ଦର କସରତ ରହିଛି । ଯେପରି–

"ଖଞ୍ଜନ ନୟନୀ କଟକ କଟକ କଟକ କଟକ ଶୋଭିନୀ
ଖେଦକୁ ଘେନିବ ହାଟକ ହାଟକ ହାଟକ ସୁମନ ମୋହିନୀ
କୋକିଳ, କ୍ଷିତି ମଣ୍ଡନା ଖଞ୍ଜନୟନୀ,
ଖଞ୍ଜିଥିଲା ପ୍ରୀତି କଟକ କଟକ କଟକ ପୁସ୍ତନା ଗମନୀ"

"ଜୀବନ ଜୀବନ ଜୀବନ ଜୀବନ ଧନୀ ସୁକୁନ୍ତଳା ତେଜିବ
ଜଗତ ନଳିନୀ ନଳିନୀ ନଳିନୀ ନଳିନୀ ଯେବେ ନିରେଖିବ
କୋକିଳ, ଜବାଧରା ମନରଞ୍ଜନା
ଜଗତ ସୁରଭି ସୁରଭି ସୁରଭି ସୁରଭି ସୁରଭି ବରନା ।"

"ଯୋଷାମଣି ମୀନକେତନ କେତନ କେତନ କେତନ ରସାଇ
ଯେବେ ଚାହିଁଦେବ କେତନ କେତନ କେତନ ତେବେ ମୋହ ଯାଇ
କୋକିଳ, ଯତନେ ତା'ର ସଖୀଗଣ,
ଯୁବତୀ ଶରୀର କାଞ୍ଚନ କାଞ୍ଚନ କାଞ୍ଚନ କରିବ ଲେପନ ।"

## ଷୋଳ ପୋଇ :

କବି ଉପେନ୍ଦ୍ରଙ୍କ 'ଷୋଳପୋଇ' ଏକ ସ୍ମରଣୀୟ ରଚନା । 'ପୋଇ' ହେଉଛି ଏକ ପ୍ରାଚୀନ କବିତାର ନାମ ବିଶେଷ । 'ପୋଇ'ର ବିଶେଷତ୍ୱ ଏହି ଯେ କାବ୍ୟଟି ଯେଉଁ ସଂଖ୍ୟାରେ ନାମିତ ହୋଇଥାଏ, ପୁସ୍ତକରେ ସେତିକି ସଂଖ୍ୟକ ଛାନ୍ଦ ଥାଏ । ପୁନଶ୍ଚ ପ୍ରତ୍ୟେକ ଛାନ୍ଦରେ ସେତିକି ସଂଖ୍ୟକ ପଦ ଥାଏ । ପ୍ରତ୍ୟେକ ପଦର ଅକ୍ଷର ସଂଖ୍ୟା ବାଇଶି କିମ୍ବା ବେଶି ହେବା ବିଧେୟ ।

ଷୋଳପୋଇ ଗ୍ରନ୍ଥର ପ୍ରତ୍ୟେକ ପାଦ ଚବିଶ ଅକ୍ଷର ବିଶିଷ୍ଟ ଅଟେ । ଏହି ଗ୍ରନ୍ଥଟି ଭୂପାଳ ଛନ୍ଦରେ ରଚିତ । ଏଥିରେ ଶ୍ରୀରାମଙ୍କର ଜନ୍ମ ଠାରୁ ଆରମ୍ଭ କରି ସ୍ୱର୍ଗାରୋହଣ ପର୍ଯ୍ୟନ୍ତ ସମଗ୍ର ରାମଚରିତ ବର୍ଣ୍ଣନା କରାଯାଇଛି । ଏହି ଗ୍ରନ୍ଥରେ ଷୋହଳଟି ଛାନ୍ଦ ଏବଂ ଦୁଇଶହ ଛପନ ପଦ ରହିଛି । କବି ଲେଖିଛନ୍ତି –

"ଶୁଣ ସୁଜନେ ବିଚିତ୍ର କଉତୁକ ଶାସ୍ତ୍ର-ଗ୍ରନ୍ଥ ରାମାୟଣ ରାମାୟଣ
କଲେ ରାମ ରାମାୟଣ ନାମ ରାମାୟଣ ଶିବ କହନ୍ତି ପାର୍ବତୀ ଶୁଣ ।
ଶାସ୍ତ୍ର ଆଗେ ବାଲମିକ ସିଦ୍ଧ ବାଲମିକ ପୁରାଣ ପୁରାଣ ପରସିଦ୍ଧି
ନାମ ଅଟେ ଷୋଳ ପୋଇ ପଦ ଷୋଳ ପୋଇରେ ସମସ୍ତ ବିଧି ।
କବି କବି ବୀରବର ପଦ ବୀରବର ବୀରବର ପଦେ ବୀର୍‌ବର
ଭଞ୍ଜ ଭଞ୍ଜ ଉପଇନ୍ଦ୍ର ଭଞ୍ଜ ଉପଇନ୍ଦ୍ର ଉପଇନ୍ଦ୍ର ଇନ୍ଦ୍ର ଇନ୍ଦ୍ର ସାର ।"

ଏହାବ୍ୟତୀତ ଉପେନ୍ଦ୍ର ଭଞ୍ଜ ବହୁ ଗାହା, ଦୋହା, ଚଉପଦୀ ପ୍ରଭୃତି ରଚନା କରିଛନ୍ତି । ଭଞ୍ଜଙ୍କର କେତେଗୋଟି ପ୍ରସିଦ୍ଧ ଗୀତିକବିତା ହେଉଛି 'ଆଜ ଦେଖିଲିରେ ନବୀନବୟସୀବାଳା' 'ଶ୍ରୀପତି ଶ୍ରୀମତୀ ବୃନ୍ଦାବନେ କେଳି ରଚିଲେ', 'ମଲ୍ଲୀମାଳ ଶ୍ୟାମଳଙ୍କୁ ଦେବି', 'ରମଣୀରତନ ମେଘକୁ ଚାହିଁ,' 'ଦୂତୀଗୋ, କହିବୁ ଚିତ୍ତଚୋରାଙ୍କୁ ଏତେକ', 'ଆହା ମୋ ଜୀବନଧନ', 'ଏ ଘୋର ବରଷାକାଳେ ପ୍ରିୟରସା ରସ ଆଦରେ ବସିଥିବ' ଇତ୍ୟାଦି । ଉପେନ୍ଦ୍ର ମଧ୍ୟ ଅନେକ ଭଜନ ଓ ଜଣାଣର ସ୍ରଷ୍ଟା । 'ଆହେ ପ୍ରଭୁକମଳାକାନ୍ତ, ବିମଳାବଲ୍ଲଭ ଯାମଳାତାରୀ', 'କଳାଶ୍ରୀମୁଖ ହେ, ନଗଲା ମୋର ଦୁଃଖ', 'ରମାରମଣ ହେ ତୁମେପରା ଦୟାସିନ୍ଧୁ' ଇତ୍ୟାଦି । ଉପେନ୍ଦ୍ରଙ୍କର ସର୍ବଜନ ପ୍ରିୟ ଭଜନଟି ହେଉଛି–

"ମାନ ଉଦ୍ଧାରଣ କରହେ କାରଣ
ଶରଣ ମୁଁ ତୁମ୍ଭ ପାଦ ତଳେ,
ଅନାଥର ନାଥ ନୀଳଗିରି ନାଥ
ଜଗନ୍ନାଥ ନାମ ନୀଳାଚଳେ ।
ମହୋଦଧିକୂଳେ କଳ୍ପବଟ ମୂଳେ
ବିଜେ କରିଛ ବଡ଼ ଦେଉଳେ
ଲକ୍ଷେ ଯୋଜନରେ ଗଜ ଡାକ ଦେଲା
ତା' ଡ଼ାକ ଶୁଣିଲ ପଶାଖେଳେ ।
ମାରକଣ୍ଡ ଋଷି ଯାଉଥିଲେ ଭାସି
ଉଦ୍ଧରି ଧଇଲ ବାମ କରେ
ବଣ ପୋଡ଼ିବେଳେ ଘୋର ଦାବାନଳୁ
ଉଦ୍ଧରି ରଖିଲ ବ୍ରଜ ବାଳେ ।
କହେ ଉପଇନ୍ଦ୍ର କବି କୁଳଚନ୍ଦ୍ର
ଶରଣ ମୁଁ ତୁମ୍ଭ ପାଦତଳେ ।"



## ତୃତୀୟ ପରିଚ୍ଛେଦ

# ଭଞ୍ଜ ସାହିତ୍ୟର ବିଶିଷ୍ଟ ଦିଗ ଓ ଦିଗନ୍ତ

ଉପେନ୍ଦ୍ର ଭାରତୀ ବିଚିତ୍ରବର୍ଣ୍ଣା । କବି ଉପେନ୍ଦ୍ର ବହୁ କାବ୍ୟ ସର୍ଜନା କରି ଉତ୍କଳ ସାହିତ୍ୟକୁ ଋଦ୍ଧିମନ୍ତ କରିଛନ୍ତି । ଉପେନ୍ଦ୍ର ତାଙ୍କର ସାରସ୍ୱତ ସମ୍ପଦର ଆଭିମୁଖ୍ୟ ସମ୍ପର୍କରେ ସୂଚନା ପ୍ରଦାନ କରି ଲେଖିଛନ୍ତି –

(କ) "କଳଙ୍କ ବିହୀନ ମୋ ଗୀତ । ଖଳ ରାହୁରେ ଅଦୂଷିତ ।
ବିଚିତ୍ର ସୁଧାକର ଏହି । ସୁମନାବୃନ୍ଦ ସୁଖଦାୟୀ ।
ନାରିକେଳ ଯେ ରସପୂର । ଭକ୍ଷି ନ ପାରଇ ବାନର ।
ତା'ର କି ସ୍ୱାଦୁ ନାଶ ହୋଇ । ପ୍ରସଙ୍ଗୁ ଗଲି ମଧ କହି ।"

(ଲାବଣ୍ୟବତୀ)

(ଖ) "ଏ ତ ପରାକୃତ କାବ୍ୟ ଛାନ୍ଦପ୍ରାନ୍ତ ସତ
ଦୃଷ୍ଟଦୃଷ୍ଟାନ୍ତର ଏଥି ଅଛି ବିଶେଷତ
ଘେନ ନୈଷଧ ପରାୟେ
ଉପଇନ୍ଦ୍ର କହେ ବୁଧ ପ୍ରମୋଦ କରାଏ ।" (କୋ.ବ୍ର.ସୁ)

(ଗ) "ଏ ଛାନ୍ଦ ଇକ୍ଷୁ ଲତିକା ରସ ଆସ୍ୱାଦନେ
ଅର୍ଥୀହେବ ଏଥି ଜ୍ଞାନ ରଦ ଥିଲା ଜନେ ।" (କୋ.ବ୍ର.ସୁ)

(ଘ) "ମୋହୁ ଭୁବନ ଚଉଦ ଛାନ୍ଦ ଗୀତ ରଞ୍ଜନ ପଦକୁପଦ
ସୁବୁଦ୍ଧି କାବ୍ୟ ପ୍ରଶଂସା ଏଥି ନିଶ୍ଚେ ସମ୍ଭବ ଯେ
ଘେନିବେ ସହୃଦୟ ଭାବରେ କହିବେ ସାଧୁ କବି ମୁଖରେ
ଏ ପ୍ରୀତିପଦ ଅର୍ଥ ବୁଧକୁ ବୋଧ କରିବ ଯେ ।" (ରାମଲୀଳାମୃତ)

(ଙ) "ଶିକ୍ଷା ଥିଲା ଜନ ଦେଖ ଏ ପୋଥି
ହେବ ନୋହିଲେ ସିନା ଏଥି ମତି ।" (ଚି.କା.ବ)

(ଚ) "ସହଜେ ଏକ ବର୍ଣ୍ଣନିୟମରୁ
ସକଳ ମୂର୍ଖକୁ ସନ୍ତୋଷ କରୁ ।" (ସୁଭଦ୍ରାପରିଣୟ, ଛା ୧୭/୨୪)

(ଛ) "ସିଦ୍ଧି କରି ଯେ କାବ୍ୟ ଅର୍ଥ ସେ ଯୋଡ଼ି
ଅଛିଦ୍ର ହାସେ ଆଦ୍ୟରସରେ ଜଡ଼ି ଯେ
କହେ ଉପଇନ୍ଦ୍ର ବର୍ଣ୍ଣଭଙ୍ଗୀରୁ ବାରି
ଛାନ୍ଦ ଗଙ୍ଗାଯମୁନା ସଙ୍ଗମ ପରି ଯେ ।" (କୋ.ବ୍ର.ସୁ.)

## ଭଞ୍ଜ ସହିତ୍ୟରେ ଆଳଙ୍କାରିକତା

କାବ୍ୟରେ ଅଳଙ୍କାରର ଗୁରୁତ୍ୱପୂର୍ଣ୍ଣ ଭୂମିକା ସମ୍ପର୍କରେ ବିଭିନ୍ନ ମନୀଷୀ ସ୍ୱ ସ୍ୱ ମତ ଉପସ୍ଥାପନ କରିଯାଇଛନ୍ତି । ଆଚାର୍ଯ୍ୟ ଦଣ୍ଡୀ କହିଛନ୍ତି –

"କାବ୍ୟ ଶୋଭାକରାନ୍ ଧର୍ମାନ୍ ଅଳଙ୍କାରାନ୍ ପ୍ରଚକ୍ଷତେ ।"
(କାବ୍ୟାଦର୍ଶ - ୨/୧)

ଆଚର୍ଯ୍ୟ ବାମନଙ୍କ ମତରେ –

"ସୌନ୍ଦର୍ଯ୍ୟଂ ଅଳଙ୍କାରଃ ।"
(କାବ୍ୟାଳଙ୍କାର ସୂତ୍ରବୃତ୍ତି - ୧/୧/୨)

ଆଚାର୍ଯ୍ୟ ଭାମହ ମତ ରଖିଛନ୍ତି –

"ନକାନ୍ତମପି ନିର୍ଭୂଷଂ ବିଭାତି ବନିତାମୁଖମ୍ ।"
(କାବ୍ୟାଳଙ୍କାର - ୧/୧୩)

ଉପେନ୍ଦ୍ରଥିଲେ ଶ୍ରେଷ୍ଠ ଆଙ୍କାରିକ କବି । ତାଙ୍କର ସମସ୍ତ କାବ୍ୟରେ ଶବ୍ଦାଳଙ୍କାର ଓ ଅର୍ଥାଳଙ୍କାରର ବିନ୍ୟାସ ଯୋଗୁଁ ସେଗୁଡ଼ିକ ବେଶ୍ ରୁଚିସମ୍ପନ୍ନ ହୋଇପାରିଛି । ଅଳଙ୍କାର ପ୍ରୟୋଗରେ କବି ଉପେନ୍ଦ୍ର ଅଦ୍ୱିତୀୟ । ଅର୍ଥୀଜନ ପ୍ରବରଙ୍କ କାବ୍ୟାନନ୍ଦ ଲାଭ ପାଇଁ ତଥା କାବ୍ୟାମୋଦୀ ପଣ୍ଡିତ ମାନଙ୍କର ମାନସକୁ ରଞ୍ଜନ କରିବା ପାଇଁ ଭଞ୍ଜ କବିମାନସ କାବ୍ୟରେ ଅଳଙ୍କାର ବିନ୍ୟାସ ପାଇଁ ବିଶେଷ ଯତ୍ନବାନ ଥିଲା ପରି ମନେହୁଏ । ତେଣୁ କବି ସ୍ୱୟଂ ଲେଖିଛନ୍ତି –

"ମୂର୍ତ୍ତିମନ୍ତ କରି ମୃଦୁଗୀତ ବିଚାରଇ
ଏଣୁ କରିଥିବ ଅଳଙ୍କାର ଯୁକ୍ତ ହୋଇ
ପଦ ସରଳ ଧ୍ୱନିରେ ମାନସ ମୋହିବ
ଅର୍ଥୀଜନ ପ୍ରବରଙ୍କୁ ଆନନ୍ଦ କରିବ ହେ ।" (ଲାବଣ୍ୟବତୀ)

ଉପେନ୍ଦ୍ର ପୁନଶ୍ଚ ଲେଖିଛନ୍ତି –

"ତରଳରେ ସାବର୍ଣ୍ଣ୍ୟ ଯା ବ୍ୟାକରଣେ ଲିହି
ସୁଚିତ୍ତେ କରଇ ଏହି ଗୀତ ହିତ ପାଇଁ ।" (ଲାବଣ୍ୟବତୀ)

ଏ ସମ୍ପର୍କରେ ଉପେନ୍ଦ୍ର ଆହୁରି ଗୁରୁତ୍ୱ ପ୍ରଦାନ କରି ଲେଖିଛନ୍ତି –

"ନାନା ଶବ୍ଦ ଅର୍ଥେ ଯେ ବିଚକ୍ଷଣ
ଯେହୁ ଜାଣେ ଅଳଙ୍କାର ଲକ୍ଷଣ
ସେହି କରୁ ଏ ଛାନ୍ଦ ବିବେଚନା ।" (କୋ.ବ୍ର.ସୁ.)

ପଣ୍ଡିତମାନେ ନିର୍ଦ୍ଧାରଣ କରିଛନ୍ତି ଯେ ଭଞ୍ଜଙ୍କର 'ଲାବଣ୍ୟବତୀ' କାବ୍ୟର ସମୁଦାୟ ୨୩୬୧ ପଦ ମଧ୍ୟରୁ ୧୨୪୧ ପଦ ଅଳଙ୍କାର ଯୁକ୍ତ । ଏଥିରେ ଶବ୍ଦାଳଙ୍କାର ସଂଖ୍ୟା ୨୬୬ ଏବଂ ଅର୍ଥାଳଙ୍କାର ସଂଖ୍ୟା ୯୭୫ । ସେହିପରି 'ରସଲେଖା' କାବ୍ୟର ପଦ ସଂଖ୍ୟା ୭୨୬ । ଏଥିରେ ଶବ୍ଦାଳଙ୍କାର ୯୧ ଓ ଅର୍ଥାଳଙ୍କାର ପଦ ୨୨୨ । 'ରସିକ ହାରାବଳୀ' କାବ୍ୟର ୩୮୭ ପଦ ମଧ୍ୟରୁ ଶବ୍ଦାଳଙ୍କାର ପଦ ୧୪୨ ଓ ଅର୍ଥାଳଙ୍କାର ୧୬୩ । 'ପ୍ରେମସୁଧାନିଧି' କାବ୍ୟର ପଦସଂଖ୍ୟା ୩୯୫ । ଏଥିରେ ଶବ୍ଦାଳଙ୍କାର ୨୩୪ ଓ ଅର୍ଥାଳଙ୍କାର ୨୨୮ । 'ସୁଭଦ୍ରାପରିଣୟ' କାବ୍ୟର ପଦସଂଖ୍ୟା ୭୩୭ । ଏଥିରେ ୧୬୯ ଶବ୍ଦାଳଙ୍କାର ଓ ୩୬୨ ଅର୍ଥାଳଙ୍କାର ରହିଛି । 'ବୈଦେହୀଶ ବିଳାସ' କାବ୍ୟର ପଦସଂଖ୍ୟା ୨୭୨୪ । ଏଥିରେ ରହିଛି ୧୧୩୦ ଶବ୍ଦାଳଙ୍କାର ଓ ୧୨୦୫ ଅର୍ଥାଳଙ୍କାର । 'କୋଟିବ୍ରହ୍ମାଣ୍ଡସୁନ୍ଦରୀ' କାବ୍ୟର ପଦସଂଖ୍ୟା ୧୪୭୦ । ଏଥିରେ ୬୪୨ଟି ଶବ୍ଦାଳଙ୍କାର ଓ ୭୧୩ଟି ଅର୍ଥାଳଙ୍କାର ରହିଛି ।

## ବିଭିନ୍ନ ଅଳଙ୍କାରର ଉଦାହରଣ

**ଆଦ୍ୟଯମକ :**

ଭିନ୍ନାର୍ଥ ବୋଧକ ଗୋଟିଏ ଶବ୍ଦ ପାଦର ଆଦ୍ୟରେ ଏକାଧିକ ଥର ବ୍ୟବହୃତ ହେଲେ ଆଦ୍ୟଯମକ ହୋଇଥାଏ ।

ଯଥା : ବିରାଜି ବିରାଜି ଅଛନ୍ତି ମୀନ ଭକ୍ଷଣ ପାଇଁ
ରାଜୀବ ରାଜୀବ ନୟନା ଏଥି ଖେଳା କରଇ ।
ସଲିଳେ ଉତ୍ତୁପ ଦେଖରେ ହୋଇଅଛି ଶୋଭନ
ସଲୀଳେ ଉତ୍ତୁପ ବଦନି ଖେଳିବାକୁ ମୋ ମନ । (ଲାବଣ୍ୟବତୀ)

**ମଧ୍ୟଯମକ :**

ଭିନ୍ନାର୍ଥବୋଧକ ଗୋଟିଏ ଶବ୍ଦ ପାଦର ମଧ୍ୟରେ ଏକାଧିକ ଥର ବ୍ୟବହୃତ ହେଲେ ମଧ୍ୟଯମକ ହୋଇଥାଏ ।

ଯଥା :

(୧) ଦେଖରେ ନଳିନି ନଳିନୀ ନଳିନୀରେ ପୂରିତ
ଭ୍ରମନ୍ତି ଭ୍ରମରେ ଭ୍ରମରେ ଭ୍ରମରେ ଏ ଶୋଭିତ । (ଲାବଣ୍ୟବତୀ)

(୨) ନବୀନ ଜୀମୂତ ଜୀମୂତ ସ୍ତନା କିଏ ଉଦିତ
ଏ ନୀଳ କମଳ କମଳ ବିନ୍ଦୁ ବହି ତେମନ୍ତ । (ଲାବଣ୍ୟବତୀ)

**ପ୍ରାନ୍ତଯମକ :**

ପ୍ରତ୍ୟେକ ପାଦ ଶେଷରେ ଏକ ଶବ୍ଦ ପ୍ରୟୋଗ ହୋଇ ଭିନ୍ନାର୍ଥ ପ୍ରକାଶକଲେ ପ୍ରାନ୍ତଯମକ ହୁଏ ।

ଯଥା : ବଶ ପ୍ରକାଶିତ ସୁମନ- ସର ସୁମନ ଶର
ମହୀକି ଆଣିଲା ସୁମନ - ସର ସୁମନଶର । (ଲାବଣ୍ୟବତୀ)

**ଆଦ୍ୟପ୍ରାନ୍ତ ଯମକ :**

ଭିନ୍ନାର୍ଥବୋଧକ ଏକଶବ୍ଦ ପାଦର ଆଦ୍ୟ ଓ ପ୍ରାନ୍ତରେ ବ୍ୟବହୃତ ହେଲେ ଆଦ୍ୟପ୍ରାନ୍ତ ଯମକ ହୁଏ ।

ଯଥା : ଭୁବନ ଏଥିରେ ପୂରିତ ମୋହେ ସର୍ବ ଭୁବନ
ଜୀବନ ବନ୍ଧୁ ଏ ନିଶ୍ଚୟ ପ୍ରାଣୀଙ୍କର ଜୀବନ । (ଲାବଣ୍ୟବତୀ)

**ସର୍ବଯମକ :**

ପଦର ପ୍ରଥମ ପାଦ ଓ ଦ୍ୱିତୀୟପାଦରେ ଆମୂଳଚୂଳ ସମାନ ଶବ୍ଦାବଳୀ ଏକ ଶୃଙ୍ଖଳାରେ ଭିନ୍ନ ଅର୍ଥରେ ବ୍ୟବହାର ହେଲେ ସର୍ବଯମକ ହୁଏ ।

ଅହି ମକର ତାପ ନାଶେ ଶୋଭା ସାରସଚକ୍ରେ
ଅହିମକର ତାପ ନାଶେ ଶୋଭା ସାରସଚକ୍ରେ । (ଲାବଣ୍ୟବତୀ)

**ଅନୁପ୍ରାସ :**

କୌଣସି ଗୋଟିଏ ପଦ ବା ବାକ୍ୟରେ ସ୍ୱରଧ୍ୱନିର ବୈଷମ୍ୟଥିବା ସତ୍ତ୍ୱେ ଏକ ବା ଏକାଧିକ ବ୍ୟଞ୍ଜନ ବର୍ଣ୍ଣର ପୁନଃପୁନଃ ଆବୃତ୍ତି ଘଟିଲେ ଅନୁପ୍ରାସ ଅଳଙ୍କାର ହୁଏ ।

ଯଥା : ଦେଖି ନବ କାଳିକା ବକାଳିକା ମାଳିକା ଆଳି କାଳିକା କାନ୍ତ ସ୍ମରି
ରାକ୍ଷା କେମନ୍ତେ କରି କରିବା ମତ୍ତକରି ଗତିକି ଏମନ୍ତ ବିଚାରି ସେ
ସହଚରୀ
ଭାବେ ବଞ୍ଚିଲେ ଏ କାଳକୁ

କଥାଥିବ କାଳ କାଳକୁ
ଏକେତ କ୍ଷୀଣ ଦିନ ହେଲା ଦୁର୍ଦ୍ଦିନ ଦିନ ନଳଭୁଁ ବଲ୍ଲଭ ମେଳକୁ ।
(ଲାବଣ୍ୟବତୀ)

**ଶ୍ଳେଷ :**

ବାକ୍ୟ ମଧ୍ୟରେ ବ୍ୟବହୃତ ହୋଇଥିବା ଏକ ଶବ୍ଦରୁ ଅନେକ ଅର୍ଥ ପ୍ରକାଶିତ ହେଲେ ଶ୍ଳେଷ ଅଳଙ୍କାର ହୁଏ । ଏହା ତ୍ରିବିଧ - ଅଭଙ୍ଗ, ସଭଙ୍ଗ ଓ ଭଙ୍ଗାଭଙ୍ଗ ।

(୧) ଜୟ ଜୟ ଜୟ ରାମ ଜନକ ସୁଖଦ
ଭୀମ ହରଷ ଦାନରେ ସଦା ବିଶାରଦ ।
ଚନ୍ଦ୍ରହାସ ଶୋଭାକର ସମସ୍ତ କାଳର
ଲକ୍ଷଣ ବନ୍ତ ଅଲକ୍ଷ ମୁଖ ମନୋହର । (ଲାବଣ୍ୟବତୀ)

(୨) ବାବୁ ନାକଶିରୀ ଦାନ ଯୋଗ୍ୟଯୋଷାକୁ
ବିହର କାନନ କର ଆଲିଙ୍ଗନକୁ । (ବୈ.ବି.)

**ମହାଯମକ :**

ପ୍ରତ୍ୟେକ ପାଦରେ ଭିନ୍ନାର୍ଥବୋଧକ ଏକ ଶବ୍ଦ ବହୁବାର ବ୍ୟବହୃତ ହେଲେ ମହାଯମକ ଅଳଙ୍କାର ହୁଏ ।

ଯଥା : ବସନ୍ତ ବସନ ବଶ ମହାଯମକରେ
ବସନ୍ତ ବସନ୍ତ ପକ୍ଷୀ ବସନ୍ତ ଦ୍ରୁମରେ ଯେ ।
ବିଥୀ ବିଥୀ ଶୋଭା ଦିଶି କୁମୁଦ କୁମୁଦ
ବିଲୋକ ହାସ ପ୍ରକାଶି କୁମୁଦକୁ ମୁଦ ଯେ ।
ବିକଶିତ ହୋଇଛନ୍ତି କେଶରୀ କେଶରୀ
ବିଳସେ ଶାଖାରେ ଦେଖ କେଶରି କେ ସରିଯେ,
ବିଦାରି ଯାଇଛି କରି କେଶରୀ କେଶରି
ବିହୀନ ହୋଇଛି ମାତ୍ର କେସରୀ କେଶରୀ ଯେ । (ବୈ.ବି)

**ମାଳଯମକ :**

ମାଳଯମକରେ ପ୍ରତ୍ୟେକ ପଦରେ ଏକଶବ୍ଦର ବାରମ୍ବାର ପ୍ରୟୋଗ ଲକ୍ଷ୍ୟ କରାଯାଏ ।

ବିଚାରର ମାଳ ଯମକରେ କବି ମନେ
ବୁଲେ ରାମ ରାମ ରାମନେତ୍ରୀ ଘେନି ବନେ ଯେ ।

ବୃହଭାନୁ ଭାନୁ ଭାନୁ ପ୍ରଭାତାପ ନାହିଁ
ବୃତ ତମାଳମାଳ ମାଳତୀ ଲତା ତହିଁ ଯେ ।
ବହଇ ନିର୍ଝର ଝର ଝର ଅବିରତ
ବିଶେଷ ତରଙ୍ଗ ରଙ୍ଗ ରଙ୍ଗଣୀ ଶୋଭିତ ଯେ ।
ବହି ଚନ୍ଦ୍ର ଚନ୍ଦ୍ର ଚନ୍ଦ୍ର ଶୀତଳକୁ ବାତ
ବହେ ମନ୍ଦ ମନ୍ଦ ମନ୍ଦସୁତ କରେ ରୁତ ଯେ । (ବୈ.ବି.)

**ବ୍ୟତିରେକ :**

ଉପମାନ ଅପେକ୍ଷା ଉପମେୟର ଉତ୍କର୍ଷ ବା ଅପକର୍ଷ କଥିତ ହେଲେ ବ୍ୟତିରେକ ଅଳଙ୍କାର ହୁଏ ।

ଯଥା : ବିହୁ ସମୁଦ୍ର ମନ୍ଥନ ଚନ୍ଦ୍ର ଜନମ ଯେଉଁ କାଳେ
ବିହୀନ କ୍ଷୀଣ କଳଙ୍କେ ଜାଣ ନିର୍ମଳ ହୋଇଥିଲେ ।
ବଦନେ ଜାନକୀର ସମାନ ମନ ଜାଣିଟି ବିହି
ବିମ୍ବବେଷ୍ଟନ ନୋହିଲା ବର୍ଣ୍ଣ ଭାବେଟି କାଟି ଦେଇ । (ବୈ.ବି.)

**ଦୃଷ୍ଟାନ୍ତ :**

ଯେଉଁଠାରେ ଉପମେୟ ଓ ଉପମାନ ସ୍ୱାଧୀନ ଭାବରେ ଉଲ୍ଲିଖିତ ହୋଇଥାନ୍ତି, ସାଧାରଣ ଧର୍ମବାଚକ ପଦଦ୍ୱୟ ଆପାତତଃ ଭିନ୍ନାର୍ଥ ବୋଧକ ହେଲେ ହେଁ ଯେଉଁଠାରେ ସାଧାରଣ ଧର୍ମର ବିମ୍ବପ୍ରତିବିମ୍ବଭାବଦ୍ୱାରା ଉପମାନ ଓ ଉପମେୟ ଭାବ ପରିସ୍ଫୁଟ ହୋଇଥାଏ, ତାହାକୁ ଦୃଷ୍ଟାନ୍ତ ଅଳଙ୍କାର ହୁଏ ।

ଯଥା : ତୁମୋ ପ୍ରତିଚକ୍ଷୁ ଯେଣୁ ହୋଇଛୁ ଅନ୍ତର
ଦିଶୁନାହିଁ କିଛି କାହିଁ ଆନ ପ୍ରତିକାର
ନୂଆ ଅନ୍ଧ ପ୍ରାୟେ ହୋଇ
ଅନୁକ୍ଷଣେ ଆକୁଳ ବଢୁଛି ପ୍ରାଣ ସହୀ । (ପ୍ରେମସୁଧାନିଧି)

**ବିରୋଧାଭାସ :**

ଯେଉଁଠାରେ ପରସ୍ପର ବିରୋଧୀ ପରି ପଦ ଜଣାପଡୁଥିଲେ ମଧ୍ୟ ବାସ୍ତବରେ ସେହି ଅର୍ଥରେ କୌଣସି ବିରୋଧ ଭାବ ନଥାଏ, ତେବେ ସେଠାରେ ବିରୋଧାଭାସ ଅଳଙ୍କାର ହୁଏ ।

ଯଥା : ବିବର୍ଜିତ ପଳାଶୀରେ ପଳାଶୀରେ ଘନ
ବିନାତପ ପ୍ରଭାତପ ପ୍ରଭାରେ ପ୍ରଧାନ ଯେ

ବିଭୂତି ବାଞ୍ଛକ ନୋହି ବିଭୂତି ବାଞ୍ଛକ
ବର୍ଜିତ କାମ ଉଦୟ କାମ ଉଦୟକ ଯେ । (ବୈ.ବି.)

**ଅନନ୍ୱୟ :**

ଗୋଟିଏ ବସ୍ତୁ ଉଭୟ ଉପମାନ ଓ ଉପମେୟ ରୂପରେ କଳ୍ପିତହେଲେ ଅନନ୍ୱୟ ଅଳଙ୍କାର ହୁଏ ।

ଯଥା : ତୋତେ ତୁ ପଟାନ୍ତରରେ
ମୋର ଅଶେଷ ତପ ପୁଣ୍ୟନାରୀ ସ୍ୱରୂପ
ହୋଇଛୁ ରାମାବରରେ । (ଲାବଣ୍ୟବତୀ)

**ଭ୍ରାନ୍ତିମାନ :**

ସାଦୃଶ୍ୟବଶତଃ ଯଦି ପ୍ରକୃତ ପଦାର୍ଥରେ ଅପ୍ରକୃତ ପଦାର୍ଥର ଭ୍ରମହୁଏ, ଏବଂ ସେହି ଭ୍ରମଯଦି କବିକଳ୍ପନାରେ ଚମତ୍କାରିତା ଲାଭକରେ, ସେଠାରେ ଭ୍ରାନ୍ତିମାନ ଅଳଙ୍କାର ହୁଏ ।

ଯଥା : (କ) ଶବରୀ ଶର୍ବରୀ ଶେଷେ ଅରଣ୍ୟକୁ ଯାଇ
ହରି ବିଦାରିତ କରିମୋତି ପଡ଼ିଥାଇ ଯେ ।
ବଦରି ଆଦରେ ନେଇ ସରୋବରେ ଧୋଇ
ବିକା ତା' ନଯିବ ବୋଲି ଆସନ୍ତି ପକାଇ ଯେ । (ଲାବଣ୍ୟବତୀ)

(ଖ) "ଅପୂର୍ବ ଅମ୍ବୁଜ ମୁଖକୁ ଚାହିଁ ଭୃଙ୍ଗ ଚକୋର
ଚୁମ୍ବିବା ଲୋଭରେ ଧାଇଁଲେ ଶ୍ରୁତି ଚାହିଁ କାତର ।
କେଶ ଦରଶନେ ରଥାଙ୍ଗ ଥାଇ ଆହାର ବଶେ ।
ବିଚ୍ଛେଦ ଭୟରୁ ପଳାଇଗଲେ ନ ରହି ପାଶେ ।" (ଲା.ବ)

**ଅପହ୍ନୁତି :**

ଯେତେବେଳେ ବର୍ଣ୍ଣନା କରାଯାଉଥିବା ବସ୍ତୁରେ ତା'ର ଧର୍ମକୁ ନିଷେଧ କରାଯାଇ ସେଠାରେ ଅନ୍ୟଏକ ବସ୍ତୁର ଧର୍ମ ଆରୋପିତ ହୁଏ, ସେଠାରେ ଅପହ୍ନୁତି ଅଳଙ୍କାର ହୁଏ ।

ଯଥା : ସୁନ୍ଦରୀ ଯେଡ଼େ ସେ ତେଡ଼େ ଚତୁରୀ
ଚତୁରୀ ଯେଡ଼େ ତେଡ଼େ ତା ଚାତୁରୀ ।
ଚାତୁରୀ ନୁହେଁ ସେ କାମ କତୁରୀ
ବ୍ରହ୍ମଚାରୀ ଧୈର୍ଯ୍ୟ ପାରେ କତୁରି । (ରସିକ ହାରାବଳୀ)

**ସିଂହାବଲୋକନ :**

ବୋଲନ୍ତି ରାମ ସିଂହାବଲୋକନେ ଅବଳା
ବଳାକାପନ୍ତି କରିଛି ଧ୍ରୁବକୁ ଧବଳା ଯେ ।
ବଳାଇ ମାନସ ମାନ ଅନା ପ୍ରାଣବନ୍ଧୁ
ବନ୍ଧୂକ ରଞ୍ଜନ ଅତି ରଙ୍ଗ ନିରବନ୍ଧୁ ଯେ ।
ବନ୍ଧୁର ପଥଟି ହେଜି ହେଜି ପଦ ବଳା
ବଳାଧ୍ୱନି ପ୍ରାୟ ଝିଲ୍ଲୀ ଶବଦ ପ୍ରବଳା ଯେ,
ବଳାପନ୍ତି ଫଳବତୀ ପ୍ରଫୁଲ୍ଲ ସେବତୀ
ବତିଶ ଲକ୍ଷଣା ଦେଖ ବିହରେ ପାର୍ବତୀ ଯେ ।” (ବୈ.ବି.)

**ବ୍ୟାଘ୍ରଗତି :**

ବ୍ୟାଘ୍ରଗତିରେ ସଧୀରେ କହନ୍ତି ବୀର ସେ
ବୀରତରୁ ଯେ ତରୁଣୀ କୁସୁମ ବରଷେ ଯେ ।
ବର ଉନ୍ନତ ଉନ୍ନତ ଉପମା ବିହୀନ
ବିହିତ କରିଛି ବିହି କକୁଭ ବଚନ ଯେ ।
ବଚ ସହିତରେ ସହି ପ୍ରକାଶେ ବିଭୂତି
ବିଭୂଷଣ ଚମ୍ପାକ୍ଷଣ ପୁଷ୍ପ ଅବିରତି ଯେ ।
ବିରଳ ଭାରତୀ କରି ଭାରତୀ ବିହାରେ
ବିହାୟସେ ଲାସ୍ୟ ଉଲ୍ଲାସକୁ ନ ବିସରେ ଯେ । (ବୈ.ବି.)

**ଅନ୍ୟୋନ୍ୟ ଅଳଙ୍କାର :**

ଦୁଇଟି ବସ୍ତୁ ପରସ୍ପରର କାରଣ ହେଲେ ଅନ୍ୟୋନ୍ୟ ଅଳଙ୍କାର ହୁଏ ।

ଯଥା : ତଥାପି ଭୂଷଣ ନୁହେ ଦୂଷଣ । ତୁହି ଚନ୍ଦ୍ରମା ସେ ରଜନୀ ଜାଣ ।
ପରସ୍ପରେ କରେ ଶୋଭା ଅଧିକା । ସୁକୁମାରୀ ବୋଲି ନକର ଶଙ୍କା ।
ଏଥୁଁ ହେବ ଭାରା । ପୟୋଧର ତୋ ଧରାଧରପରା ।
(କୋ.ବ୍ର.ସୁ. ୧୬।୬)

**ସାମାନ୍ୟ ଅଳଙ୍କାର :**

ସାଦୃଶ୍ୟବଶତଃ ଦୁଇଗୋଟି ସମାନବସ୍ତୁର ବିଶେଷ ଅଲକ୍ଷ୍ୟ ହେଲେ ସାମାନ୍ୟାଳଙ୍କାର ହୁଏ । ଯଥା –

ନାରୀ ନଦୀ ବାରି ନୋହିଲେ ତହିଁ ଘଡ଼ିଏ ଯାଏଁ
ହାସ କୁମୁଦ ନେତ୍ରମୀନ ମୁଖକମଳ ପ୍ରାୟେ ।

ଜଘନ ପୁଲିନ ଉରଜ ଚକ୍ରବାକ ମିଥୁନ
ରୋମାବଳୀ ଆଳି ଆବଳୀ ଗତିହଂସ ସମାନ । (ଲା.ବ.)

**ଅଳଙ୍କାର ତ୍ରୟ :**

କବିଙ୍କର 'ଲାବଣ୍ୟବତୀ' କାବ୍ୟର ସପ୍ତମ ଛାନ୍ଦରେ ଗୋଟିଏ ପଦରେ ପ୍ରାନ୍ତଯମକ, ଶୃଙ୍ଖଳା ଓ ଗୋମୂତ୍ରଛନ୍ଦ ଅଳଙ୍କାର ବ୍ୟବହାର କରାଯାଇଛି । ଏଥିରୁ କବି ଉପେନ୍ଦ୍ରଙ୍କର ଶବ୍ଦପାଣ୍ଡିତ୍ୟର ଚମତ୍କାରିତା ଲକ୍ଷ୍ୟ କରାଯାଏ । ଯଥା –

"ଦ ର ଚ ୟ ହ ର ଧୀ ର ପ୍ର ଶଂ ସା ର
ସା ର ସା ୟ କ ର କ ର ଏ ସଂ ସା ର ।
ସା ର ସା ର ଜି ତ ଗ ତି ହେ କୁ ମା ର
ମା ର ପ ର ସ ତ ଅ ତି ସୁ କୁ ମା ର ।" (ଲା.ବ.)

**ତ୍ରିଭଙ୍ଗ ଯମକ :**

ରାମା ଶିଶିରେ ଘୋର ନିଶିରେ ଦୁଃଖ ରାଶିରେ ଭାସି
ବସି ଏକାନ୍ତ ମାନସେ କାନ୍ତ ସ୍ୱରୂପ କାନ୍ତ ଘୋଷି ।
ରହି ବିଦେଶ କି ହୃଦଦେଶ ଦେଲା ସନ୍ଦେଶ ନାହିଁ
କେଉଁ ସୁନ୍ଦରୀ ମନ୍ଦଉଦରୀ ପ୍ରୀତି ଆଦରି ସେହି ।" (ପ୍ରେ.ସୁ.)

**ଉଲ୍ଲେଖାଳଙ୍କାର :**

ଏକ ବସ୍ତୁଯଦି ବିଭିନ୍ନ ବ୍ୟକ୍ତିଙ୍କଦ୍ୱାରା ବିଭିନ୍ନ ଭାବରେ ଗୃହୀତ ହୁଏ, ଅଥବା ନିଜର ବିଭିନ୍ନ ଗୁଣ ବଳରେ ବିଭିନ୍ନ ପ୍ରକାରରେ ଅବଧାରିତ ହୁଏ, ତେବେ ଉଲ୍ଲେଖାଳଙ୍କାର ହୁଏ ।

ବେଦ ବେଦାନ୍ତେ ବିଧାତା, ବ୍ୟାକରଣେ ହର
ସଙ୍ଗୀତରେ ନାରଦ, ଶୃଙ୍ଗାର ଶାସ୍ତ୍ରେ ମାର ।
କବି ପଣେ ଗଣେଶ, ଜ୍ୟୋତିଷେ ବୃହସ୍ପତି
ଅଶ୍ୱାରୋହେ ମିହିର, ଭୈରବ ପରା ଗତି ।
ଧନୁର୍ଦ୍ଧରେ ଅର୍ଜ୍ଜୁନ, ଗଦାରେ ବୃକୋଦର
ଦାନୀରେ କର୍ଣ୍ଣ ମାନୀରେ କୁରୁଦଣ୍ଡ ଧର ।
ବଳିଷ୍ଠରେ ବଳି, ଧାର୍ମିକରେ ଯୁଧିଷ୍ଠିର
ସୁନ୍ଦର ପଣରେ ତାର ସେହି ପଟାନ୍ତର ।" (ଲା.ବ.)

**ଅସମ ଅଳଙ୍କାର :**

ବର୍ଣ୍ଣନୀୟ ବସ୍ତୁ ସର୍ବଥା ନିରୂପମ ଏହି ଭାବ ଯଦି କବିଙ୍କ ଚତୁର୍ଯ୍ୟପୂର୍ଣ୍ଣ ରଚନାରୁ ଅଭିଧାବଳରେ ପ୍ରକାଶ ପାଏ, ତେବେ ଅସମ ଅଳଙ୍କାର ହୁଏ ।

ବିଜୟୀ ବୀର ବିଜୟ କର ଯିବା ମିଥିଳାପୁର
ବାହାର ହୋଇ ବିହାର ତହିଁ କରନ୍ତି ମୁନିବର ।
ବଇଦେହୀ ଯେ ସୁନ୍ଦରୀ ବ୍ରଜେ ଅମୂଲ୍ୟ ଚୂଡ଼ାମଣି
ବର୍ତ୍ତମାନ ଯେ ଭୂତ ଭବିଷ୍ୟେ ନାହିଁ ନୋହିବ ପୁଣି । (ବୈ.ବି.)

**ଉନ୍ମୀଳିତ ଅଳଙ୍କାର :**

ଦୁଇଟି ବସ୍ତୁ ଯଦି ଏକ ପରି ଜଣାଯାଏ, ତେବେ କୌଣସି କାରଣରୁ ପ୍ରଭେଦ ପ୍ରତୀତ ହେଉଥିଲେ ଉନ୍ମୀଳିତ ଅଳଙ୍କାର ହୁଏ ।

"ଉଞ୍ଚିଦେଲେ ପୀତାମ୍ବରକୁ ଉରୁସନ୍ଧିକି ରୁନ୍ଧି
ପିନ୍ଧି ନିତମ୍ବିନୀ ନିବିଡ଼େ ନୀବୀ ବନ୍ଧକୁ ବାନ୍ଧି ।
ତୋରା ହୋଇଲା ଗୋରା ଦେହ ଆଲିଙ୍ଗନକୁ ପାଇ
ଧଡ଼ି ନ ଥିଲେ ଶାଢ଼ୀ ଥିଲା ପରା ଦିଶନ୍ତା ନାହିଁ ।" (ଲା.ବ)

**ସନ୍ଦେହ ଅଳଙ୍କାର :**

ଉପମେୟ ଓ ଉପମାନର ପାର୍ଥକ୍ୟ ନିରୂପଣରେ ଗାଢ଼ ବିଚାର ଆବଶ୍ୟକ ହେଲେ ସନ୍ଦେହ ଅଳଙ୍କାର ହୁଏ ।

"ଭାଳୁଛି ନୁହଇ ମାର — ଅଛି ଫୁଲ ଧନୁ ଶର
ନୁହେ ସୁଧାକର ତହିଁ କଳଙ୍କ ଅଛି
ଆଉ ଦେବତାମାନଙ୍କୁ — କିମ୍ବା ଆଣିବା ମନକୁ
ମୋହରି ସୁକୃତ ଏ ପୁରୁଷ ହୋଇଛି
ମୋର ପୁଣି ସୁକୃତ କେତେ
ଏମନ୍ତ ଶୋଭା ଜାତ ହେବାରୁ ଜଗତେ ।" (ଲା.ବ.)

**ପ୍ରତୀପ ଅଳଙ୍କାର :**

ବର୍ଣ୍ଣନୀୟ ଉପମେୟକୁ ଉପମାନ ରୂପେ କଳ୍ପନା କରାଗଲେ ଅଥବା ଉପମାନର ବ୍ୟର୍ଥତା ପ୍ରତିପାଦିତହେଲେ ପ୍ରତୀପ ଅଳଙ୍କାର ହୁଏ ।

ଯଥା :

ପାଞ୍ଚେ ମନ୍ଦର କୁଚ ବଢ଼ିବାରେ
କିମ୍ବା ବୁଡ଼ି ନ ମଲି ପାରାବାରେ । (ଲା.ବ.)

**ସମ୍ଭାବନା ଅଳଙ୍କାର :**

ଯେଉଁଠାରେ ଏକବସ୍ତୁର ସିଦ୍ଧି ଉଦ୍ଦେଶ୍ୟରେ ଯଦ୍ୟର୍ଥ (ଯଦି ଏପରି ହେବ, ତେବେ ସେପରିହେବ)ର କଳ୍ପନା କରାଯାଏ, ସେଠାରେ ସମ୍ଭାବନା ଅଳଙ୍କାର ହୁଏ । ଯଥା–

"ଚିକୁରଶୋଭୀ ମୁକୁର ପ୍ରତିବିମ୍ବ ଆଲିଙ୍ଗନେ ଯେବେ ଆସିବ
ମୃଗ ତୃଷ୍ଣାଜଳ ତୃଷାକୁ ନାଶିବ ସ୍ୱପ୍ନ ତେବେ ସତ ଦିଶିବ
କହେ ସଚିବସୁତା ବଡ଼ ଦଇବ,
କାହା ମନେ ଥିଲା ଅଗାଧ ସମୁଦ୍ର ଚଳୁ ଭିତରେ ସମ୍ଭାଇବ ।"

(ଲା.ବ)

**ଯଥାସଂଖ୍ୟା ଅଳଙ୍କାର :**

ପ୍ରଥମ ନିର୍ଦ୍ଦେଶକ୍ରମେ ଯେଉଁ ବସ୍ତୁମାନେ ଥାଆନ୍ତି, ସେମାନଙ୍କର ସେହି କ୍ରମରେ ଅନ୍ୟ ବସ୍ତୁ ସହିତ ଅନ୍ୱୟ ଘଟିଲେ ଯଥାସଂଖ୍ୟା ଅଳଙ୍କାର ହୁଏ ।

ବୈଦେହୀ ଶ୍ରୀରାମ କିସେ କରିଣୀ କରୀ
ବିନୋଦ ନଦୀରେ କୁଞ୍ଜ କୁଟୀରେ କରି । (ବୈ.ବି.)

**ଲଳିତ ଅଳଙ୍କାର :**

ପ୍ରସ୍ତୁତରେ ତା'ର ପ୍ରତିରୂପ ଅପ୍ରସ୍ତୁତ ବୃତ୍ତାନ୍ତ ବର୍ଣ୍ଣିତ ହେଲେ ଲଳିତ ଅଳଙ୍କାର ହୁଏ । ଯଥା–

"ପୁଣି ବୋଲଇ ହେ ଜାଣି ମୁଁ ନଥିଲି ଦଇବ ତୁ ଏଡ଼େ ଦାରୁଣ
କ୍ଷୁଧାତୁରକୁ ସୁଧାତୁଲ୍ୟ ଭୋଜନ ପରଶିଲୁ କେଉଁ କାରଣ ।
ଭୁଞ୍ଜି ବସିବା, ବେଳେ କୁଳିଶ ଦୃଷ୍ଟି କଲୁ
ଯେବେ କଲୁ ତେବେ ପରାଣ ନ ନେଲୁ ଏଡ଼େ ବ୍ୟାକୁଳ କିମ୍ପାକଲୁ ।"

(ଲା.ବ)

**ଏକାକ୍ଷର :**

ଏଥିରେ ଗୋଟିଏ ମାତ୍ର ଅକ୍ଷର ବ୍ୟବହୃତ ହୋଇଥାଏ । ଯଥା –

"କକୁ କକୃ କୋକୋ କାକ କାକା କକୁ କୁକ
କକେ କକ କେକୀ କେକୋ କକି କୀଙ୍କ କକ ।
ନାଶି ଏମାନଙ୍କୁ ପୋଷି ବ୍ୟାଧ ବ୍ୟାଳ ତେବେ
ରଖି ରଖି ଗୋପ୍ୟପୁରେ ବଞ୍ଚାଇଲୁ ଭାବେ ।"

(ପ୍ରେ.ସୁ- ୧୬ ଛାନ୍ଦ)

ଅର୍ଥ – କକୁ – ବର୍ଷାକାଳ ପବନକୁ
କକୃ – ଡାହୁକ ଶବ୍ଦକୁ
କୋକୋ – ଚକ୍ରବାକ ଶବ୍ଦକୁ
କାକକାକା – କାକର କାକା ଶବ୍ଦକୁ
କକୁ – ବର୍ଷା ଜଳକୁ
କ୍ରକ – କରକା ପଥରକୁ
କିକେ – ମୟୂର ଶବ୍ଦକୁ
କକ – ଝିଙ୍କର ନାଦକୁ
କେକୀ – ମେଘ ଘଡ଼ଘଡ଼ିକୁ
କେକୋ – ଭେକ ଶବ୍ଦକୁ
କକି – କଙ୍କି ଶିଆଳିର କିଙ୍କ ଶବ୍ଦକୁ ଶୁଣି
କକ – କାମତାପକ ଜାଣିବା ସକାଶେ

**ଦ୍ୱିଅକ୍ଷର :**

"ରସାରେ ସାର ସୁରସ ସରସୀ
ସଂସାରଶିରୀ ସୁରସ ସରସୀ ।" (ଚି.କା.ବ)

**ଏ ସକାର ତ୍ରୟ :**

"ସାଂଶ ଶଶୀ ଶିଶୁ ଶ୍ରୀଶେଷା ଶେଷ
ସାଂଶ ଶଶୀ ଶିଷୁ ଶ୍ରୀର୍ଶେଶ ଶ୍ରୀଶ ।" (ଚି.କା.ବ)

**ଓଷ୍ଠ୍ୟ :**

ଭୀମ ପ୍ରାଭବ ଭୂମିପ ପ୍ରାଭବେ
ବାଷ୍ପ ପ୍ରଭବ ଭବଭବ ଭାବେ । (ଚି.କା.ବ)

**ଅନ୍ତର୍ଲିପି :**

କୌଣସି ପଦର ଆଦ୍ୟ ଏବଂ ପ୍ରାନ୍ତ ଅକ୍ଷରକୁ ବାଦ୍‌ଦେବାପରେ ମଧ୍ୟବର୍ତ୍ତୀ ଅକ୍ଷର ଗୁଡ଼ିକରୁ ଯେଉଁ ଅର୍ଥ ପ୍ରକାଶିତ ହୁଏ, ତାହାକୁ ଅନ୍ତର୍ଲିପି କୁହାଯାଏ ।

ବିହାରସ୍ଥାନ କେ ମୀନ ମାନଙ୍କ ଅଟଇ । ବନ ।
ବାୟସରେ କେହୁ ପ୍ରତିପାଳିତ ହୁଅଇ ଯେ । ପିକ ।
ବିଭାବରୀ ପ୍ରକାଶେ କି କରେ ପକ୍ଷୀଆଳୀ (ରୁତ)
ବିରୁପାକ୍ଷ ନେତ୍ରାନଳେ କେହୁ ଗଲା ଜଳି ଯେ । ମାର ।

ବିଷ୍ଣୁ କୋଳେ ସର୍ବକାଳେ କେହୁ ମନୋହର । ରମା ।
ବିଶ୍ୱରେ କରୁଛି କେହୁ ପର ଉପକାର ଯେ । ତରୁ ।
ବାନରଙ୍କର ପ୍ରସିଦ୍ଧ ନାମ କେ ଜଗତେ । କପି ।
ବିଚାର ଗ୍ରହ ଗଣନା ସଂଖ୍ୟା ପୁନଃ କେତେ ଯେ । ନବ ।
ବୟସୀ ସ୍ୱୟମ୍ବରେ କନ୍ୟାକୁ କିସ କହି । ବର ।
ବୋଇଲା ଜୀବ ମଧରେ ସାରସତ୍ୱ କେହି ଯେ । ନର ।
ବୋଲନ୍ତି ଯବନେ ଇଷ୍ଟଦେବରେ କି ଭାଷ । ପୀର ।
ବସୁଧାପତି ପ୍ରଜାଙ୍କଠାରୁ ଘେନେ କିସ ଯେ । କର ।
ବାମନମୂର୍ତ୍ତି ନନ୍ଦନ ବୋଲାନ୍ତି କାହାର । ଉର ।
ବାଞ୍ଛା ସଂସାରୁ କି ହୋଏ ଗୁରୁଶିଷ୍ୟ ଠାର ଯେ । ତର ।
ବିଧିରେ ଯୁଦ୍ଧରେ କେହୁ ବଚନ ଚହଳ । ମାର ।
ବସନ୍ତ ହୋଇଲେ କିସ କରଇ କୋକିଳ ଯେ । ରବ ।
ବିପ୍ରଲବ୍‌ଧା ପ୍ରଭାତେ କି କରେ ଉପକାନ୍ତେ । ମାନ ।
ବ୍ରହ୍ମାଣ୍ଡେ ଜୀବନମୁକ୍ତ ଅଟଇ କେ ସତେ ଯେ । ତପୀ ।
ବେଦେ କି ଆଉ ଅଥର୍ବ ଯଜୁଃ ସାମ ତେଜି । ରକ ।
ବସନ୍ତେ କେକେ ବିଯୋଗୀ ଶତ୍ରୁ କହ ହେଜି ଯେ ।
ବନ ପିକ ରୁତମାର ବୋଲେ ବଇଦେହୀ
ବିଶେଷ ତୋଷ ଚୁମ୍ବନ ଆଲିଙ୍ଗନ ବିହି ଯେ ।

(ବୈ.ବି.- ଊନବିଂଶ ଛାନ୍ଦ)

**ବହିର୍ଲିପି :**

(ଶିବ) ବନ୍ଦ୍ୟକେ ଜଗତେ, କେହୁ ତିଳକର ସ୍ଥାନ । (ଭାଲ)
(ସଭା) ବସି ରାଜା କି କରି, ବେଶ୍ୟାର କି ରଞ୍ଜନ ଯେ । (ରୂପ)
(ଚଣ୍ଡୀ) ବ୍ୟୋମକେଶ ମୋହିନୀ କେ, ଶିଶୁ କେ ପାଳଇ । (ମାତା)
(ପଶା) ବଡ଼ଖେଳରେ କେ ଘେନ, ଘନ କି ମୁଞ୍ଚଇ ଯେ । (ନୀର)
(କବି) ବିରଚେ କେହୁ ପ୍ରବନ୍ଧ, ଋଷି କି କରନ୍ତି । (ତପ)
(ଗିରି) ବହେ ଉତ୍ତୁଙ୍ଗ ଶୃଙ୍ଗ କେ, ବିପ୍ରେ କି ହୁଅନ୍ତି ଯେ । (ବ୍ରତ)
(ଗଦା) ବିଷ୍ଣୁ ଆୟୁଧକେ ଚକ୍ରବିନା, କେ ଅଗମ୍ୟ । (ବନ)
(ଲୋକ) ବ୍ରହ୍ମାକି ପାଳନ୍ତି, କେହୁ ରଚନ୍ତି ସଂଗ୍ରାମ ଯେ । (ବୀର)

(ବୈ.ବି.- ଊନବିଂଶ ଛାନ୍ଦ)

ଶ୍ରୀରାମଙ୍କର ଏହି ପ୍ରଶ୍ନର ଉତ୍ତରରେ ଷୋହଳ ଗୋଟି ଶବ୍ଦଲେଖି ପ୍ରତ୍ୟେକ ପଦର ବାମ ଅକ୍ଷର ଲିଭାଇଦେଲେ ରହିଲା– "ବଲଭାପଣ୍ଡିତାସାର, ବିପରୀତଦାନକର ।"

## ଦାମ୍ପତ୍ୟ ଜୀବନର ଜୟଗାନ :

ଉପେନ୍ଦ୍ର ଦାମ୍ପତ୍ୟ ଜୀବନର ଜୟଗାନ କରିଛନ୍ତି । ଜୀବନରେ ଦାମ୍ପତ୍ୟ ସୁଖର ଶ୍ରେଷ୍ଠତା ପ୍ରତିପାଦନରେ ଉପେନ୍ଦ୍ର ଅଗ୍ରଣୀ କବି । ମଧୁର ଦାମ୍ପତ୍ୟ ଜୀବନ ନିକଟରେ ସମସ୍ତ ଐଶ୍ୱର୍ଯ୍ୟ ତୁଚ୍ଛ । ତେଣୁ ଅନୁଭବୀ ଉପେନ୍ଦ୍ର ବରୁଣ ଓ ଇନ୍ଦ୍ର ସମ୍ପତ୍ତି ଠାରୁ ଦାମ୍ପତ୍ୟ ସୁଖକୁ ଶ୍ରେୟ ବିବେଚନା କରିଛନ୍ତି । ନିମ୍ନ ପଂକ୍ତିମାନଙ୍କରୁ ଦାମ୍ପତ୍ୟ ଜୀବନର ମହାନୀୟତା ଅନୁଭବ କରିହୁଏ ।

(କ) "ମହାସୁଖ ନାହିଁ ଦମ୍ପତିରୁ, କି କାର୍ଯ୍ୟ କୁବେର ସମ୍ପତ୍ତିରୁ
ଜୀବନ ଯିବାର ବଡ଼ ତ ନୁହଁଇ ଯୁବାକୁ ଯୁବତୀ ବିଚ୍ଛେଦରୁ
ପରମ ପଦାର୍ଥ ପୀରତିରୁ, ବଡ଼ ହୋଇ ସୁଖ ସୁରତିରୁ
ନାହିଁ ନ ଥିବ ନୋହିବ ସର୍ବମତେ ତହିଁକୁ ପ୍ରତିକାରଣ ଭୀରୁ ।" (ର.ହା)

(ଖ) "କି ବଡ଼ ହେବା ନୃପତି କି ବଡ଼ ଇନ୍ଦ୍ର ସମ୍ପତ୍ତି
ସବୁସୁଖ ଉତପତ୍ତି ସ୍ଥାନ ଦମ୍ପତି ।"
ପାଣ୍ଡବେ ଘେନି ଦ୍ରୁପତୀ ସୀତା ଘେନି ରଘୁପତି
ମାନି ନ ଥିଲେ ବିପତ୍ତି, ହେଲା ପ୍ରାପତି
ନାଶଇ ବିରହ ତପତି, ମାରଶରକୁ ସେ ବାଳା ବଜ୍ରଗୁପତି ।
(ପ୍ରେ.ସୁ. – ୭ମ ଛାନ୍ଦ)

(ଗ) "ପରମଦ୍ରବ୍ୟ ପୀରତି ପରମସୁଖ ସୁରତି
ରତିରୁ ଜାତ ପୀରତି, ପ୍ରୀତିରୁ ରତି
ରାମାରୁ ରମ୍ୟ ମୂରତି ନାହିଁ ଏ ତାର କୀରତି
ଏହୁ ତିନିହେଁ ହରନ୍ତି ଚିତ୍ତ ଧୃରତି ।" (ପ୍ରେ.ସୁ. –୭ମ ଛାନ୍ଦ)

(ଘ) "ସୁଖୀ ହୋଇଥିବେ ନୃପ ଉପଜୀବୀ ନୋହି
ବିଦ୍ୟାଥିବ ଦିବ୍ୟସ୍ତିରୀ ମିଳିଥିବ ତହିଁ ଯେ ।
କି ହେବ ଇନ୍ଦ୍ର ହୋଇଲେ ସର୍ବ ସମ୍ପଦେ ସେ
ସ୍ତିରୀ ହୀନ ଠାରୁ ପାପୀ ନାହିଁ ମହୀ ଦେଶେ ଯେ ।"
(ଲା.ବ.–୧୮ଶ ଛାନ୍ଦ)

(ଙ) "ପ୍ରୀତି ହୋଇ ଯେବେ ଏଡ଼େ ମଧୁର
କ୍ଷୁଧା ତୃଷା ନିଦ୍ରା ହୁଏ ବିଧୁର
ପୁଣି ଦଇବେ ହୋଇଲେ ଦମ୍ପତ୍ତି
ପଦତଳେ ମିଳେ ଇନ୍ଦ୍ର ସମ୍ପତ୍ତି ।" (ର.ହା.-୪ର୍ଥ ଛାନ୍ଦ)

(ଚ) ବାଳା ଦୁଃଖେ ଦୁଃଖୀ ବାଳା ସୁଖେ ସୁଖୀ ସମସ୍ତ ପ୍ରକାରେ ମୁହିଁ
ମୋ ଜୀବନ ପାଇ ଜୀଇଥାଉ ପଛେ ଶରଦ ଚନ୍ଦ୍ରମା ମୁହିଁ । (ଲା.ବ)

(ଛ) ଜବାଧରୀ ଦେହ ଇତର ନୁହଇ ଯୁବା ବଇକୁଣ୍ଠପୁର
ପରମପଦବୀ ଏମନ୍ତ ହୋଇଲେ ଭୋଗ ନୋହିବକି ମୋର । (ଲା.ବ)

(ଜ) ଯିବ ସହସ୍ରଜନ୍ମେ କି ପାସୋର
ଅମୃତରୁ ପ୍ରିୟାବାଣୀ ମଧୁର ।
ଆଉ ଭେଟିବି ନୋହୁଛି ପରତେ
ଭେଟ ହେବା ଉପାୟ ଅଛି ଏତେ ।
ପୁଣି ବିରହ ଅନଳେ ଦହନ
ହୋନ୍ତା ଏ ମୋହର ତନୁ ବହନ ।
ଭସ୍ମ ଉଡ଼ାଇ କୃପାରେ ପବନ
ନେଇ ପକାନ୍ତା କାନ୍ତା ସନ୍ନିଧାନ ।
କିସ ବୋଲି ବାଳା କରନ୍ତା ଦୃଷ୍ଟି
ତହିଁ ପରେ ହୁଅନ୍ତା ସୁଧା ବୃଷ୍ଟି ।
ହୋଇ ମୂର୍ତ୍ତିବନ୍ତ ମୁଁ ଚାହିଁ ମୁଖ
କର ଯୋଡ଼ି କହନ୍ତି ସବୁ ଦୁଃଖ ।
ଆହା ବୋଲି ସାହା ହୋଇ ସୁମୁଖୀ
ମୋତେ କରନ୍ତା ସେହିକ୍ଷଣି ସୁଖୀ ।" (ଲାବ- ଦ୍ୱିଚତ୍ୱାରିଂଶ ଛାନ୍ଦ)

(ଝ) "ଦୂରେ ଥିଲେ ପାଶେ ଅଛି ଥିବୁ ଏହାଘେନି
କେତେଦୂରେ ଚନ୍ଦ୍ର କେତେ ଦୂରେ କୁମୁଦିନୀ
ପ୍ରୀତି ଅଭେଦ ତାଙ୍କର
ଯେତେ ଦୂରେ ଥିଲେ ଯେ ଯାହାର ସେ ତାହାର ।"

## ପରକୀୟା ନୁହେଁ, ଏକ ପତ୍ନୀବ୍ରତ :

କବିସମ୍ରାଟ ଉପେନ୍ଦ୍ର ଭଞ୍ଜ ଏକପତ୍ନୀ ବ୍ରତର ଉପାସକ । ପରକୀୟା ପ୍ରୀତିକୁ ସେ ନାପସନ୍ଦ କରିଛନ୍ତି । ଦାମ୍ପତ୍ୟଜୀବନର ମଧୁରତା ଫୁଟି ଥାଏ

ସ୍ୱକୀୟା ପ୍ରୀତିରେ । ଉପେନ୍ଦ୍ର ଥିଲେ ସଂଯମୀ ଏବଂ ଉଦାରପୁରୁଷ । ସେ ବିଧିବଦ୍ଧ ନୈତିକ ଜୀବନ ଯାପନ କରୁଥିଲେ । ବସ୍ତୁତଃ ରାମତାରକ ମନ୍ତ୍ରରେ ଦୀକ୍ଷିତ ହୋଇଥିବାରୁ ସେ ଜୀବନକୁ ଆଧାତ୍ମିକ ମାର୍ଗରେ ଅତିବାହିତ କରୁଥିଲେ । କତିପୟ ସମାଲୋଚକ ତାଙ୍କୁ ସ୍ତ୍ରୈଣ ଓ ଅହଙ୍କାରୀ କବି ରୂପେ ବର୍ଣ୍ଣନା କରିଛନ୍ତି । କିନ୍ତୁ ଉପେନ୍ଦ୍ରଙ୍କ ଚରିତ୍ରରେ ଏପରି ଦାଗ ନାହିଁ । ଭଞ୍ଜ ସାହିତ୍ୟକୁ ମଧ ଅଶ୍ଳୀଳ ବୋଲି କହି ଅବଜ୍ଞା କରିବା ଆଦୌ ସହୃଦୟତାର ପରିଚୟ ନୁହେଁ । ଏକପତ୍ନୀବ୍ରତ ସମ୍ପର୍କରେ କବି ଉପେନ୍ଦ୍ରଙ୍କ ଦୃଷ୍ଟିଭଙ୍ଗୀ ଏହିପରି ଥିଲା –

(କ) ପରଦ୍ରବ୍ୟ ପରସ୍ତିରୀ ହରଣକୁ
ଲେଖୁ ଶୁଭ କରି ତହୁ ମରଣକୁ । (ଲା.ବ.)

(ଖ) ମିଥିଲା ନବ ସଙ୍ଗମ କାଳେ ଯେ କଲେ ନିୟମ
ଏକପତି ଏକପତ୍ନୀ ବ୍ରତ
ଜଗତେ ସେହୁ ଦମ୍ପତ୍ତି ସାଧୁଙ୍କ ସୁଖ ସମ୍ପତ୍ତି
ମଧୁର ଆକୃତି ଆଲୋକିତ ସେ
ତାଙ୍କ ପାଦ, ମହାବିପଦକୁ ନାଶ କରେ
ଚିତ୍ତେ ଚିନ୍ତି ଉପଇନ୍ଦ୍ର ଭଞ୍ଜ ପରମ ଆନନ୍ଦ
କହେ ରସିକ ଜନଙ୍କ ହିତ ହେ ।
(ଲା.ବ.- ଅଷ୍ଟତ୍ରିଂଶ ଛାନ୍ଦ)

ସେହିପରି 'ବୈଦେହୀଶବିଳାସ' କାବ୍ୟରେ ଶ୍ରୀରାମ ଓ ସୀତାଙ୍କର ବାସର ରାତିରେ ସଂକଳ୍ପ ବେଶ୍ ଉଚ୍ଚକୋଟୀର, ଆଦର୍ଶବ୍ୟଞ୍ଜକ ଓ ହୃଦୟଗ୍ରାହୀ । କବିଙ୍କ ଭାଷାରେ–

(ଗ) "ବିଦ୍‌ଗଧ ଶ୍ରୀରାମଚନ୍ଦ୍ର କହେ
ବନ୍ଧୁ! ଜୀବନ ଥିବାର ଏ ଦେହେ
ବିଳାସିନୀ ନ କରିବି ଆନକୁ
ବୋଲି ଛୁଇଁ ଦୀପ ହୁତାଶନକୁ ।"

ଦେବୀ ସୀତା ମଧ ସଂକଳ୍ପ କଲେ –
ବଇଦେହୀ କେଶୁଁ କାଢ଼ି କେତକୀ
ବର୍ଣ୍ଣଲିଖିତ ପୋଛି କସ୍ତୁରୀକି ।
ବଳିନାହିଁ ଆନେ ଆଜଯାଏ ତ
ବଳାଇବି ଜନ୍ମେ ଜନ୍ମେ ମୋ ଚିତ୍ତ ।

ବରମଣ୍ଡପରୁ ଯିବ ବାହୁଡ଼ି
ବାର୍ତ୍ତାବହେ ତୁମ୍ଭକୁ ନେବି ଲୋଡ଼ି
ବୀର ମୁକୁଟେ ପତ୍ର କରି ଦତ୍ତ
ବିନ୍ୟସ୍ତ ଯେ ପ୍ରଦୀପେ କଲେ ହସ୍ତ । (ବୈ.ବି.)

ପୁନଶ୍ଚ ଉପେନ୍ଦ୍ରଙ୍କ ଦୃଷ୍ଟିରେ –

(ଘ) ବାନ୍ଧବୀ ପାଶରେ ଥାଉଁ ଥାଉଁ
ତା' ମୁଖ ପଦ୍ମକୁ ଚାହୁଁ ଚାହୁଁ
ଯେଉଁ ପୁରୁଷ ପ୍ରାଣତ୍ୟାଗ କରିଛି
ତା ସମ ସୁକୃତୀ କାହିଁ ଆଉ । (ର.ହା.୮/୭)

## ଶୃଙ୍ଗାରିକତା :

ଶୃଙ୍ଗାରିକତା ଭଞ୍ଜ ସାହିତ୍ୟର ଅନ୍ୟ ଏକ ଦିଗ । ଉପେନ୍ଦ୍ର ଥିଲେ ଶୃଙ୍ଗାରୀ କବି । ସେ ଶୃଙ୍ଗାର ରସର ଶ୍ରେଷ୍ଠତା ପ୍ରତିପାଦନ କରିଛନ୍ତି । ଶୃଙ୍ଗାରରସକୁ ଶ୍ରେଷ୍ଠରସ ସ୍ୱରୂପ ମାଘ, ଶ୍ରୀହର୍ଷ, ଭବଭୂତି, ଗୋବର୍ଦ୍ଧନାଚାର୍ଯ୍ୟ, ଧୋୟୀ, ଜୟଦେବ, ଭୋଜରାଜ ପ୍ରଭୃତି କବିମାନେ ଗ୍ରହଣ କରିଛନ୍ତି । ଶୃଙ୍ଗାର ରସକୁ ଆଦିରସ, ମଧୁରରସ ଓ ଉଜ୍ଜ୍ୱଳରସ କୁହାଯାଏ । ଧ୍ୱନ୍ୟାଲୋକ ଗ୍ରନ୍ଥରେ ଉଲ୍ଲେଖ ଅଛି – "ଶୃଙ୍ଗାର ଏବ ମଧୁରଃ ପରଃପ୍ରହ୍ଲାଦନୋ ରସଃ, ତନ୍ମୟଂ କାବ୍ୟମାଶ୍ରିତ୍ୟ ମାଧୁର୍ଯ୍ୟଂ ପ୍ରତିତିଷ୍ଠିତି ।" ସେହିପରି ଭୋଜରାଜ ଲେଖିଛନ୍ତି – "ଶୃଙ୍ଗାରୀ ଚେତ୍ କବିଃ କାବ୍ୟେଜାତଂ ରସମୟଂ ଜଗତ୍ ।" ସେମାନଙ୍କ ପଦାଙ୍କ ଅନୁସରଣ କରି ଉପେନ୍ଦ୍ର ଶୃଙ୍ଗାର ରସର ଶ୍ରେଷ୍ଠତ୍ୱ ଦର୍ଶାଇଛନ୍ତି । ନାୟକ ଓ ନାୟିକାଙ୍କର ପ୍ରେମ, ବିରହ, ମିଳନ ସମ୍ପର୍କିତ ଚିତ୍ର ତାଙ୍କ କାବ୍ୟକୃତିରେ ଚିତ୍ରିତ । କବି ଉପେନ୍ଦ୍ର ଲେଖିଛନ୍ତି–

"ନବରସରେ ସାର ଆଦ୍ୟେ ଲେଖି ଶୃଙ୍ଗାର
ରତି ପରମ ସୁଖରେ ।
ଯିବାପାଇଁ ପାସୋର ବଲ୍ଲଭୀନାମ ସାର
ଦେଇଛି ଶାସ୍ତ୍ରେ ଦେଖରେ ।" (ଲା.ବ.)

ପୁନଶ୍ଚ ଉପେନ୍ଦ୍ର ଲେଖିଛନ୍ତି –

"ବିଚାରଇ କରିବି ଉତ୍ତମ ଛାନ୍ଦ ଗୀତ
ରସସାର ଶୃଙ୍ଗାର ତହିଁ ହେବ ବ୍ୟକ୍ତ ।
ବାତ୍ସ୍ୟାୟନ ଋଷିଙ୍କୁ ଏ ରସ ଗୋଚର
ଗୀତେ କହେ ଉପଇନ୍ଦ୍ର ଭଞ୍ଜ ବୀରବର ହେ ।" (ର.ହା.)

'ପ୍ରେମ ସୁଧାନିଧି' କାବ୍ୟରେ ମଧ୍ୟ ଉପେନ୍ଦ୍ର କହିଛନ୍ତି –

'ଉଜ୍ୱଳ ଉଜ୍ୱଳରସେ ଗୀତ ହୋଇବ
ମାନସ ମାନସ ହଂସ ପ୍ରାୟେ କ୍ରୀଡ଼ିବ ।'

ଶୃଙ୍ଗାର ରସର ଶ୍ରେଷ୍ଠତା ପ୍ରତିପାଦନ କରିବାକୁ ଯାଇ କବି ଲେଖିଛନ୍ତି –

"ଏ ରସେ ମନ ନ ଘେନଇ ଯାହାର
ସେହି ନର ପଶୁ ଘେନ
ଯେଉଁ ରସରେ ବ୍ରହ୍ମାବଶ ହୋଇଛି
କାହିଁଛି ତାହା ସମାନ ?" (ଲା.ବ)

ପୁନଶ୍ଚ କବି କହନ୍ତି –

"ଜାଣି ନଥିଲାରୁ ଏ ରସ ଏମନ୍ତ
ସ୍ମରକୁ ଦହିଲେ ହର
ଜାଣିଲା ଦିନରୁ ଯୁବତୀକି କଲେ
ଅର୍ଦ୍ଧ ଅଙ୍ଗେ ଅଙ୍ଗୀକାର ।
ଆଜନ୍ମ ବ୍ରହ୍ମଚାରୀ ପଣେ କେ ବଡ଼
ବୁଝ ଋଷ୍ୟଶୃଙ୍ଗଠାରୁ
ନିଜ ଦୀକ୍ଷା ଛାଡ଼ି ଶିକ୍ଷା କଲେ ରସ
ରୂପାଜୀବା କରି ଗୁରୁ ।" (ଲା.ବ.)

ଭଞ୍ଜସାହିତ୍ୟରେ ଉଭୟ ସମ୍ଭୋଗ ଶୃଙ୍ଗାର ଓ ବିପ୍ରଲମ୍ଭ ଶୃଙ୍ଗାରର ନିଖୁଣ ବର୍ଣ୍ଣନା ରହିଛି ।

## ବହୁଶାସ୍ତ୍ରଦର୍ଶିତା :

ଉପେନ୍ଦ୍ର ସାହିତ୍ୟକୁ ଆକଳନ କଲେ ଜଣାଯାଏ ଯେ ସେ ବିଶାଳ ଜ୍ଞାନର ଅଧିକାରୀ ଥିଲେ । ଉପେନ୍ଦ୍ର ଭଞ୍ଜ ଐଶୀଶକ୍ତିର ଅଧିକାରୀ ଥିଲେ ମଧ୍ୟ ବହୁଗ୍ରନ୍ଥ ଅଧ୍ୟୟନ ଏବଂ ବହୁଶାସ୍ତ୍ର ଅନୁଶୀଳନ ତାଙ୍କ ପ୍ରତିଭାକୁ ଦୀପ୍ତିମନ୍ତ କରିଛି ନିଶ୍ଚୟ । ଲଘୁତ୍ରୟୀ (ରଘୁବଂଶ, କୁମାରସମ୍ଭବ ଓ ମେଘଦୂତ) ଏବଂ ଗୁରୁତ୍ରୟୀ (ଭାରବିଙ୍କର କିରାତର୍ଜ୍ଜୁନୀୟମ୍, ମାଘକବିଙ୍କର ଶିଶୁପାଳବଧ ଏବଂ ଶ୍ରୀହର୍ଷଙ୍କ ନୈଷଧ ଗ୍ରନ୍ଥ), ଷଟ୍‌ଦର୍ଶନ (ନ୍ୟାୟ, ସାଂଖ୍ୟ, ଯୋଗ, ବୈଶେଷିକ, ପୂର୍ବମୀମାଂସା, ଉତ୍ତରମୀମାଂସା) ଷଟ୍‌କୋଷ (ଅମରସିଂହଙ୍କର ଅମରକୋଷ, ଶାଶ୍ୱତଙ୍କର ଅନେକାର୍ଥସମୁଚ୍ଚୟ, ଯାଦବ ପ୍ରକାଶଙ୍କର ବୈଜୟନ୍ତୀ, ମହେଶ୍ୱର

ଆଚାର୍ଯ୍ୟଙ୍କର ବିଶ୍ୱପ୍ରକାଶ, ମେଦିନୀକରଙ୍କର ମେଦିନୀକୋଷ, ପୁରୁଷୋତ୍ତମଙ୍କର ତ୍ରିକାଣ୍ଡ କୋଷ) ପୁରାଣ, ଇତିହାସ ଭୂଗୋଳ, ଜ୍ୟୋତିଷ, ଛାନ୍ଦ, ଅଳଙ୍କାର, ବ୍ୟାକରଣ, ସାହିତ୍ୟଦର୍ପଣ, କାମସୂତ୍ର, କଳାବିଦ୍ୟା, ଦଣ୍ଡନୀତି, ସ୍ମୃତି, ଆୟୁର୍ବେଦ, ଧନୁର୍ବିଦ୍ୟା ଇତ୍ୟାଦି ଅଧ୍ୟୟନ କରିଥିଲେ । କବିଙ୍କର 'କୋଟିବ୍ରହ୍ମାଣ୍ଡସୁନ୍ଦରୀ'ରେ ଉଲ୍ଲେଖ ଅଛି –

ମୀମାଂସା ବେଦବେଦାନ୍ତେ
ଟୀକା ପୁସ୍ତକଏ ସତେ
ଜୈମିନି ବିଖନ ବ୍ୟାସ ପ୍ରଶଂସିତୋଷ ସେ ।
କଲ୍ୟାଣେ କର ଅଞ୍ଜଳି
କରେ ପୁଣି ପତଞ୍ଜଳି
ବଇଶେଷିକ ସାଂଖ୍ୟରେ
ସାକ୍ଷୀ ପ୍ରକାରେ ଯେ ।"

ନିମ୍ନୋକ୍ତ କେତେକ ଉଦାହରଣରୁ ଏହି ସତ୍ୟରେ ଉପନୀତ ହେବାକୁ ପଡ଼େ ଯେ ଉପେନ୍ଦ୍ର ବହୁଶାସ୍ତ୍ର ଅଧ୍ୟୟନ କରିଥିଲେ । ଦୃଷ୍ଟାନ୍ତସ୍ୱରୂପ, ସଂସ୍କୃତ 'ପ୍ରଭାବତୀ ପରିଚୟ' କାବ୍ୟରେ ଉଲ୍ଲେଖ ରହିଛି –

"ଖର ନଖର ବିମୁକ୍ତା ରକ୍ତ ରକ୍ତାଶ୍ଚ ମୁକ୍ତା
ପରିଣତ ବଦରାଣାଂ ବିଭ୍ରମେଣ ଉପଗୃହ୍ୟମ୍
ସପଦି ସରସୀ ଧୌତା ପ୍ରତ୍ୟଭିଜ୍ଞାୟ ମୁକ୍ତା
ଇତି କୀରତି କିରାତି ହନ୍ତକାନ୍ତା ରୟେବ ।"

ଏହି ପ୍ରସଙ୍ଗଟି ମଧ୍ୟ 'କାଦମ୍ବରୀ' ଗ୍ରନ୍ଥରେ ବାଣଭଟ୍ଟ ଲେଖିଛନ୍ତି –

"ବିଦଳିତ ବନକରି କୁମ୍ଭ ବିଗଳିତ – ମୁକ୍ତା ଫଳାନି ରୁଧିରାରୁଣାନି
ବଳିସିକ୍‌ଥ ଲୁବ୍‌ଧ ମୁଗ୍‌ଧ କୃକବାକୁ – ଗ୍ରସ୍ତ ମୁକ୍ତାନି ବିକିରଭିରମ୍ବିକା
ପରିଗ୍ରହ ଦୁର୍ଲଳିତୈଃ କ୍ରୀଡ଼ଭିଃ କେଶରି କିଶୋର
କୈରଶ୍ୱନ୍ୟୋଦ୍ଦେଶ୍ୟାମ୍ ।"

ସେହିପରି ଉପେନ୍ଦ୍ର ଭଞ୍ଜ ଅନୁରୂପ ଭାବରେ ଲେଖିଛନ୍ତି –

"ଶବରୀ ଶର୍ବରୀ ଶେଷୁ ଅରଣ୍ୟକୁ ଯାଇ
ହରି ବିଦାରିତ କରି ମୋତି ପଡ଼ିଥାଇ ଯେ ।
ବଦରି ଆଦରେ ନେଇ ସରୋବରେ ଧୋଇ
ବିକା ତା ନ ଯିବ ବୋଲି ଆସନ୍ତି ପକାଇ ଯେ ।" (ଲା.ବ.)

ଭଞ୍ଜଭାରତୀ 'ନୈଷଧ' ଗ୍ରନ୍ଥ ଦ୍ୱାରା ମଧ୍ୟ ପ୍ରଭାବିତ ହୋଇଛି । କବି ଉପେନ୍ଦ୍ର ଅନେକ ପରିମାଣରେ ଶ୍ରୀହର୍ଷଙ୍କ ନିକଟରେ ଋଣୀ । 'ନୈଷଧ'ର କତିପୟ ଦୃଷ୍ଟାନ୍ତ ଏଠାରେ ପ୍ରଦାନ କରାଯାଇପାରେ –

"ନିଶି ଶଶିନ୍! ଭଜ କୈତବ ଭାନୁତାମ୍
ଅସତି ଭାସ୍ୱତି ତାପୟ ପାପ ମାମ୍ !
ଅହମହନ୍ୟ ବଲୋକୟିତା ସ୍ମିତେ
ପୁନରର୍ହପତି ନିର୍ଦ୍ଧୁତ ଦର୍ପତାମ୍ ।" (୪/୫୪)

ଅର୍ଥାତ୍ ଚନ୍ଦ୍ର! ରାତ୍ରିରେ ତୁମେ ଛଳନାବଶତଃ ଚଣ୍ଡାଂଶୁର ରୂପ ଧାରଣ କର । ହେ ପାପି! ସୂର୍ଯ୍ୟଙ୍କର ଅନୁପସ୍ଥିତିରେ ତୁମେ ମୋତେ ସନ୍ତାପିତ କରୁଅଛ, କିନ୍ତୁ ଦିବସରେ ସୂର୍ଯ୍ୟ ଯେ ତୁମ ଦର୍ପ ନଷ୍ଟ କରିଦେବେ ତାହା ଦେଖିବାକୁ ମୁଁ ଅପେକ୍ଷା କରୁଛି । କବି ସମ୍ରାଟ୍ ଉପେନ୍ଦ୍ର ଭଞ୍ଜ 'କୋଟିବ୍ରହ୍ମାଣ୍ଡସୁନ୍ଦରୀ' କାବ୍ୟରେ ପୁଷ୍ପକେତୁର ବିଚ୍ଛେଦ ଅବସ୍ଥା ବର୍ଣ୍ଣନା କରି ତାଙ୍କ ମୁଖରେ ପ୍ରକାଶ କରିଛନ୍ତି –

"ଚନ୍ଦ୍ରମା ଭାନୁ ଚନ୍ଦ୍ରମା - ଭାନୁ ସମାନ ତାପୁ ଅଛି
ଚରିତେଶୀଳା ଚରିତେଶିଳା ହେବାର ନୋହେ କିଛି ।"(କୋ.ବ୍ର.ସୁ)

ନୈଷଧରେ ଶ୍ରୀହର୍ଷ ରାଜା ନଳଙ୍କର ବକ୍ଷ ଏବଂ ଭୁଜ ବର୍ଣ୍ଣନା ପ୍ରସଙ୍ଗରେ ଲେଖିଛନ୍ତି –

"ଅମୁସ୍ୟ ଦୋର୍ଭ୍ୟାମରି ଦୁର୍ଗ ଲୁଣ୍ଠନେ
ଧ୍ରୁବଂ ଗୃହୀତାର୍ଗ ଲଦୀର୍ଘ ପୋନତା
ଉରଃ ଶ୍ରିୟା ତତ୍ର ଚ ଗୋପୁରସ୍ଫୁରତ୍
କପାଟ - ଦୁର୍ଦ୍ଧର୍ପତିରଃ ପ୍ରସାରିତା ।" (୧/୨୨)

କବିସମ୍ରାଟ୍ ସେହିପରି 'କୋଟିବ୍ରହ୍ମାଣ୍ଡସୁନ୍ଦରୀ' କାବ୍ୟରେ ନାୟକ ପୁଷ୍ପକେତୁଙ୍କର ସୁଦୃଢ଼ ବକ୍ଷ ବର୍ଣ୍ଣନା କରିଲେଖିଛନ୍ତି –

"ବିସ୍ତର ଉରକି ଦ୍ୱିପୁଟ କପାଟ ରାମା ଚିତ୍ତ ବନ୍ଦୀ ଦୁର୍ଗ ।
ବୟସୀ ଭାଷି ମନାସି ଆସିଥିଲା ତୋ ସ୍ତନ ସମ୍ପୁଟ ଯୋଗ ।
ରେ ବାଳା! ଅଛି ପ୍ରବାଳ ବଉଳ ମାଳା ।
ଦେଇଗଲା ପଦକ ପିତୁଳା । ଶୁଣି ହସିଲା ଆନ କହିଲା ।"
(୧୬/୧୪)

ମହାକବି ଶ୍ରୀହର୍ଷ ନୈଷଧୀୟଚରିତରେ କାବ୍ୟନାୟିକା ଦମୟନ୍ତୀଙ୍କର ପୃଷ୍ଠଭାଗରେ ଦୋଳାୟିତ ବେଣୀର ଶୋଭାକୁ ବର୍ଣ୍ଣନା କରି କହିଛନ୍ତି –

"ଅସ୍ୟା ଯଦାସ୍ୟେନ ପୁରସ୍ତିରଶ୍ଚ, ତିରସ୍କୃତଂ ଶୀତ ଗୁରନ୍ଧକାରମ୍
ସ୍ଫୁଟଂ ସ୍ଫୁରଦ୍‌ଭଙ୍ଗ କଚ-ଛଳେନ ତଦେବ ପଶ୍ଚାଦିଦମସ୍ତିବଦ୍ଧମ୍ ।"
(ନୈ.ଚ. ୭/୧୧)

ସେହିପରି ସୌନ୍ଦର୍ଯ୍ୟପ୍ରିୟ କବି ଉପେନ୍ଦ୍ର ନାୟିକା ଲାବଣ୍ୟବତୀର ପିଠିର ବେଣୀଶୋଭାକୁ ବର୍ଣ୍ଣନା କରି ଲେଖିଛନ୍ତି –

"ଚରମେ ପଡ଼ି ମନୋରମ ଦିଶେ, ମଧ୍ୟେ କି ନିଶି ଦିନ ଦୁଇପାଶେ
ପ୍ରଭା ବୃଦ୍ଧି ଦେଖି ମୁଖ ଚନ୍ଦ୍ରର, ପଳାଇ ଯାଉଛି କି ଅନ୍ଧକାର ସେ
ସଖିଏ ଜାଣନ୍ତି ବିଷେ ଯେ ।
ଚମର ମୟୂର ପିଛ ଯା ଚଳନ୍ତି ନିଉଛାଉଛନ୍ତି କେଶେ ଯେ ।"
(ଲା.ବ. ୪/୭)

'ନୈଷଧଚରିତ'ର ଦ୍ୱିତୀୟ ସର୍ଗରେ ଭୀମରାଜାଙ୍କର କୁଣ୍ଡୀନ ନଗରୀ, ପ୍ରାସାଦ ଓ ବିପଣିର ବର୍ଣ୍ଣନା କରିବାକୁ ଯାଇ ଶ୍ରୀହର୍ଷ ଲେଖିଛନ୍ତି –

"ଦୟିତଂ ପ୍ରତିଯତ୍ର ସନ୍ତତା ରତିହାସାଇବ ରେଜିରେ ଭୁବଃ
ସ୍ଫଟିକୋପଳ ବିଗ୍ରହାଗୃହାଃ ଶଶଭୃଦ୍‌ଭିତ୍ତ ନିରଙ୍କ ଭିତ୍ତୟଃ । (୨/୭୪)
ନୃପ ନୀଳମଣି ଗୃହ ତ୍ୱିଷା ମୁପଧେର୍ଯତ୍ର ଭୟେନ ଭାସ୍ୱତଃ
ଶରଣାପ୍ତ ଭୁବାସ ବାସରେଽପ୍ୟସଦା ବୃତ୍ତ୍ୟୁଦୟତମଂ ତମଃ ।(୨/୭୫)
ସିତ ଦୀପ୍ରମଣି ପ୍ରକଳ୍ପିତେ ଯଦଗାରେ ହସଦଙ୍କ ରୋଦସି
ନିଖିଳାନ୍ନିଶି ପୂର୍ଣ୍ଣିମା ତିଥୀନ୍ ଉପତସ୍ଥେଽତିଥି ରେକିକା ତିଥିଃ ।(୨/୭)"

କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ ପୁଷ୍ପପୁର ବର୍ଣ୍ଣନା ପ୍ରସଙ୍ଗରେ ଲେଖିଛନ୍ତି –

"ଛଦ୍ମ ନୁହଇ ଏ ପୁଣ ସଦ୍ମ ରତନେ ନିର୍ମାଣ ।
ପଦ୍ମ ସକାଶରୁ ଜାଣି ଦିବାରଜନୀ ଯେ ।
ନାନା ରତ୍ନପ୍ରଭାଧରି ନଭ ଚିତ୍ରବାଡ଼ପରି
ଦେଖାଇବେ କେଉଁ ଜ୍ୟୋତି ତାରକାପନ୍ତି ଯେ ।
ତୋରଣା ବିବିଧ ରତ୍ନେ ପ୍ରାସାଦ ଖଞ୍ଜିତଯତ୍ନେ
ବଲ୍ଲୀକରେ ଇନ୍ଦ୍ରଚାପ ଜାତସ୍ୱରୂପ ଯେ ।
ଗୃହେ ମଣିମୟ ଚଳ ବଉଳ ଝରା ପ୍ରବାଳ
ମହା ରଜତ ରଜତ ବାଙ୍କ ନିର୍ମିତ ଯେ ।
ମାଣିକ୍ୟ ମର୍କତ ମିହ୍ନା ପିତୁଳୀ ଚିତ୍ରରଚନା

ଲତା ମହୀରୁହ ଡାଳୀ ତହିଁରେ ଝଳି ଯେ ।
କଳଶହୀରା ବୈଡୁର୍ଯ୍ୟ ପ୍ରକାଶମାନ ଯେ ତେଜ
କି ଶ୍ୱେତ ପୀତ ପତାକା ଏମନ୍ତ ଶଙ୍କା ଯେ ।"

(କୋ.ବ୍ର.ସୁ - ୪ର୍ଥ ଛାନ୍ଦ)

ମହାକବି କାଳିଦାସଙ୍କ ରଚନାଦ୍ୱାରା ମଧ କବି ଉପେନ୍ଦ୍ର ପ୍ରଭାବିତ । କବି କାଳିଦାସ ଋତୁରାଜ ବସନ୍ତର ବର୍ଣ୍ଣନା କରିବାକୁ ଯାଇ ଲେଖିଛନ୍ତି –

"ଦ୍ରୁମାଃ ସପୁଷ୍ପାଃ ସଲିଳଂ ସପଦ୍ମଂ
ସ୍ତ୍ରୀୟଃ ସକାମାଃ ପବନଃ ସୁଗନ୍ଧିଃ
ସୁଖାଃ ପ୍ରଦୋଷାଃ ଦିବସାଶ୍ଚରମ୍ୟାଃ
ସର୍ବଂ ପ୍ରିୟେ ଚାରୁତରଂ ବସନ୍ତେ ।" (ଋତୁସଂହାର- ୬ଷ୍ଠ ସର୍ଗ/ ୨)

ବୀରବର ଉପେନ୍ଦ୍ର ବସନ୍ତ ବର୍ଣ୍ଣନା ପ୍ରସଙ୍ଗରେ ଲେଖିଛନ୍ତି –

"ଅତି ରସମୟ ବସନ୍ତ ସମୟ
ବିଚିତ୍ର ପ୍ରମେୟ ତାହାର
ମିତ୍ର ଅନଙ୍ଗଙ୍କୁ ପ୍ରବଳ କରାଇ
ଆଚରି ଚର୍ଚ୍ଚରୀ ବିହାର
ଆଗତେ । ଆରୋହିଲା ନାଗେଶ୍ୱରକୁ ।
ଋତୁରାଜ ପଦୁଁ ସେ ରଜଘେନିଲା
ଚାହିଁ ପ୍ରଫୁଲ୍ଲ କେଶରକୁ ।"

(କୋ.ବ୍ର.ସୁ.- ଷଷ୍ଠଛାନ୍ଦ)

ସଂସ୍କୃତ ଭଟ୍ଟିକାବ୍ୟ ଦ୍ୱାରା ମଧ କବି ଉପେନ୍ଦ୍ର ପ୍ରଭାବିତ ହୋଇଛନ୍ତି । ଭଟ୍ଟି ଲେଖିଛନ୍ତି –

"ଭବତଂ କାର୍ଯ୍ୟ ବୀର୍ଯ୍ୟ ଯଂ ହୀନ ସନ୍ଧିମଚି କରୋତ୍
ଜିଗାୟ ସ୍ତସ୍ୟ ଜିତାରି ସରାମ ସାର୍ବଲୌକିକ ।"

"ବୈଦେହୀଶ ବିଳାସ" କାବ୍ୟରେ ଏହାର ପ୍ରଭାବ ଲକ୍ଷଣୀୟ । ମହାକବି ଉପେନ୍ଦ୍ର ଲେଖିଛନ୍ତି –

"ବକ୍ତମାଳିକି ମାରୀଚ ଛଳିକିତୋ ସାମର୍ଥ୍ୟ ବଢ଼ାଇ
ବାନ୍ଧିଲା ଅର୍ଜ୍ଜୁନ ତୋତେ ତା ଛେଦନ ଦର୍ପ ଯେ ଛଡ଼ାଇ ।"

ଅଧ୍ୟାତ୍ମରାମାୟଣ ଗ୍ରନ୍ଥର ପ୍ରଭାବ ଭଞ୍ଜକବିଙ୍କର 'ବୈଦେହୀଶ ବିଳାସ'ରେ ଲକ୍ଷଣୀୟ । ଶ୍ରୀରାମଙ୍କ ଗଙ୍ଗାପାରି ପ୍ରସଙ୍ଗରେ 'ଅଧ୍ୟାତ୍ମ ରାମାୟଣ' ଗ୍ରନ୍ଥରେ ଉଲ୍ଲେଖ ରହିଛି –

"କ୍ଷାଳୟାମି ତବ ପାଦପଙ୍କଜଂ ନାଥ! ଦାରୁଦୃଶଦୋଃ କିମନ୍ତରମ୍
ମାନୁଷୀକରଣ ଚୂର୍ଣ୍ଣ ମସ୍ତିତେ ପାଦୟୋରିତି କଥା ପ୍ରଥୀୟସୀ ।
ପାଦାମ୍ବୁଜଂ ତେ ବିମଳଂ ହି କୃତ୍ୱା ପଶ୍ଚାତ୍‌ପରଂ ତୀର ମହଂ ନୟାମି
ନୋଚେତ୍ତରୀ ସଦ୍ୟୁବତୀ ମିଳେନ ସ୍ୟାଚ୍ଛେଦ୍ ବିଭୋ! ବିଦ୍ଧି କୁଟୁମ୍ବହାନିଃ ।"
(ଅ.ରା.ବାଳକାଣ୍ଡ-ଷଷ୍ଠ ସର୍ଗ)

'ବୈଦେହୀଶବିଳାସ'ର ନବମ ଛାନ୍ଦରେ କବି ଉପେନ୍ଦ୍ର ଅନୁରୂପ ଭାବରେ ଲେଖିଛନ୍ତି –

"ବଧିର ନୁହଇ ବୀର ବୋଇଲା ତହିଁ ଧୀବର
ଶୁଣିଲିଣି ପଥରେ ପଥର ଅବଳା
ବାଲିପଡ଼ି ତୋ ଚରଣୁ ଆଶଙ୍କା ଉପୁଜେ ଏଣୁ
ନଉକା ନାୟିକା ହେଲେ ବୁଡ଼ିବ ଭେଳା
ବୃତ୍ତି ଏ ମୋ ପୋଷେ କୁଟୁମ୍ବ
ବସାଇ ନ ଦେବି ପାଦ ନ ଧୋଇ ନାବ ।" (ନବମ ଛାନ୍ଦ)

ସୁତରାଂ କବି ଉପେନ୍ଦ୍ର ସଂସ୍କୃତ କାବ୍ୟ ସରଣୀ ଓ ଆଳଙ୍କାରିକ ରୀତି ଅନୁଯାୟୀ କାବ୍ୟ ସୃଷ୍ଟିରେ ନିଜର ସ୍ୱକୀୟତା ଓ ଶ୍ରେଷ୍ଠତା ପ୍ରତିପାଦନ କରିଛନ୍ତି । କାବ୍ୟ ରଚନାର ସମସ୍ତ ନିୟମକୁ ଦୃଷ୍ଟିରେ ରଖି କାବ୍ୟ ସର୍ଜନା କରିବାରେ ଉପେନ୍ଦ୍ରଙ୍କ ସଫଳତା ସହଜରେ ବାରିହୁଏ । ଉପେନ୍ଦ୍ର ଯଥାର୍ଥରେ ଥିଲେ ବହୁଶାସ୍ତ୍ରଦର୍ଶୀ, ସୁତରାଂ ବିଦ୍ୱାନ ।

## ଆଧ୍ୟାତ୍ମିକତା :

ଆଧ୍ୟାତ୍ମିକଚେତନା ଉପେନ୍ଦ୍ର ସାହିତ୍ୟରେ ଅନ୍ତଃସଲୀଳା ଫଲ୍‌ଗୁ ପରି ବିଦ୍ୟମାନ । ସେ କାବ୍ୟର ମଙ୍ଗଳାଚରଣ କିବା ଅନ୍ୟତ୍ର ଭକ୍ତିରସାତ୍ମକ ପଦ୍ୟାଂଶରେ କିମ୍ବା ଭଣିତାରେ ତାଙ୍କ ଇଷ୍ଟ ଦେବତା ଶ୍ରୀରମଚନ୍ଦ୍ରଙ୍କ ସମେତ ଶ୍ରୀଜଗନ୍ନାଥ, ଶ୍ରୀକୃଷ୍ଣ, ବଳାରାମ, ପର୍ଶୁରାମ, ଶିବ, ବ୍ରହ୍ମା, ବିଷ୍ଣୁ, ସୂର୍ଯ୍ୟ, ଚନ୍ଦ୍ର, ଦୁର୍ଗା ପ୍ରଭୃତି ଦେବତାଙ୍କୁ ଅତ୍ୟନ୍ତ ଭକ୍ତିପ୍ରବଣ ହୃଦୟରେ ସ୍ତୁତି କରିଛନ୍ତି । ଉପେନ୍ଦ୍ର ଥିଲେ ପରମ ବୈଷ୍ଣବ । ଧର୍ମ କ୍ଷେତ୍ରରେ ସେ ଥିଲେ ଉଦାର । ସେ ଶ୍ରୀରାମ ଓ

ଶ୍ରୀଜଗନ୍ନାଥଙ୍କୁ ଏକ ଓ ଅଭିନ୍ନଭାବରେ ବିଚାର କରିଥିଲେ । ଶ୍ରୀଜଗନ୍ନାଥ ଧର୍ମର ମହିମା ଓ ମହତ୍ତ୍ୱ ପ୍ରତିପାଦନ କରିବାରେ ଉପେନ୍ଦ୍ର ଅଶେଷ ସଫଳତା ଲାଭ କରିଛନ୍ତି । ଦୃଷ୍ଟାନ୍ତସ୍ୱରୂପ,

"ସେ କମ୍ବୁକଟକ ରାଜା ନାମ ଜଗନ୍ନାଥ
ଚାରିବର୍ଣ୍ଣେ ଚଉବର୍ଗ ଦେବାକୁ ସମର୍ଥ ହେ ।
ଭକ୍ତି ଦେବା ଗୁପ୍ତ ହୋଇଅଛି ଯୁକ୍ତାକ୍ଷରେ
ବୈଷ୍ଣବ ବିହୀନେ କେବା ଜାଣିବ ସଂସାରେ ହେ ।
ପାଦେ ବନ୍ଦେ ସାର୍ବଭୌମ ବୋଲିବା କି ଯଶ
ବୃଷାସନଙ୍କର ଶିର ଲାଗିବାକୁ ଆଶ ହେ ।" (କୋ.ବ୍ର.ସୁ)

× × ×

'ଯାହା କଟାକ୍ଷ କୁଠାର ପତନମାତରେ
ଅନେକ ଦୁଃଖ - ଅନୋକହକୁ ଛେଦିପାରେ ହେ ।
ସେହି ପାଦ ପଦ୍ମାସନୀ ପାଟ ମହାଦେବୀ
ଅଷ୍ଟ ଐଶ୍ୱର୍ଯ୍ୟ - ଦାୟିନୀ ଅଷ୍ଟ ଶକ୍ତି ସେବି ହେ ।
ଭରସା କରି ଆସନ୍ତି ଦୂରଦେଶୁଁ ପ୍ରାଣୀ
ଆରତ ଭଞ୍ଜନ ଦୀନବନ୍ଧୁ ନାମଶୁଣି ହେ ।
କରଯୋଡ଼ି ଛାମୁରେ ଜଣାଇ ପକ୍ଷିଧବ
ଆର୍ତ୍ତଜନ ଗୁହାରିକି ସାବଧାନ ହେବ ହେ ।"

(କୋ.ବ୍ର.ସୁ.୧ମ ଛାନ୍ଦ)

'ଲାବଣ୍ୟବତୀ' କାବ୍ୟର ପ୍ରଥମ ଛାନ୍ଦରେ ଉପେନ୍ଦ୍ରଙ୍କର ଶ୍ରୀରାମ, ପର୍ଶୁରାମ ଓ ବଳାରାମଙ୍କ ସ୍ତୁତି ବେଶ୍ ଭାବବ୍ୟଞ୍ଜକ । ଯଥା –

"ଜୟ ଜୟ ଜୟ ରାମ ଜନକ ସୁଖଦ
ଭୀମ ହରଷ ଦାନରେ ସଦା ବିଶାରଦ ହେ ।
ଚନ୍ଦ୍ର ହାସ ଶୋଭାକର ସମସ୍ତ କାଳର
ଲକ୍ଷଣବନ୍ତ ଅଲକ୍ଷ୍ୟ ମୁଖ ମନୋହର ହେ ।
କବି ଭାରତୀକି ଅଗୋଚର ଛବି ଯା'ର
ସୁମନାବୃନ୍ଦ ବନ୍ଦିତ ଏଣୁ ନିରନ୍ତର ଯେ ।
ମହାଶୟ ବଳରିପୁ ପରେ ତାପକର
ଛତ୍ରଭଙ୍ଗ କୃତରୁ କାତର ଅରିପୁର ।

ସହସ୍ରକର ଉନ୍ନତ ହର ତେଜ ବାନ
ହରି ପକ୍ଷ ସଦାନନ୍ଦ ତୋଷ ବିବର୍ଦ୍ଧନ ହେ ।"

(ଲା.ବ.-୧ମ ଛାନ୍ଦ)

ସେହିପରି କବି ଗାଇଛନ୍ତି–

"ସଉମିତ୍ରୀ ଦକ୍ଷିଣେ ସୀତାବାମରେ ଯେ
ସମୀରଣ ଆତ୍ମଜ ସ୍ଥିତ ଅଗ୍ରରେ ଯେ
ସେ ରାମେ ନମସ୍କାର ଅଶେଷ,
କରିଏ ରୂପେ ଧ୍ୟାନ ମାନସ ।
କହିଲା ଉପଇନ୍ଦ୍ର ଏରସ ତୋଷ ଚିତ୍ତରେ ଯେ ।(ସୁ.ପ.- ଷଷ୍ଠ ଛାନ୍ଦ)
"କବନ୍ଧ ବଧିକ, ଅନ୍ଧକ ଅନ୍ତକ ବନ୍ଦନ ପୟର
ଉପଇନ୍ଦ୍ର ଭଞ୍ଜ ଅନବରତର ଭଜଇ ମନର ।"

(ଅ.ର.ତ.- ୮ମ ଛାନ୍ଦ)

"ଆହେ ଜଗନ୍ନାଥ, ବିଶ୍ୱନାଥ ହରିହର
କମଳାକ୍ଷ ବିରୁପାକ୍ଷ କରୁଣାସାଗର ।
ଉପଇନ୍ଦ୍ର ଭଞ୍ଜଭଣି । କରୁଣା କରିବ ମୋର ମନ ଚିନ୍ତା ଜାଣି ।"

(ରସଲେଖା, ବିଂଶ ଛାନ୍ଦ)

'ରସଲେଖା' କାବ୍ୟରେ କବିଙ୍କର ହରିହର ସ୍ତୁତି ବେଶ୍ ଆଧ୍ୟାତ୍ମିକଭାବ ଉଦ୍ରେକକାରୀ। ଏଥିରେ କବିଙ୍କର ଗାଢ଼ ଭକ୍ତିଭାବନାର ନିଦର୍ଶନ ମିଳେ । ଯଥା–

"ଜୟ ମକର କୁଣ୍ଡଳୀ କୁଣ୍ଡଳ କୁଣ୍ଡଳୀ
ଘନସାର ଶ୍ୟାମଘନ ସାର କାନ୍ତି ଝଳି ।
ଜୟତ୍ରିପୁର ମୋହନ ତ୍ରିପୁର ଦହନ ,
ଖଗପୁଙ୍ଗବ ବାହନ ପୁଙ୍ଗବ ବାହନ ।
ଜୟ ଚାମୀକରାକୃତି ବାସ କୃତ୍ତିବାସ
ପଞ୍ଚାସ୍ୟଜିତ ବିକ୍ରମ ଯେ ପୁଣି ପଞ୍ଚାସ୍ୟ ।
ଜୟ କମଳଦଳ ଲୋଚନ ତ୍ରିଲୋଚନ
ମାର ଯାର କୁମାର କୁମାର ଯା ନନ୍ଦନ ।
ଜୟ ପାଣ୍ଡବ ପକ୍ଷକ ତାଣ୍ଡବ ପଣ୍ଡିତ
ଚନ୍ଦ୍ର ମୁକୁଟଧର ଚନ୍ଦ୍ରମୁକୁଟ ସେତ ।

ଜୟ ଭବ ଶ୍ରମ ଦୂରକାରୀ ଭୀମ ଭୀମ
ନୀଳକଣ୍ଠ ପୁଚ୍ଛଚୂଡ଼ ନୀଳକଣ୍ଠ ନାମ ।" (୧ମ ଛାନ୍ଦ)

କବି ସେହିପରି ଗାଇଛନ୍ତି –

"ହଂସବଂଶରେ ଯେ ଠାକୁର
ପରମହଂସ ଅବତାର
ଯେ ମୁନି ମାନସେ ବିହରି
ଉପଇନ୍ଦ୍ର ଭଞ୍ଜ ସୁମରି ।" (କୋ.ବ୍ର.ସୁ ୫ମ ଛାନ୍ଦ)

"ଯେହୁ ତାରକ ପ୍ରବର୍ତ୍ତକ ଜଗତେ ତାରକ ସ୍ୱଭାବେ ଯେ ହିତ
ମହାଗୁରୁ ଭାବୁଁ ସେ କାଶୀଶ୍ୱରଙ୍କୁ ବନ୍ଦନା କରିବା ବିହିତ
ହୋଇଲା, କବି ଉପଇନ୍ଦ୍ର ଭଞ୍ଜର ।
କାମଦାୟକ ବିନାୟକ ଜନକ ଏ ଭାବେ ପୁଣି ଜରଜର ।"
(କ୍ରୋ.ବ୍ର.ସୁ- ଷଷ୍ଠ ଛାନ୍ଦ)

ପୁନଶ୍ଚ "ରାମଲକ୍ଷ୍ମଣ କୀର୍ତ୍ତିକି ହାରୀ ସିଦ୍ଧି ପଦ ନାମ ପଛେ ଦେଇ ଯେ
ଭଜେ ସେ ରାମଲକ୍ଷ୍ମଣ ଅନୁସରି ଗନ୍ଧଫଳୀପରାଦେହୀ ଯେ
ଭାବଇ । ଉପଇନ୍ଦ୍ର ବୀରବର ଯେ ।
ଭବଭାବନୀୟ ଅନନ୍ତମୂରତି ଧାରଣ ବୁଧେ ବିଚାର ଯେ ।"
(କୋ.ବ୍ର.ସୁ - ୩୧ଶ ଛାନ୍ଦ)

## ଅପୂର୍ବ ଶାବ୍ଦିକତା :

ଉପେନ୍ଦ୍ରଙ୍କୁ ଅପୂର୍ବ ଶବ୍ଦକବି କହିଲେ ଅତ୍ୟୁକ୍ତି ହେବ ନାହିଁ । କାବ୍ୟ ଗୁଡ଼ିକରେ ମୁଖ୍ୟତଃ ତତ୍ସମ ଓ ତଦ୍ଭବ ଶବ୍ଦ ପ୍ରୟୋଗ କରି ଉପେନ୍ଦ୍ର ଶବ୍ଦ ପ୍ରୟୋଗରେ ଗମ୍ଭୀରତା ରକ୍ଷା କରିଛନ୍ତି । ତାଙ୍କ କାବ୍ୟକୃତିରେ ସେ ଯେଉଁ ଶବ୍ଦର କୁହୁକ ସୃଷ୍ଟି କରିଛନ୍ତି, ତାହାର ପଟାନ୍ତର ନାହିଁ । ଉପେନ୍ଦ୍ର ଶବ୍ଦଭଣ୍ଡାର ଉପରେ ଦକ୍ଷତା ଅର୍ଜନ କରିଥିଲେ । ସମସ୍ତ କୋଷ ଗ୍ରନ୍ଥ ଅଧ୍ୟୟନ କରି ସେ ସତରେ ଶବ୍ଦ ସମୁଦ୍ରକୁ ପାର ହୋଇଥିଲେ । ଉପେନ୍ଦ୍ର ଭଞ୍ଜଙ୍କର ଯେଉଁ ଅପୂର୍ବ ଶାବ୍ଦିକତା ରହିଛି, ଓଡ଼ିଆ ସାହିତ୍ୟରେ ଅନ୍ୟ କୌଣସି କବିଙ୍କଠାରେ ଏହା ଲକ୍ଷ୍ୟ କରାଯାଇ ନଥାଏ । ଉପେନ୍ଦ୍ର ତ ସ୍ୱୟଂ କହିଛନ୍ତି –

"କହେ ଉପଇନ୍ଦ୍ର ଭଞ୍ଜ ମୁଁ ଲଭିଛି ଶବଦ ସାଗର ପାର ।"

'ଗୀତାଭିଧାନ' ଗ୍ରନ୍ଥରେ ମଧ୍ୟ ଉପେନ୍ଦ୍ର ଦୃଢ଼ କଣ୍ଠରେ କହିଛନ୍ତି –

"ନାନାର୍ଥେ ଗୀତ ଅଭିଧାନ କଲି ମୁଁ ସାର ସାର ଯେତେ ବାଛି
ଶବ୍ଦସମୁଦ୍ରବତ ପାର ହେବାକୁ
କାହାର ସାମର୍ଥ୍ୟ ଅଛି ।"

ଉପେନ୍ଦ୍ରଙ୍କ କାବ୍ୟଜଗତରେ ଗୋଟିଏ ଗୋଟିଏ ଶବ୍ଦ ଏକାର୍ଥବୋଧକ, ତାହା ଜାଣିଲାବେଳେ ବିସ୍ମିତ ହେବାକୁ ପଡ଼େ । ତେଣୁ B.C. Mazumdar ଉପେନ୍ଦ୍ରଙ୍କୁ 'ଶବ୍ଦର ଯାଦୁକର' କହିବା ଯଥାର୍ଥ । ତାଙ୍କ ଭାଷାରେ – "Upendra Bhanja really speaking is a mighty literary acrobat who was shown his great skill in verbal jugglery. In the art of alliterative composition he is second to none and it is his example which was been followed and immitated in this direction by his contemporaries and successors."

ଓଡ଼ିଆ ସାହିତ୍ୟର ମଧ୍ୟ ଯୁଗରେ ଅକ୍ଷରାଦ୍ୟଗ୍ରନ୍ଥ ରଚନା ଲକ୍ଷ୍ୟ କରାଯାଏ । ଏ ଦିଗରେ ଦୀନକୃଷ୍ଣ ଦାସ ଅଗ୍ରଗଣ୍ୟ । ସେ 'କ' ଆଦ୍ୟ ନିୟମରେ ପ୍ରସିଦ୍ଧ କାବ୍ୟ 'ରସକଲ୍ଲୋଳ' ରଚନା କଲେ । ଦୀନକୃଷ୍ଣ ତେଣୁ ଉଲ୍ଲେଖ କରିଛନ୍ତି –

"'କ' ଅକ୍ଷରେ ହୋଇଛି ନିୟମ
କଥା ନୋହେ ଦିବ୍ୟଅଦିବ୍ୟ ସମ ।"

ଉପେନ୍ଦ୍ର ଭଞ୍ଜ ଏହି ଧାରାକୁ ମଧ୍ୟ ଗ୍ରହଣ କରିଛନ୍ତି । ତାଙ୍କର ପ୍ରସିଦ୍ଧ କାବ୍ୟ 'ବୈଦେହୀଶ ବିଳାସ' 'ବ' ଆଦ୍ୟ ନିୟମରେ ରଚିତ । କବି ତେଣୁ ସୂଚାଇଛନ୍ତି –

"ବୈଦେହୀଶ ବିଳାସ ଏ ଗୀତ ମନୋରମ
ବାନ ଛାନ୍ଦେ ଶେଷ ଆଦ୍ୟ 'ବ' କାରେ ନିୟମ ।"

କବି ଉପେନ୍ଦ୍ର ସେହିପରି 'କ' ଆଦ୍ୟ ପ୍ରାନ୍ତ ନିୟମରେ 'କଳା କଉତୁକ' ନାମକ କୃଷ୍ଣକାବ୍ୟ ରଚନା କରିଛନ୍ତି । କବି ଉଲ୍ଲେଖ କରିଛନ୍ତି –

"କଳା କଉତୁକ ଏ ଗୀତ ନାମ ହେବ ଖ୍ୟାତକ
କରୁଥିବେ ପ୍ରତିପାଦରେ ବାସ ଆଦ୍ୟପ୍ରାନ୍ତ କ ।"

କବିଙ୍କର 'ସୁଭଦ୍ରାପରିଣୟ' ପୌରାଣିକ କାବ୍ୟଟି 'ସ' ଆଦ୍ୟନିୟମରେ ରଚିତ । କବି ଲେଖିଛନ୍ତି –

"ସତର ଛାନ୍ଦ ଏ ସରସ ଗୀତ
ସତ୍ୟ ଚରିତ ନୁହଇ କଳ୍ପିତ ।
ସହିତ ବହୁ ସକାର ମାନ
ସାତଶ ପଞ୍ଚତ୍ରିଂଶ ପଦେ ପୂର୍ଣ୍ଣ ।
ଶ୍ରମତ ବହୁତ
ସକାରଦତ୍ତ ପାଦାଦ୍ୟେ ବିହିତ ।"

ସୁତରାଂ ଉପେନ୍ଦ୍ର ଥିଲେ ଶବ୍ଦ ସମ୍ରାଟ୍ । ଏଥିରେ ଦ୍ୱିମତ ନାହିଁ ।

## ଭଞ୍ଜ ସାହିତ୍ୟରେ ଉପମା :

କାବ୍ୟରେ ଉପମା ପ୍ରୟୋଗରେ ଉପେନ୍ଦ୍ର ଭଞ୍ଜ ଜଣେ ଅସାମାନ୍ୟ କବିଥିଲେ ବୋଲି ବିଚାର କରାଯାଇଛି । ମହାକବି କାଳିଦାସଙ୍କୁ ନେଇ କୁହାଯାଇଛି "ଉପମାକାଳିଦାସସ୍ୟ" । ସେହିପରି ପଣ୍ଡିତ ମୃତ୍ୟୁଞ୍ଜୟ ରଥ କହିଛନ୍ତି – 'ଉପମା ଭଞ୍ଜବୀରସ୍ୟ' । ଏହି ଉକ୍ତିଟି ଯଥାର୍ଥ ଅଟେ । ମୃତୁଞ୍ଜୟ ରଥଙ୍କ ମତରେ –

"ଉପମା ଭଞ୍ଜବୀରସ୍ୟ ତସ୍ୟୈ ବଚାର୍ଥ ଗୌରବମ୍
କଲ୍ଲୋଳେ ପଦ ଲାଳିତ୍ୟଂ ସନ୍ତି ଚିନ୍ତାମଣୌତ୍ରୟଃ ।"

ପ୍ରାଚ୍ୟ ଆଳଙ୍କାରିକ ମାନେ ଉପମାର ମହତ୍ତ୍ୱ ଓ ବୈଚିତ୍ର୍ୟକୁ ସ୍ୱୀକାର କରିଛନ୍ତି । ଆଚାର୍ଯ୍ୟ ଭାମହ, ଦଣ୍ଡୀ, ବାମନ, ରାଜଶେଖର, ପଣ୍ଡିତରାଜ ଜଗନ୍ନାଥ ପ୍ରମୁଖ ଉପମାକୁ ଅଳଙ୍କାରସବସ୍ୱ ଏବଂ ବହୁ ଅର୍ଥାଳଙ୍କାରର ମୂଳ ବୋଲି ବିବେଚନା କରିଯାଇଛନ୍ତି । ସମାଲୋଚକ ପ୍ରତାପ ବନ୍ଦୋପାଧ୍ୟାୟ 'Observation on similes in the Naisadha charita'ରେ ଉଲ୍ଲେଖ କରିଛନ୍ତି – "Poet and also Philosophers have using similes and metaphors to make their statement clear, concise and more appealing."

ଅବଶ୍ୟ ଉପେନ୍ଦ୍ରଙ୍କ କ୍ଷେତ୍ରରେ ପ୍ରଯୁକ୍ତ ଉପମା ଶବ୍ଦଟି ନିର୍ଦ୍ଦିଷ୍ଟ ଉପମାଳଙ୍କର ନୁହେଁ । ବରଂ ଏହାକୁ ସାଳଙ୍କାର ବାକ୍‌ଚାତୁର୍ଯ୍ୟ ଭାବରେ ବିଚାର କରାଯାଇଛି । ସୁତରାଂ ଏ ପରିପ୍ରେକ୍ଷୀରେ ଗୋବିନ୍ଦ ଚନ୍ଦ୍ର ଉଦ୍‌ଗାତା 'ଅଳଙ୍କାର ପ୍ରସଙ୍ଗ' ଗ୍ରନ୍ଥରେ ଲେଖିଛନ୍ତି – "ଉପମା ଭଞ୍ଜବୀରସ୍ୟ ଉକ୍ତିରେ ଉପମା ଶବ୍ଦଟିର ପ୍ରତିପାଦ୍ୟ କେବଳ ମୂଳ ଉପମା ଅଳଙ୍କାର ନୁହେଁ । ଉପମାବର୍ଗୀୟ ସକଳ ସାଦୃଶ୍ୟ ଗର୍ଭକ ଅଳଙ୍କାର ପ୍ରୟୋଗରେ ଭଞ୍ଜଙ୍କ ନୈପୁଣ୍ୟ ହିଁ ଏ ଉକ୍ତିରେ

ପ୍ରତିପାଦ୍ୟ ।" ଉପମା ପ୍ରୟୋଗରେ ଭଞ୍ଜକବିଙ୍କର ସଫଳତା ନିମ୍ନ ପଂକ୍ତିମାନଙ୍କୁ ଅନୁଭବ କରିହୁଏ । ଯଥା –

(୧) ଦର୍ପଣରୁ ଝଳି କମଳୁ ବାସ ବଳେ ହରି
ଚନ୍ଦ୍ରରୁ ଆହ୍ଲାଦ ନେଇ ଲପନରେ ଭରି ।
ନୀଳୋତ୍ପଳାକୁ ନୀଳ ଖଞ୍ଜନରୁ ଚଞ୍ଚଳତା
ବିଶିଖୁଁ ତୀକ୍ଷ୍ଣ ଆଣି ଆଖି କଲା ଧାତା ।
କାଳିନ୍ଦୀ ଜଳ ଜଳଦଠାରୁ ହରି କଳା
ଚାମର ନୀଳ ରୁଚିରୁ କୁଟିଳ ହରିଲା ।
ଲବଣୀ ଶିରିଷରୁ କୋମଳ ନେଇ ଦେହେ
ବିଦ୍ୟୁ ହେମ ଚମ୍ପା କାନ୍ତି ହରି କାନ୍ତି ବିହେ
ଯେଉଁ ଅଙ୍ଗକୁ ଉପମା ଯେଉଁ ଦ୍ରବ୍ୟ ହୋଇ
ତହୁଁ ସାର ନେଇଟି ସେ ତନୁ କଲା ବିହି । (ର.ହା.)

(୨) "ମୁଖ ହେବ ଏମନ୍ତ ବିଚାରି ପଦ୍ମବିଧୁ
ହସ୍ତବଳା କରି ଆଗୁଁ ଗଢ଼ିଥିଲା ସାଧୁ ଯେ ।
ତହୁଁ ବାସ ଆହାଲାଦ ଦର୍ପଣରୁ ଝଳି
ଲହରୀରୁ କୁଟିଳ ଅଞ୍ଜନ ପୁଞ୍ଜୁ କାଳି ଯେ ।
କୁରଙ୍ଗରୁ ତରଙ୍ଗ ବିଦ୍ରୁମ ରଙ୍ଗ ହରି
ଲବଣୀ ଶିରୀଷରୁ କୋମଳ ବଳେ ତୁଳି ଯେ ।
ସୁବର୍ଣ୍ଣରୁ ବର୍ଣ୍ଣ ରାଜହଂସ ଠାରୁ ଗତି
ଏ ରୂପେ ଉପମା ବର୍ଗ ଯେତେକ ଅଛନ୍ତି ଯେ ।
ବିହି ସବୁଠାରୁ ସାର ସାର ଭାଗ ଆଣି..
ପୁରଟ ପ୍ରତିମାପରି ରଚିଲା ରମଣି ଯେ ।" (ଲା.ବ. ଦ୍ୱିତୀୟ ଛାନ୍ଦ)

(୩) "ଅଣିମାଦି ସୁଖଦାୟୀ ଶୋଇଅଛି ଅଣିଆଇ
ପଲ୍ୟଙ୍କ ଅଙ୍କରେ ଦିଶେ ଏମନ୍ତ ଶୋଭା
ରସାଣ ରଜତ ବାଡ଼େ କନକଲତା କି ଜଡ଼େ
ବିଶଦ ଘନରେ କିସେ ଚପଳା ପ୍ରଭା
ବାମ କର କପୋଳ ତଳ, କେନ୍ଦୁ ପଲ୍ଲବେ ଥୁଆ କି ଫୁଲ କମଳ ।"
(ଲା.ବ. ଏକାଦଶଛାନ୍ଦ)

(୪) ନୂଆ ଅନ୍ଧପ୍ରାୟ ହୋଇ
ଅନୁକ୍ଷଣେ ବ୍ୟାକୁଳ ବଢୁଛି ପ୍ରାଣସହି । (ପ୍ରେ.ସୁ.)

(୫) "ଚନ୍ଦ୍ରମାରୁ ପଦ୍ମ ଜନମ କରିଣ ସ୍ୱଭାବେ ବହିଛି ସୁଷମା
କ୍ଷଣେ କ୍ଷଣେ କଥା ପ୍ରସଙ୍ଗେ ପଦ୍ମରୁ ଜାତକରେ ଏବେ ଚନ୍ଦ୍ରମା
ଘେନ ଏ କଥା । ମାନତ ଅଦୃଷ୍ଟି ଅଶ୍ରୁତି
ଚନ୍ଦ୍ରକମଳ ଜଳୁଁ ଜାତ ବୋଲିଣ ପୁରାଣମାନେ କହିଛନ୍ତି ।
ବାଳ ଅରୁଣ କୋଳରେ ବିକଶିତ କଲା କୁମୁଦ ଏ ଅଦ୍ଭୁତ
ଉପମାକୁ ଏବେ ଗହନ ହେଉଛି ସବୁକଥା ଆନ ଆନତ
ନିଶିବାସରେ । ମନକି ଆଉ ପାଶୋରିବ ?
ନବ ବିଜୁଳି ବିନା ମେଘେ ମହୀରେ ଖେଳା କରିବାର ଚାହିଁବ ।" (ପ୍ରେ.ସୁ.)

(୬) ସନ୍ଧ୍ୟାଘୋଟି ଗଲା ରବି ଜ୍ୟୋତି ନାଶ ଯାଏ
କାଳିକା ଗ୍ରାସ ବଶରୁ ରକ୍ତବୀର୍ଯ୍ୟ ପ୍ରାୟେ । (କୋ.ବ୍ର.ସୁ.)

(୭) ସୁନ୍ଦରୀ ସଂସାରେ ସେ ହେବାରୁ ଚକ୍ରବର୍ତ୍ତୀ
ଦେଲା କି ପ୍ରତି ଅଙ୍ଗରେ ଭୂପତି ସମ୍ପତ୍ତି ଯେ ।
କୁନ୍ତଳ ଦେଶରେ ଚୂଡ଼ା ଶୋଭା କରାଇଲା
ବିଦର୍ଭରେ ହାସକୁ ପ୍ରଭୁତ୍ୱପଣ ଦେଲା ଯେ ।
ମାଳବରେ କଣ୍ଠକୁ ମଣ୍ଡିତ କଲା ନେଇ
ଚୋଳରେ ଶୋଭିତ କଲା ଉରଜକୁ ତହିଁ ଯେ ।
କାଞ୍ଚିରେ ରଞ୍ଜନ କଲା ମଧ୍ୟକୁ ନିରତ
କନକ କଟକେ କଳାପାଦକୁ ପୂଜିତ ଯେ ।
ମଣି ରମଣୀମଣିକି ଶାଣ ଯଉବନ
ବହୁମୂଲ୍ୟ ପ୍ରଭାକୁ ବଢ଼ାଇ ଦିନୁଦିନ ଯେ ।
ଉପମା ଆଣିବା କାହୁଁ ମହାକବି ହେଲେ
ସୁନ୍ଦର ଯାହା ଅଙ୍ଗରେ ସୁନ୍ଦର ହୋଇଲେ ଯେ । (ଲା.ବ.)

(୮) କବି ବିଚାରିଲା ବିଚିତ୍ର ହେଲା ତୁମ୍ବୀବୁଡ଼ିଲା
ନ ବୁଡ଼ି ଶଇଳ ସଲୀଳ ଉପରରେ ରହିଲା ।
କିସ ପୁଣି ଦେଖା ନ ଯାଏ ଯେବେ ଥାଇ ଜୀବରେ
ବିଷମ ସମସ୍ୟା ପୂରଣ ହେଲା ଏହି ଠାବରେ ।

ଅପୂର୍ବ ଅମ୍ବୁଜ ମୁଖକୁ ଚାହିଁ ଭୃଙ୍ଗ ଚକୋର
ଚୁମ୍ବିବା ଲୋଭରେ ଧାଇଁଲେ ଶ୍ରୁତି ଚାହିଁ କାତର ।
କେଶ ଦରଶନେ ରଥାଙ୍ଗ ଧାଇଁ ଆହାର ବଶେ
ବିଚ୍ଛେଦ ଭୟରୁ ପଳାଇଗଲେ ନ ରହି ପାଶେ ।
ନୟନ ଉଜ୍ଜ୍ୱଳ କଜ୍ଜ୍ୱଳ ଲାଞ୍ଛୀ ଅନାଇ ଦେଇ
ଗଭୀର ଜଳରେ ପଶିଲେ ମୀନ ଭୟକୁ ପାଇ । (ଲା.ବ. ଷଷ୍ଠଛାନ୍ଦ)

'ଲାବଣ୍ୟବତୀ' କାବ୍ୟରେ ନାୟିକା ଲାବଣ୍ୟବତୀର ଅଙ୍ଗ ଶୋଭା ପ୍ରସଙ୍ଗରେ–

(୯) ଉଠି ଭାଙ୍ଗନ୍ତେ ଅଳସ     କି ଶୋଭା କୁଚକଳସ
            • ଟେକି ହୋଏ କି ମେରୁକୁ ଜିଣିବା ଗର୍ବେ
ଉର୍ଦ୍ଧ୍ୱେଛନ୍ଦି କରବେନି     ଶୋଭା ଲପନକୁ ଘେନି
            ଚନ୍ଦ୍ରେ କି ବିଦ୍ୟୁପରିଧି ହୋଇଲା ଏବେ ।
            ମୁଖ ଜୃମ୍ଭାବଶେ ରାଜିତ ।
            ଦରବିକଶିତ କୋକନଦ ଯେମନ୍ତ । (ଲା.ବ ଏକାଦଶ ଛାନ୍ଦ)

(୧୦) ଏଣୁ ଉପମାଗଣ ନିରନ୍ତର । କି କରିବା ବୋଲି ହେଲେ କାତର ॥
ଝଳିକାନ୍ତିରେ ଲଭିଲେ ଭୀତିକି । କଲା କଣ୍ଟକୁ ଦୁର୍ଗକୁ କେତକୀ ॥
ପାଞ୍ଚେ ମନ୍ଦର କୁଚ ବଢ଼ିବାରେ । କିମ୍ବା ବୁଡ଼ି ନ ମଲି ପାରାବରେ ॥
ନାସା ପୁଡ଼ା ଫୁଲିବାର ଅନାଇ । ଭାଷା ବନ୍ଧେ ଶୁକମନ ମନାଇ ॥
ମୁଖେ ପ୍ରଚାର ପରିଚାର ପଣ । ସୁଖେ ଦର୍ପ ହତୁ କଲା ଦର୍ପଣ ॥
କମ୍ବୁ କଣ୍ଠ ଦେଖି ଅତି ଆର୍ତ୍ତରୁ । ସମନୁହେଁ ବୋଲି ଡାକେ ପ୍ରାତରୁ ॥
ନେତ୍ର ସଙ୍ଗେ ଲକ୍ଷିବେ କି ସୁମରି । ମୀନ ଜଳହୀନରେ ଯାଇ ମରି ॥
ହୋଇ ହାସରେ କୁସୁମ ବିଜିତ । ମକରନ୍ଦ ଛଳେ ଅଶ୍ରୁ ତେଜିତ ॥
(ଲା.ବ)

(୧୧) ନବ ବନିତା ଅପୂର୍ବ ପୁଷ୍ପଲତା ପ୍ରକାଶ ଷୋଳଜାତି ଫୁଲ
            ତିଳ ପୁଷ୍ପ କୁନ୍ଦ ଚାରିକମଳ
କୁମୁଦ ବନ୍ଧୂଳୀ ପାଟଳୀ ନିଆଳୀ ଚମ୍ପା ଶିରୀଷ ଉତ୍ପଳରେ
            ସୁନ୍ଦରି ! ଷଣ କୁସୁମ ଅଶୋକ ମନ୍ଦାର
            ଭୋଖୀ ଭୃଙ୍ଗ ମୁଁ ଚୁମ୍ବନେ ଆତୁର ।
କେତକୀ ବରନା ନାମ ଅଙ୍ଗୀକାର କଲେ ସରିଲାଟି ମୋରରେ ସୁନ୍ଦରୀ ।
(ଲା.ବ.)

ଏଠାରେ ନାୟିକା ଲାବଣ୍ୟବତୀର ନାସାକୁ ତିଳଫୁଲ, ଦନ୍ତକୁ କୁନ୍ଦପୁଷ୍ପ, ମୁଖକୁ ଶ୍ୱେତପଦ୍ମ, ଓଷ୍ଠକୁ ରକ୍ତପଦ୍ମ, କେଶକୁ ନୀଳପଦ୍ମ, ଅଙ୍ଗସୌରଭକୁ ଗୋଲାପିପଦ୍ମ, ହାସ କୁ କୁମୁଦ, ଅଧରକୁ ବନ୍ଧୂଲୀ, ଶ୍ରବଣକୁ ପାଟଳୀ, ନଖକୁ ନିଆଳୀ, ଅଙ୍ଗୁଳିକୁ ଚମ୍ପା, ଶରୀରକୁ ଶିରୀଷ, ନୟନକୁ ଉତ୍ପଳ, ବର୍ଣ୍ଣକୁ ଷଣଫୁଲ, କପାଳକୁ ଅଶୋକ, କରତଳକୁ ମନ୍ଦାର ଫୁଲ ସହିତ ଉପମା ଛଳରେ ବର୍ଣ୍ଣନା କରାଯାଇଛି ।

ଉପମା ପ୍ରୟୋଗରେ ଉପେନ୍ଦ୍ର ଥିଲେ ଅନତିକ୍ରମଣୀୟ । ସେ ନାୟିକାର କେଶକୁ ଶୈବାଳ, ରାହୁ, ତମାଳ, ଜଳଧର, ମନ୍ମଥରଥର ପତାକା ସହିତ ଉରଜକୁ ପଦ୍ମ କୋରକ, ପର୍ବତ ଚକ୍ରବାକ, କଳସ, ଶମ୍ଭୁ ସହିତ, ନୟନକୁ ମୀନ, ଖଞ୍ଜନ, ମୃଗ, ପଦ୍ମ ସହିତ ବାହୁକୁ ମୃଣାଳ ସହିତ, ଦନ୍ତପନ୍ତିକୁ କୁନ୍ଦପୁଷ୍ପ, ବକପକ୍ଷୀ, ଡାଳିମ୍ବ ବୀଜ, ମୁକ୍ତା, ହୀରକ ସହିତ, ଅଙ୍ଗୁଳିକୁ ଚମ୍ପାକଢ଼ି ସହିତ, ନାସିକାକୁ ତିଳଫୁଲ, ଶୁକ ସହିତ, କପୋଳକୁ ଅର୍ଦ୍ଧଚନ୍ଦ୍ର ସହିତ, ମୁଖକୁ ଚନ୍ଦ୍ର, ପଦ୍ମ ସହିତ, କର୍ଣ୍ଣକୁ ପାଟଳିଫୁଲ, ପାଶ ସହିତ, ଅଳକାକୁ ଅଳି ସହିତ, ଗତିକୁ ହଂସ ସହିତ, ଭ୍ରୂଲତାକୁ ଧନୁ ସହିତ, ଅଧରକୁ ବିମ୍ବ, ଅରୁଣ, ପ୍ରବାଳ, ଶ୍ୱେତପଦ୍ମ ସହିତ ଉପମା ମଣ୍ଡିତ କରିଛନ୍ତି ।

ଉପେନ୍ଦ୍ର ଭଞ୍ଜଙ୍କ ବିଭିନ୍ନ କାବ୍ୟରେ ମଧ୍ୟ ଆହୁରି ଅନେକ ଉପମାର ବିନ୍ୟାସ ଦେଖିବାକୁ ମିଳେ । ଦୃଷ୍ଟାନ୍ତସ୍ୱରୂପ–

(କ) "ଏଥୁଅନ୍ତେ ଶୁଣରସ ଗ୍ରୀଷମେ ନିଶି ପ୍ରବେଶ
ଉଦୟ ତାରା ଜୀବେଶ ହେଲେ ଆକାଶେ ।
ଚକ୍ର ସୁଖ ଚକ୍ରନକ୍ର ଛେଦନେ ହୀରକ ଚକ୍ର
ଫିଙ୍ଗିଚି ତାତ ସିନ୍ଧିରେ କାମ କି ରୋଷେ
ବେଶ ହେବ କି ରାତ୍ରିବାଳୀ
ସ୍ଫଟିକ ପେଟୀରେ କିବା କସ୍ତୁରୀ ଦଳି ।
ଆଜିକି ବିଭାବରୀକି ହୋଇବ ବିଭାବରିକି
ମଲ୍ଲୀମାଳ ଦେଇ ବିଧୁ କିରଣେ ମଣି
ଏ ବିଚିତ୍ର ସ୍ୱୟମ୍ବର ନାରୀକି ବରିଲା ବର
ଏତେକାଳେ ଦେଖାଗଲା ଏ କଥା ପୁଣି
ରବିକରେ ମହୀ-ମହିଳା
ତାପି ହୋଇଥିଲାକି ଚନ୍ଦନ ଲେପିଲା ।" (ଲା.ବ.)

(ଖ) "ବେଳାକୁ ନ ଲଂଘେ ସତ୍ୟେପାରାବାର ଯଥା ତାକୁ ନ ଲଂଘିଲା
ବିଷଭକ୍ଷଣ ବିରୁପାକ୍ଷ ପରାୟେ ମୂକେ ସମ୍ମତ ଦିଶିଲା
ବଡ଼ ସନ୍ତୋଷ ରାଣୀ
ବିଜ୍ଞ ଶ୍ରୀରାମେ ଡକାଇ ଆଣି ।" (ବୈ.ବି)

(ଗ) "ଝୀନ ବସନ ଫୁଟି ଦିଶେ ପ୍ରସନ୍ନ ରୋମାଳୀ ପୟୋଧର ଦୁଇ
ଶୃଙ୍ଗାର ରସଲତା ଉର୍ଦ୍ଧ୍ୱେ ବିଧାତା ପ୍ରେମାମୃତ ଫଳ ଫଳାଇ।" (ଲା.ବ)

(ଘ) "ମାଳୀ ଚମ୍ପକ ମାଳିକା ଘେନିଲାର ପରି
ସେନେହବଶରେ ତାକୁ ସେ କୋଳରେ ଧରି ସେ ।" (ଲା.ବ.)

(ଙ) "ବରାଟକେ ଅନ୍ତଃପୁରେ ଦ୍ୟୁତ ଖେଳାଇଲେ
ବଳବନ୍ତ ଅବଳା ଧରସି ନପାରିଲେ ।
ବୃଦ୍ଧିନଦୀ ତଟ ତରୁ ଉତ୍ପାଟି ଭସାଇ
ବେତସ ମଧ୍ୟରେ କିଛି କହି ନ ପାରଇ । (ବୈ.ବି)

ଏହିପରି ଉପେନ୍ଦ୍ର ତାଙ୍କ କାବ୍ୟରାଜିରେ ଉପମା ପ୍ରୟୋଗ ଦ୍ୱାରା ଅପୂର୍ବ କାବ୍ୟ ସୌନ୍ଦର୍ଯ୍ୟ ସୃଷ୍ଟି କରିଛନ୍ତି । 'କୋଟିବ୍ରହ୍ମାଣ୍ଡସୁନ୍ଦରୀ' କାବ୍ୟରେ ସ୍ନାନଯାତ୍ରା ପ୍ରସଙ୍ଗରେ କବିଙ୍କ ଉପମା ପ୍ରଦାନ ବେଶ୍ ସାର୍ଥକ ଓ ମନୋଜ୍ଞ ହୋଇପାରିଛି । କବିଙ୍କ ଭାଷାରେ –

"ଇନ୍ଦ୍ରପଦ ଦାତା ଯେ ରାଜାଧିରାଜେଶ୍ୱର
ବିଜେ କଲେ ଦ୍ୱିଜେଦେଇ ନିଜ କରଭର ।
ଢାଳନ୍ତି ଚାମର ଶ୍ୱେତଛତ୍ର ଟେକା ତହିଁ
କ୍ଷୀର ସାଗର ଲହରୀ ଭ୍ରମ ଉପୁଜାଇ ।
ଗହଳ ହୋଇଣ କଳାଛତ୍ର ଶୋଭା ଦିଶି
ତୁଙ୍ଗ ଶିଖରୀ ପରେ କି ଜଳଦ ଆକର୍ଷି
ପତାକା ବ୍ୟାଜଟି ଯେବେ ଶୂନ୍ୟେ ନୀରଧାର
ସ୍ୱେଦ ଛଳେ କରେ ନରତନୁ ଜରଜର ଯେ ।
ଚଞ୍ଚଳା ଖେଳା କରିବା ଖଦି ପୀତବାସ
ତୃଷିତ ଦ୍ୱିଜ – ଚାତକ ଜଳପାନେ ତୋଷ ।
ଏ ପ୍ରମାଣ ବରହିଣ ପୁଚ୍ଛ ତେଣୁ ଚଳି
ନିଶାଣ ମଣ୍ଡୂକ ନାଦେ ଦିଗନ୍ତ ଉଚ୍ଛୁଳି ।

ପ୍ରଭୁ ଚଳନ ଶବଦ ଜନିତ ସ୍ତନିତ
ପୁଷ୍ପାଞ୍ଜଳି ବକାବଳୀ ଉଡ଼ିଖସେ ସେତ ।
ଏମନ୍ତେ ସ୍ନାନ ମଣ୍ଡପେ ସିଂହାସନ ପର
ବିଜେ ମହାପ୍ରଭୁ ଘେନି ଭଗ୍ନୀସହୋଦର ।
ନାଗ ନର କିନ୍ନର ଗନ୍ଧର୍ବଛନ୍ତି ଚାହିଁ
ଅନେକ କନକ ଘଟେ ପୂର୍ଣ୍ଣକରି ତହିଁ ।
ଢାଳିଲେ ଭୂସୁରେ ନୀର ଶ୍ରୀମୁଖ ମଣ୍ଡଳେ
ଧାରାମାନ ପତନ ହୋଇଲା ମହୋଜ୍ଜ୍ୱଳେ ।
କି ମେରୁ ହୀରା ମାରାଗ ହେମ ଶୃଙ୍ଗୁ ଖସି
ଜାହ୍ନବୀ ଯମୁନା ହରିତାଳ ଧାରା ଆସି ।
ଲେପନ ଚନ୍ଦନ ଖସି ଦିଶିଲା ଏମନ୍ତ
ସେ ତିନି ଶୃଙ୍ଗୁ କି ଜାତ ତରଳ ରଜତ ଯେ ।" (କୋ.ବ୍ର.ସୁ)

କବି ଉପେନ୍ଦ୍ର ଶ୍ରେଷ୍ଠ ଉପମାକାରକ କବି । ଏହାକୁ ଅହୋଭାଗ୍ୟ ବୋଲି ସେ ବିବେଚନା କରିଛନ୍ତି । ତେଣୁ କବିଙ୍କର ସ୍ୱୀକାରୋକ୍ତି –

"ଭାଗ୍ୟରୁ ଏ ଉପକାରକ ମୁଁ ଯେ ହେଲି
ପୁଲକିତ ଶରୀରେ ହରିରେ ସ୍ତୁତି କଲି ହେ ।
ମହିମା ଅନନ୍ତପ୍ରଭୋ ମହିମା ଅନନ୍ତ
ମନୋହାରୀ ସହୋଦର ହୋଇଯାର ଖାତ ହେ ।
ଅରି ଦର କର ବିଭୋ ଅରିଦର କର
ଯୁଗେ ଯୁଗେ ଧରି ନାନାବିଧ ଅବତାର ହେ
ବିଭୀଷଣ ଅଘ ବିଭୀଷଣ ଅଘ ହର
ସ୍ଥାନ କରିଦେଲ ଲଙ୍କା ନିଜ କଳେବର ହେ ।
ଭବ-ବିରଞ୍ଚି ପୂଜିତ ହେ ଭବବିରଞ୍ଚି
ଶୁଚି କବଳକ ସଦାନନ୍ଦ ସଦା ଶୁଚି ହେ ।" (କୋ.ବ୍ର.ସୁ)

**ନଗର ବର୍ଣ୍ଣନା :**

ନଗର ବର୍ଣ୍ଣନାରେ ଉପେନ୍ଦ୍ର ମଧ୍ୟ ନିଜର କୁଶଳତା ପ୍ରଦର୍ଶନ କରିଛନ୍ତି । ନଗରୀ, ପ୍ରାସାଦ ବର୍ଣ୍ଣନାରେ ଉପେନ୍ଦ୍ରଙ୍କର ସ୍ୱତନ୍ତ୍ରତା ପରିଲକ୍ଷିତ ହୁଏ । ସିଂହଳ, ପୁଷ୍ପପୁର ପ୍ରଭୃତି ନଗର ବର୍ଣ୍ଣନା ପ୍ରସଙ୍ଗରେ କବି ସେହି ସେହି ସ୍ଥାନରେ ରହିଥିବା

ବହୁମୂଲ୍ୟର ଶୁଭ୍ର ଓ ଦୀପ୍ତିଶାଳୀ ଅଟ୍ଟାଳିକା ଇତ୍ୟାଦି ବର୍ଣ୍ଣନାରେ ଚମତ୍କାରିତା ପ୍ରଦର୍ଶନ କରିଛନ୍ତି । ଲାବଣ୍ୟବତୀ କାବ୍ୟରେ ସିଂହଳ କଟକର ଶୋଭା ବର୍ଣ୍ଣନା କରିବାକୁ ଯାଇ ଉପେନ୍ଦ୍ର ଲେଖିଛନ୍ତି –

"ଶୁଣ ହେ ସୁଜନେ ରସ କର୍ଣ୍ଣମନ ଲୋଭା
ରତ୍ନାକର ମଧରେ ସିଂହଳ ଦ୍ୱୀପ ଶୋଭା ଯେ ।
କହିବାର ନୋହେ ସେ କଟକ ଛଟକକୁ
ରତ୍ନଝଟକରେ ହସେ ଆନ କଟକକୁ ଯେ ।
ଅଛନ୍ତି ଧନଦ ସମ ଧନବନ୍ତ ମାନେ
କର୍ଣ୍ଣେ ଶୁଣାଅଛି ସମାନକୁ ଏକାଦାନେ ଯେ ।
ଯେତେ କୋଟି ସୁବର୍ଣ୍ଣ ଯାହାକୁ ମିଳେ ତହିଁ
ତେତେ ଗୋଟି କଳସ ସେ ମନ୍ଦିରେ ବସାଇ ଯେ ।
ଗୋରଚନା ପ୍ରକାରେ ଯହିଁରେ ମୃଗମଦ
ନିତି ଜୀର୍ଣ୍ଣ ବସନକୁ ଯାଚନ୍ତି ପୁଳିନ୍ଦ ଯେ ।
କୁଙ୍କୁମ ଉକୁଟାଇ ହୁଅନ୍ତି ନାରୀ ଯହିଁ
ହରିଦ୍ରାରେ ଆଦର କରିବେ କାହିଁ ପାଇଁ ଯେ ।
ମାର୍ଗ ମାର୍ଜନେ ରଜନିକର ଆଣି ଯାଇ
ରଜନୀକର ଆଣନ୍ତି ଶକଟରେ ବାହିଯେ।" (ଲା.ବ. ୨ୟ ଛାନ୍ଦ)

ସେହିପରି ପୁଷ୍ପପୁର ବର୍ଣ୍ଣନା ପ୍ରସଙ୍ଗରେ କବି ନଗରୀରେ ରହିଥିବା ସୁରମ୍ୟ ହର୍ମ୍ୟ ବର୍ଣ୍ଣନା କରିବାକୁ ଯାଇ ଲେଖିଛନ୍ତି –

"ଛଦ୍ମ ନୁହଇ ଏ ପୁଣ, ସଦ୍ମ ରତନେ ନିର୍ମାଣ
ପଦ୍ମ ସକାଶରୁ ଜାଣି ଦିବାରଜନୀ ଯେ ।
ନାନା ରତ୍ନ ପ୍ରଭାଧରି, ନଭ ଚିତ୍ରବାଡ଼ ପରି
ଦେଖାଇବେ କେଉଁ ଜ୍ୟୋତି ତାରକାପନ୍ତି ଯେ ।
ତୋରଣା ବିବିଧ ରତ୍ନେ, ପ୍ରାସାଦେ ଖଞ୍ଜିତ ଯତ୍ନେ
ବଲ୍ମୀକରେ ଇନ୍ଦ୍ରଚାପ ଜାତ ସ୍ୱରୂପ ଯେ ।
ଗୃହେ ମଣିମୟଚାଳ, ବଉଳ ଝରା ପ୍ରବାଳ
ମହା ରଜତ ରଜତ ବାଡ଼ ନର୍ମିତ ଯେ ।

ମାଣିକ୍ୟ ମର୍କତ ମିହ୍ନା, ପିତୁଳି ଚିତ୍ର ରଚନା
ଲତା ମହୀରୁହ ଡାଳୀ ତହିଁରେ ଝଳି ଯେ ।
କଳଶ ହୀରା ବୈଡୁର୍ଯ୍ୟ, ପ୍ରକାଶ ମାନ ସେ ତେଜ
କି ଶ୍ୱେତ ପୀତ ପତାକା, ଏମନ୍ତ ଶଙ୍କା ଯେ ।” (କୋ.ବ୍ର.ସୁ)

## ବନଶ୍ରୀ ଓ ବନବାସୀ ଜୀବନର ଚିତ୍ର :

ଭଞ୍ଜ ସାହିତ୍ୟର ଅନ୍ୟ ଏକ ବିଶିଷ୍ଟ ଦିଗ ହେଉଛି ବନଶ୍ରୀ ଓ ବନବାସୀ ଜୀବନର ଚିତ୍ର । ଉପେନ୍ଦ୍ର ଥିଲେ ବନ ବର୍ଣ୍ଣନାରେ ଜଣେ ସାର୍ଥକ ଶିଳ୍ପୀ । ବନ, ପର୍ବତ, ନଦନଦୀ, ବନସ୍ପତି, ବନ ପଶୁପକ୍ଷୀ ସହିତ ବନବାସୀ ଜୀବନ ବର୍ଣ୍ଣନା କରିବାରେ କବି ଉପେନ୍ଦ୍ର ମଧ୍ୟଯୁଗୀୟ କବିମାନଙ୍କୁ ଅତିକ୍ରମ କରିଛନ୍ତି ନିଶ୍ଚୟ । ବାସ୍ତବିକ ଚିର ସବୁଜିମାଭରା ବନଭୂମିର ମଞ୍ଜୁଳ ରୂପଶ୍ରୀକୁ ଅପୂର୍ବ ସୃଜନାତ୍ମକ ଶୈଳୀରେ ରୂପାୟନ କରିବାରେ ଉପେନ୍ଦ୍ରଙ୍କ ସିଦ୍ଧି ଅବିସମ୍ବାଦିତ ।

ଉପେନ୍ଦ୍ର ତାଙ୍କ ପ୍ରସିଦ୍ଧ କାବ୍ୟ ‘ବୈଦେହୀଶ ବିଳାସ’ର ଊନବିଂଶ ଛାନ୍ଦରେ ବନ ବର୍ଣ୍ଣନାର ଯେଉଁ ଅତୁଳନୀୟ କବିକର୍ମ ସମ୍ପାଦନ କରିଛନ୍ତି, ତାହା ସମଗ୍ର ଓଡ଼ିଆ କାବ୍ୟ ସାହିତ୍ୟରେ ବିରଳ । ବନାନୀର ଶୋଭା କବିଙ୍କ ଲେଖନୀରେ ଏହିପରି –

“ବୃହଭାନୁ ଭାନୁ ଭାନୁ ପ୍ରଭା ତାପ ନାହିଁ
ବୃତତମାଳ ମାଳ ମାଳତୀ ଲତା ତହିଁ ଯେ ।”

ବନଭୂମିରେ ଝରଣା ନିରନ୍ତର ଝର୍ଝର ନାଦରେ ବହି ଚାଲିଛି । ଝରଣାର ନୃତ୍ୟାୟିତ ଗତିରେ ଅସଂଖ୍ୟ ଲହରୀ ସୃଷ୍ଟି ହେଉଛି । ଝରଣାର ଦୁଇ ପାର୍ଶ୍ୱରେ ରଙ୍ଗଣୀବନ ଶୋଭା ପାଉଛି । ଶୀତଳ ସମୀରଣ ଚନ୍ଦନ, କର୍ପୂର ଓ ଚନ୍ଦ୍ରର ଶୀତଳ ଗୁଣରେ ଯୁକ୍ତ ହୋଇ ଓ ସୁରଭିତ ହୋଇ ଧୀରେ ଧୀରେ ବହୁଅଛି । ଏପରି ଏକ ରମଣୀୟ ବନଭୂମିକୁ କୋକିଳର କୁହୁତାନ ଆହୁରି କାବ୍ୟିକ ଓ ସୁନ୍ଦର କରିପାରିଛି । ମଧୁରତୁରେ ବନାନୀର ଶୋଭା କିପରି ବର୍ଣ୍ଣାଢ୍ୟ, ତାହା ଉପେନ୍ଦ୍ରଙ୍କ ଲେଖନୀରେ ଯଥାର୍ଥ ରୂପେ ଚିତ୍ରିତ ହୋଇଛି । ଯେପରି –

“ବିଞ୍ଚେ ଘନ ଘନ ଘନ କୁଶ କଣ ଯଥା
ବୃଷ୍ଟି ମଧୁର ମଧୁର ମଧୁରଜେ ତଥା ।
ବିଭ୍ରାବିତ ଭୃଙ୍ଗ ଭୃଙ୍ଗ ଭୃଙ୍ଗ କରେ କେଳି
ବନୀ ବନୀ ବନିତା କି ପୁଷ୍ପହାସେ ଝଳି ଯେ ।”

କବି ଉପେନ୍ଦ୍ର ଚିତ୍ରକୂଟ ପର୍ବତର ଶୋଭାଶ୍ରୀ ବର୍ଣ୍ଣନା କରିବାକୁ ଯାଇ ଲେଖିଛନ୍ତି –

"ବିଚିତ୍ର ଚିତ୍ରକୂଟଯେ କୁଟଜେ ବ୍ରତତି ଯେ ।
ବ୍ରତତୀ ତତି ଜୟନ୍ତୀ ଅତିଭା ବାସନ୍ତୀ;
ବାସନ୍ତୀ ସତିରେ ! ଫୁଲ୍ଲ ଫୁଲରେ ପ୍ରବର୍ତ୍ତି ଯେ ।
ବର୍ତ୍ତିକ ତିକ ଆଳି ଆଳି ଯେ ବିହରିତ
ବିହରିତ ମାନ ମାନ ଶୁକ ସୁ- କବି ତ ଯେ ।
ବିତର ତରଳ ନେତ୍ର ନେତ୍ର ସୁବାସିନୀ
ବାସିନୀ ସୁଜାତି ଜାତୀ ସ୍ୱଭାବୀ ଭାବିନୀ ।" (ବୈ.ବି)

କବି ଉପେନ୍ଦ୍ର ବର୍ଣ୍ଣନା କରିଛନ୍ତି ଯେ ଆକାଶରୁ ଜଳଧାରା ମୁକ୍ତାକଣା ପରି ଯେପରି ଝରିପଡ଼େ, ସେହିପରି ସୁଉଚ୍ଚ ଅର୍ଜ୍ଜୁନ ବୃକ୍ଷମାନଙ୍କରୁ ଅସଂଖ୍ୟ ଫୁଲ ଝରିପଡୁଛନ୍ତି । ସ୍ଥାନେ ସ୍ଥାନେ ଥୁଣ୍ଟା ବୃକ୍ଷ ଉପରେ ବକପନ୍ତି ବସି ରହି ଏହି ବୃକ୍ଷକୁ ଶୁକ୍ଳବର୍ଣ୍ଣ କରିଦେଇଛନ୍ତି । ବସନ୍ତ ଦ୍ରୁମ (ଆମ୍ରବୃକ୍ଷ) ମାନଙ୍କରେ ବସନ୍ତପକ୍ଷୀମାନେ (କୋଇଲି) ଶୋଭା ପାଉଛନ୍ତି । ଅର୍ଜ୍ଜୁନ ବୃକ୍ଷମାନଙ୍କରେ ଶୁକ ପକ୍ଷୀମାନେ ଶୋଭା ପାଉଛନ୍ତି । ଭରତିଆ ପକ୍ଷୀ ବିରଳ ଭାରତୀ ସୃଷ୍ଟି କରି ବିହାର କରୁଅଛି । ମଲ୍ଲି ଓ ବକୁଳ ଗଛମାନଙ୍କରେ ଭ୍ରମରମାନେ ବେଢ଼ି ଅଛନ୍ତି । ସୁଗନ୍ଧିତ ଚନ୍ଦନ ବୃକ୍ଷରେ ସର୍ପମାନେ ବିହାର କରୁଛନ୍ତି । ବନଭୂମିରେ ପୁନ୍ନାଗ ଓ ନାଗେଶ୍ୱର ବୃକ୍ଷମାନେ ପୁଷ୍ପଧାରଣ କରିଛନ୍ତି । ଏମାନଙ୍କର ଶାଖାରେ ବନପକ୍ଷୀ ଓ ମର୍କଟମାନେ ସ୍ୱଚ୍ଛନ୍ଦରେ ବିହାର କରୁଛନ୍ତି । ଏଠାରେ ସିଂହ ଶ୍ରେଷ୍ଠ ହସ୍ତୀକୁ ବିଦାରଣ କରିଛି । ଉକ୍ତ ବନରେ କେବଳ ଉତ୍ତମ ଅଶ୍ୱର ଅଭାବ ରହିଛି । ଉପେନ୍ଦ୍ରଙ୍କ ଭାଷାରେ –

"ବିକଶିତ ହୋଇଛନ୍ତି କେଶରୀ କେଶରୀ
ବିଳସେ ଶାଖାରେ ଦେଖ କେଶରି କେ ଝରିଯେ ।
ବିଦାରି ଯାଇଛି କରି କେଶରୀ କେଶରି
ବହୀନ ହୋଇଛି ମାତ୍ର କେସରୀ କେଶରୀ ଯେ ।" (ବୈ.ବି.)

କବି ଉପେନ୍ଦ୍ର ବର୍ଣ୍ଣନା କରିଛନ୍ତି ଯେ ପର୍ବତର ବନରାଜି ବିପ୍ରଲବ୍ଧା ନାୟିକା ପରି ପ୍ରତୀୟମାନ ହୋଇଛନ୍ତି ଏବଂ ଅଭିମାନ ହେତୁରୁ ରୁଷିକରି ବାମ ମନୋଭାବ ପୋଷଣ କରିଛନ୍ତି । ପକ୍ଷାନ୍ତରେ ଏହି ବନଗୁଡ଼ିକ ଋଷିମାନଙ୍କୁ ଆକୃଷ୍ଟ

କରି ଆଣିଛନ୍ତି । ବିପ୍ରଲବ୍ଧା ନାୟିକା ବିଟ ପୁରୁଷ ପ୍ରତି ହାତ ହଲାଇ ନାହିଁ ନାହିଁ କରିଥାଏ । ସେହିପରି ଏହି ବନଭୂମିରେ ବୃକ୍ଷର ଶାଖାମାନେ ପବନର ପ୍ରବାହରେ ସଞ୍ଚାଳିତ ହେଉଥାନ୍ତି । ବିପ୍ରଲବଧା ନାୟିକା ନିଜର ସହଚରୀମାନଙ୍କ ସହିତ ଗୃହାଭିମୁଖୀ ହୋଇଥାଏ । ସେହିପରି ଏହି ବନଭୂମି ଝିଣ୍ଟିଗଛ ଓ ଗୁଗ୍‌ଗୁଳ ଗଛ ମାନଙ୍କ ଗହଣରେ ମନୋରମ ଦେଖାଯାଉଅଛି । ଭଞ୍ଜଙ୍କ ଭାଷାରେ –

"ବନ୍ୟାଶିଖରର ତହିଁ ବିପ୍ରଲବ୍ଧା ପ୍ରାୟ ହୋଇ
ରକ୍ଷିବାର ପ୍ରବର୍ତ୍ତାଇ ଅଛି ଯେ
ବିଟପପ୍ରକମ୍ପକର ସଙ୍ଗୀତ ସହଚରୀର
ପୁର ଅଭିମୁଖହିଁ ହୋଇଛି ଯେ ।" (ବୈ.ବି.)

ସେହିପରି କବି ଉପେନ୍ଦ୍ର ଏହି ବନଭୂମିକୁ ଖଣ୍ଡିତା ନାୟିକା ସହିତ ତୁଳନା କରିଛନ୍ତି । ଖଣ୍ଡିତା ନାୟିକା ମନ ସର୍ବଦା ବିରସ ଥାଏ । ଖଣ୍ଡିତା ନାୟିକା ମଧୁର ଭାଷିଣୀ ଏବଂ ସେ ପୁରୁଷମନରେ କାମଭାବନା ବୃଦ୍ଧି କରାଇବାରେ ସମର୍ଥ ହୋଇଥାଏ । ଅନ୍ୟ ପୁରୁଷ ଦ୍ୱାରା ନିଜର ଉନ୍ନତ ବକ୍ଷୋଜ ଯୁଗଳକୁ ସେ ସ୍ପର୍ଶ କରାଇ ଦିଏ ନାହିଁ । କେବଳ ନିଜପ୍ରତି ପୁରୁଷମନରେ ଅନୁରାଗ ସୃଷ୍ଟିକରିବାକୁ ଚେଷ୍ଟିତା ଥାଏ । ପକ୍ଷାନ୍ତରେ, କବିଙ୍କର ପ୍ରତିପାଦ୍ୟ ବିଷୟ ଏହି ଯେ ବନପ୍ରଦେଶ ପକ୍ଷୀମାନଙ୍କର କାକଳିରେ ପୂର୍ଣ୍ଣ ହୋଇ ଜନମନ ହରଣ କରୁଅଛି । ମଧୁରତୁରେ କୋକିଳର ମଧୁର ସ୍ୱର ପୁରୁଷ ମନରେ ମଦନଭାବକୁ ସୃଷ୍ଟି କରୁଅଛି । ଏଠାରେ ନାରିକେଳ ବୃକ୍ଷଗୁଡ଼ିକ ସୁଉଚ୍ଚ ହୋଇଥିବାରୁ କୌଣସି ପୁରୁଷ ଏହାର ଫଳକୁ ହାତବଢ଼ାଇ ସ୍ପର୍ଶକରିପାରୁ ନାହାନ୍ତି । କବିଙ୍କ ଭାଷାରେ –

"ବିରସ ଖଣ୍ଡିତା ସେହି ପିକବାଣୀରେ ଛଳଇ
ପ୍ରବୃଦ୍ଧି କରଇ ମଦନକୁ ଯେ
ବିସ୍ମରଣ କରସଙ୍ଗ ପୟୋଧର ଫଳତୁଙ୍ଗ
ପୁରୁଷ ପ୍ରକାଶି ରଞ୍ଜନକୁ ଯେ ।" (ବୈ.ବି.)

'ସୁଭଦ୍ରା ପରିଣୟ' କାବ୍ୟରେ ରୈବତ ପର୍ବତର ବର୍ଣ୍ଣନା ପ୍ରସଙ୍ଗରେ କବି ଲେଖିଛନ୍ତି –

"ସମଭୁତ ଜନେ ଆନନ୍ଦ ଗିରିଶୋଭାକୁ ଚାହିଁ
ସରିବାର ନୁହେଁ କଥନେ କିଛି କହିବି ମୁହିଁ ।
ସତ ଅବନୀ ବନିତାର ସ୍ତନ ଶୋଭାପାଉଛି
ସୁତୁଙ୍ଗ କଠିନ ଦୁର୍ଲ୍ଲଭ ତିନିଗୁଣ ବହିଛି ।

ସନ୍ତତସନ୍ତତି ମର୍କତମଣି ପ୍ରକାଶେ ଶୋଭା
ସପ୍ତହୟ ହୟ କୋମଳ ଦୁର୍ବା ବିଚାର ଲୋଭା ।
ଶ୍ରମକୁ ହରନ୍ତି ବିଶ୍ରାମ କରି ଲବମାତର
ସୁରସୁତ ସେହି ଠାବରେ କରେ ମାତ୍ର ପ୍ରହାର ।
ସୁଦୀପ୍ତ ହୀରାର ବାହୁଡ଼େ ବାଜି ବ୍ରହ୍ମାଣ୍ଡ ଭାଣ୍ଡ
ସୁରଭୀ ବତ୍ସା କ୍ଷୀରଧାର ମଣି ବିସ୍ତାରେ ତୁଣ୍ଡ ।
ସ୍ୱଚ୍ଛେ କେଉଁ ଶୃଙ୍ଗେ ପ୍ରକାଶମାନ ମାଣିକ୍ୟଜ୍ୟୋତି
ମୁଣ୍ଡ ଉପରକୁ ଟୋଳିଛି କିସେ ଲୋହିତ ଦନ୍ତୀ ।
ସ୍ମରଶାସ୍ତ୍ର ହିଁ ମୂର୍ତ୍ତିମନ୍ତ ମଣି ଗହ୍ୱରେ ତହିଁ
ଶୂନ୍ୟବିବେକ ଶବରୀକି ବିପରୀତ କରାଇ ।
ଶବରଶବରୀମାନେ ଯେ ବିଳସନ୍ତି ସାନୁରେ
ସୁଧାକର ଅତି ସମୀପେ ରହେ ଦୀପ ଭାବରେ ।
ଶାବକେ ତାଙ୍କ ରାତ୍ରିରେ ଖେଳା କଉତୁକରେ
ଶଶାଙ୍କଅଙ୍କ ହରିଣକୁ ଆଉଁସନ୍ତି ସ୍ୱକରେ ।
ସିଂହ ବିଦାରଣ ବାରଣ ମୋତି ପତନ ଚାହିଁ
ସାଉଁଟିଲା ପକ୍ୱବଦରୀ ସଙ୍ଗେ ବିକନ୍ତି ନେଇ ।" (ପଞ୍ଚମ ଛାନ୍ଦ)

ସେହିପରି ଉପେନ୍ଦ୍ରଙ୍କର ଲୋକପ୍ରିୟ କାବ୍ୟ 'ଲାବଣ୍ୟବତୀ'ରେ ବନବର୍ଣ୍ଣନାର ଅନେକ ଦୃଷ୍ଟାନ୍ତ ରହିଛି । ଲାବଣ୍ୟବତୀ କାବ୍ୟର ଚତୁର୍ବିଂଶ ଛାନ୍ଦରେ ବନ ଭୂମିର ଅପରୂପ ଶୋଭା ବର୍ଣ୍ଣିତ । କାନନକାନ୍ତି ବର୍ଣ୍ଣନା କରି ଉପେନ୍ଦ୍ର କାବ୍ୟାମୋଦୀ ପାଠକମନରେ ଯେଉଁ ନିଛକ ଫଟୋଗ୍ରାଫି ଆଙ୍କିଦେବାରେ ସମର୍ଥ ହୋଇଛନ୍ତି, ତାହାହିଁ ତାଙ୍କ ଅନନ୍ୟ ସର୍ଜନଶୀଳ ସ୍ରଷ୍ଟାମାନସର ସ୍ୱାକ୍ଷର ବହନ କରେ । ଉପେନ୍ଦ୍ର କହନ୍ତି – "ଯେଣେ ଚାହିଁଲେ ନବପାଟଳି ଜୟନ୍ତି କୁରୁବକ ଶାଲ୍ମଳୀ ପୁଷ୍ପିତ କେନ୍ଦୁ ପଲ୍ଲବେ ଝଳି" – ଏହି ଦୃଶ୍ୟପଟଟି ଓଡ଼ିଶାର ବସନ୍ତକାଳୀନ ବନଭୂମିର ଏକ ରଙ୍ଗୀନ ଫଟୋଗ୍ରାଫି । ସେହିପରି ପର୍ବତ ବର୍ଣ୍ଣନା ପ୍ରସଙ୍ଗରେ କବିଙ୍କର "ବିହୀନ ପକ୍ଷ ହୋଇଲା, ଅଚଳ ପଦବୀ ନେଲା," 'ସହମଳୟ ପାରିପାତ୍ରିକ ବିନ୍ଧ୍ୟ ହେମାଦ୍ରି ମେରୁ ମୈନାକ ଗନ୍ଧମାର୍ଦ୍ଦନ କୈଳାସ ଲୋକାଲୋକ ସହିତ ସେ' ପ୍ରଭୃତି ପଂକ୍ତିଗୁଡ଼ିକ ଉଲ୍ଲେଖ ଯୋଗ୍ୟ ।

ବନଭୂମିର ଅନ୍ୟତମ ସମ୍ପଦ ନଦନଦୀ । ଉପେନ୍ଦ୍ର ବିଭିନ୍ନ ନଦନଦୀର ବର୍ଣ୍ଣନା ଦେଇ ସେମାନଙ୍କର ମହିମା ପ୍ରତିପାଦନ କରିଛନ୍ତି । 'ବୈଦେହୀଶ ବିଳାସ' କାବ୍ୟର ନବମ ଛାନ୍ଦରେ ଉପେନ୍ଦ୍ର 'ବିତଳକୁ ଆଲିଙ୍ଗନ କରି ଜାହ୍ନବୀ ଶୋଭନ ହରେ ସୁରବର ତାପ ଚାରୁଧାରା ସେ' ପଂକ୍ତି ମାଧ୍ୟମରେ ପତିତପାବନୀ ଗଙ୍ଗା ନଦୀର ମହିମାଗାନ କରିଛନ୍ତି । ଏହି କାବ୍ୟରେ ଗୋଦାବରୀ ନଦୀର ବର୍ଣ୍ଣନା ପ୍ରସଙ୍ଗରେ କବି ଲେଖିଛନ୍ତି – "ବିଲୋକି ନଦୀ ଗୋଦାବରୀ । ବାମା କି ଶୁକ୍ଳ ଅଭିସାରୀ ।" ଚିତ୍ରକୂଟ ପର୍ବତ ନିକଟରେ ମଧୁର ଜଳ ବିଶିଷ୍ଟ ପୟୋଷ୍ଣୀ ନଦୀର ଉଲ୍ଲେଖ କରି ଉପେନ୍ଦ୍ର କହନ୍ତି –

"ବହେ ପୟୋଷ୍ଣୀ ନଦୀ
ବିଶେଷିତ ତହିଁ ହୋଇ ସ୍ୱାଦୀ ।"

ପ୍ରସଙ୍ଗ କ୍ରମେ କବି ଉପେନ୍ଦ୍ର ବିଭିନ୍ନ କାବ୍ୟରେ କାବେରୀ, ରେବା, ବାହୁଦା, ସରସ୍ୱତୀ, ସରଯୂ, ତମସା, ଚନ୍ଦ୍ରଭାଗା, ଯମୁନା, କୌଶିକୀ, ଋଷିକୁଲ୍ୟା ପ୍ରଭୃତି ନଦୀଗୁଡ଼ିକର ବର୍ଣ୍ଣନା ଦେଇ ସେଗୁଡ଼ିକୁ ଲୋକପ୍ରିୟ କରାଇବା ସହିତ ସେମାନଙ୍କର ମର୍ଯ୍ୟାଦା ବୃଦ୍ଧି କରାଇଛନ୍ତି ।

ଭଞ୍ଜ ସାହିତ୍ୟରେ ଅନ୍ୟ ଏକ ବିଶିଷ୍ଟ ଦିଗ ହେଉଛି ବନବାସୀ ଜୀବନର ଚିତ୍ର । କବି ବୈଦେହୀଶବିଳାସ କାବ୍ୟରେ ବର୍ଣ୍ଣନା କରିଛନ୍ତି ଯେ ଶ୍ରୀରାମ, ଲକ୍ଷ୍ମଣ, ଓ ସୀତା ଯେତେବେଳେ ତମସା ନଦୀ ପାର ହୋଇ ବଣରେ ପ୍ରବେଶ କରିସେଠାରେ ଅବସ୍ଥାନ କରୁଥିଲେ ଶବରମାନଙ୍କର ରାଜା ଗୁହକ ଶବର ସେଠାରେ ସେମାନଙ୍କୁ ଭେଟିଥିଲେ ଏବଂ ଶ୍ରୀରାମଙ୍କ ବନବାସ କଥାଶୁଣି ଗଭୀର ଦୁଃଖାଭିଭୂତ ହୋଇଥିଲେ । ଶବରରାଜ ସେମାନଙ୍କୁ ସେହି ରାତ୍ରିରେ ଆତିଥ୍ୟ ପ୍ରଦାନ କରିଥିଲେ । ସେହିପରି ଶ୍ରୀରାମ, ଲକ୍ଷ୍ମଣ ଓ ସୀତା ବନମାର୍ଗରେ ଯାଉଥିବା ସମୟରେ ବନବାଳାମାନେ ତାଙ୍କୁ କୌତୁକ ଦୃଷ୍ଟିରେ ଦେଖୁଥିଲେ ଏବଂ ସେମାନଙ୍କ ଚକ୍ଷୁର ଅନ୍ତରାଳରେ ରହିବା ପର୍ଯ୍ୟନ୍ତ ଏହି କୁଟୀର ବାସିନୀମାନେ ଅପଲକ ନୟନରେ ସେମାନଙ୍କୁ ଚାହିଁ ରହିଥିଲେ । ଉପେନ୍ଦ୍ର ଲେଖିଛନ୍ତି –

"ବ୍ୟକତ ହୋଇବା ଯାଏ ଚାହିଁଥିଲେ ପକ୍ୱଣବାସୀ ଗମିଲେ ।"

ସେହିପରି ବନବାସୀ ଶବରମାନଙ୍କ ସମ୍ପର୍କରେ ଉପେନ୍ଦ୍ର ଲେଖିଛନ୍ତି –

"ବ୍ୟାଘ୍ରବର ଶବର ମାରନ୍ତି ଗୁଳି ଯୋଗେ ଯେ ।" (ବୈ.ବି.)

"ଶବର ପନ୍ତିକିଭୟଙ୍କର
ଯଥା ପରତେ ରାଟକିଙ୍କର ।" (ଲା.ବ.)

"ଶବରୀ ଶର୍ବରୀଶେଷେ ଅରଣ୍ୟକୁ ଯାଇ
ହରି ବିଦାରିତ ମୋତି ଆଣନ୍ତି ଗୋଟାଇ
ବଦରି ଆଦରେ ନେଇ ସରୋବରେ ଧୋଇ
ବିକାତା ନଯିବ ବୋଲି ଆସନ୍ତି ପକାଇ ଯେ ।"

ମାନବଜୀବନ ସହିତ ବନଭୂମି ଓ ବନବାସୀ ଜୀବନ ଚିର ଅନ୍ୱିତ । ବାସ୍ତବିକ ବନଭୂମି ଓ ବନ୍‌ବାସୀ ନିତ୍ୟକରୁଣାମୟ, ଆନନ୍ଦମୟ ଓ ସମ୍ବେଦନଶୀଳ । ଭଞ୍ଜଙ୍କ ସାରସ୍ୱତ କୃତିରେ ବନଶ୍ରୀ ଓ ବନବାସୀ ଜୀବନର ଚିତ୍ର ପ୍ରତିଫଳତି ହୋଇ ଏକ ମହତ୍ତର ଦିଗକୁ ଉନ୍ମୋଚିତ କରୁଅଛି ।

## ନୌବାଣିଜ୍ୟର ଚିତ୍ର :

ଉପେନ୍ଦ୍ର ତତ୍କାଳୀନ ଉତ୍କଳର ବୋଇତ ବାଣିଜ୍ୟର ଚିତ୍ର ଅଙ୍କନ କରିଛନ୍ତି । ସେ ସମୟରେ ଉତ୍କଳ ସହିତ ସିଂହଳ ଦ୍ୱୀପର ନୌବାଣିଜ୍ୟ ସମ୍ପର୍କ ଥିବାର ସୂଚନା ମିଳେ । କବି ଲେଖିଛନ୍ତି –

(କ) "ବହିତ୍ର ଲାଗିଲା ଆସି ସିଂହଳ ଦ୍ୱୀପରେ
ସାଧବ ଯୁବତୀମାନେ ଅତି ପ୍ରମୋଦରେ
ଗଲେ ବହିତ୍ର ବନ୍ଦାଇ
ଅର୍ଘ୍ୟସ୍ଥାଳୀମାନ କରେ ହୁଳହୁଳି ଦେଇ ।" (ଲା.ବ)

କବି ଏଥିରେ ରତ୍ନାକର ବୋଇତିଆଳ ପହଞ୍ଚିବା କ୍ଷଣି ତାର ଜାୟା, ଭଗିନୀ ମେଘମାଳା ପ୍ରଭୃତି ତାକୁ କିପରି ବନ୍ଦାପନା କରିଥିଲେ ତାହା ବର୍ଣ୍ଣନା କରିଛନ୍ତି–

"ରତ୍ନାକର ସାଧୁତ ଭଗିନୀ ମେଘମାଳା
ଦଇବେ ସେଦିନ ଭ୍ରାଥପୁରେ ଯାଇଥିଲା
ତାକୁ ଜାୟା ସଙ୍ଗେ ଦେଖି
ହୋଇଲା ବୋହିତୁଆଳ ଅତିଶୟ ସୁଖୀ ।" (ଲା.ବ.)

ବହିତ୍ର ବଣିଜ ଅତ୍ୟନ୍ତ ପ୍ରମାଦପୂର୍ଣ୍ଣ ଥିଲା । ତେଣୁ ନିରାପଦରେ ଏହି ଯାତ୍ରା ସମ୍ପନ୍ନ ହେବାକୁ ସାଧବ ଦୈବ ନିକଟରେ ପ୍ରାର୍ଥନା କରୁଥିଲେ ।

"ଅତି ଦରିଦ୍ର ମୁଁ ବହିତ୍ର ବଣିଜ କରିଛି ଉପାୟ ବଳରେ
ଭଲମନ୍ଦ ଅଛି କି କପାଳରେ
ଦଇବ ଯେ ତୁହି ସେ ତୋତେ ଗୋଚର
ଦୟାରେ ଲଗା କୂଳରେ ।" (ଲା.ବ.)

## ଭଞ୍ଜସାହିତ୍ୟରେ ଚାରିଧାମର ବର୍ଣ୍ଣନା :

ଭାରତର ପ୍ରସିଦ୍ଧ ଚାରିଧାମ ହେଉଛନ୍ତି ପୂର୍ବଧାମ : ପୁରୁଷୋତ୍ତମ ପୁରୀ, ପଶ୍ଚିମଧାମ ଦ୍ୱାରକା, ଉତ୍ତରଧାମ ବଦରିକାଶ୍ରମ ଏବଂ ଦକ୍ଷିଣଧାମ ରାମେଶ୍ୱର । ଏହି ଚତୁର୍ଦ୍ଧାମ ମଧ୍ୟରେ ପୁରୀ ହିଁ ଶ୍ରେଷ୍ଠ । ତେଣୁ କୁହାଯାଇଛି –

"ସର୍ବେଷାଂ ଚୈବକ୍ଷେତ୍ରାଣାଂ ରାଜାଶ୍ରୀପୁରୁଷୋତ୍ତମଃ
ସର୍ବେଷାଂ ଚୈବ ଦେବାନାଂ ରାଜାଶ୍ରୀପୁରୁଷୋତ୍ତମଃ ।"

'କୋଟିବ୍ରହ୍ମାଣ୍ଡସୁନ୍ଦରୀ' କାବ୍ୟରେ ଶ୍ରୀକ୍ଷେତ୍ରର ମାହାତ୍ମ୍ୟ ପ୍ରତିପାଦିତ –

"ଶୁଣ କୋବିଦେ ଭରତ ଖଣ୍ଡେ ପୁଣ୍ୟଧାମ
ଯେଣୁ ନାରାୟଣ ଦେହୀ ତେଣୁ ସେହି ନାମ ହେ ।
ଗୀର୍ବାଣ ମତେ ନିର୍ବାଣ ସାରୂପ୍ୟକୁ ଦେଇ
ସାକ୍ଷୀ ପକ୍ଷୀ କରଟ ପ୍ରତିମାରୂପେ ଥାଇ ହେ ।
ଯେ ବ୍ରହ୍ମହତ୍ୟା ପାତକ ନିପାତକ ମହୀ
କପାଳମୋଚନ ତ୍ରିଲୋଚନ ସାକ୍ଷୀ ଯହିଁ ଯେ ।
ଆସି କାଶୀଶ୍ୱର ବାସ କଲେ ଏହା ଜାଣି
ଅନ୍ୟକ୍ଷେତ୍ର ସମସ୍ତଙ୍କ ଏ ମସ୍ତକ ମଣି ହେ ।" (କୋ.ବ୍ର.ସୁ)

"ବୈଦେହୀଶ ବିଳାସ" କାବ୍ୟରେ ଉପେନ୍ଦ୍ର ପୁରୀର ବିଶ୍ୱପ୍ରସିଦ୍ଧ ରଥଯାତ୍ରା ସମୟରେ ବଳଗଣ୍ଡିଠାରେ ରଥ ସାମୟିକ ଭାବେ ଅଟକିବା ପ୍ରସଙ୍ଗକୁ ବର୍ଣ୍ଣନା କରିଛନ୍ତି । ଯେପରି–

"ବଳ ଗଣ୍ଡିଠାରେ ରହି ଯଥା ଜଗନ୍ନାଥ
ବିଜେ ପୁଣି ଜନକ ସନ୍ତୋଷେ ଚାଳିରଥ ।
ବିସ୍ତାରିତ ଜୟ ଶବ୍ଦ ହେଲା ଦଶ ଦିଶ
ବଡ଼ଦେଉଳ ସାକେତେ ହେଲେ ପରବେଶ ।" (ଷୋଡ଼ଶ ଛାନ୍ଦ)

କବିଙ୍କର ଦ୍ରୁଧ୍ୱନ୍ଦ୍ୱ ପୌରାଣିକ କାବ୍ୟ 'ସୁଭଦ୍ରା ପରିଣୟ'ରେ ଦ୍ୱାରିକା/ ଦ୍ୱାରାବତୀ ପୁରର ବର୍ଣ୍ଣନା ରହିଛି । ଯଥା :

"ସାଗର ମଧ୍ୟେ ବିଦିତ ଦ୍ୱାରାବତୀ ପୁର
ସାଦୃଶ୍ୟ ବହିଛି ପଉଲସ୍ତ୍ୟ ଶଇଳର ।" (୧ମ ଛାନ୍ଦ)

ଭାରତର ପ୍ରସିଦ୍ଧ ଉତ୍ତର ଧାମ ହେଉଛି ବଦରିକାଶ୍ରମ ବା ବଦ୍ରୀନାଥଙ୍କ ଧାମ । ଉପେନ୍ଦ୍ରଙ୍କ 'କୋଟିବ୍ରହ୍ମାଣ୍ଡସୁନ୍ଦରୀ' କାବ୍ୟରେ ଏହି ଧାମର ନାମୋଲ୍ଲେଖ ରହିଛି । ଯଥା :

"ସଚିବ ନାମ ଯେ ବୁଦ୍ଧି ସାଗର
ସେ ଦିନେ ଜଣାଇଲା ଯୋଡ଼ି କର ।
× × ×
ସାକ୍ଷାତେ କରନ୍ତାଇ ଦରଶନ
ଯିବା କି ବାରେ ବଦରିକା ବନ ।" (ଦ୍ୱିତୀୟ ଛାନ୍ଦ)

କବି 'ଲାବଣ୍ୟବତୀ' କାବ୍ୟରେ ରାମେଶ୍ୱର ଧାମର ବର୍ଣ୍ଣନା କରିଛନ୍ତି । ଏହି କାବ୍ୟର ବିଂଶତି, ଷଡ଼ବିଂଶ ଓ ସପ୍ତବିଂଶ ଛାନ୍ଦରେ ପବିତ୍ର ରାମେଶ୍ୱର ପୀଠର ବର୍ଣ୍ଣନା ରହିଛି ।

(କ) "ଶିବରାତ୍ରି ନାମରେ ଉତ୍ସବ ରାମେଶ୍ୱର ଦେବଠାରେ ହେବ
ଯେବେ କରୁଣା ଅରୁଣାଧରୀ ଠାରେ
ଥିବ ସେଠାକୁ ବିଜେ କରିବ ହେ ସୁନ୍ଦର ।"

(ଖ) "ପ୍ରବେଶ ହେଲେ ଦେଉଳ ପଶ୍ଚିମ ଦ୍ୱାରେ
ବେତ୍ରକ ନିଷେଧ କରିଦେଲେ ସତ୍ୱରେ ।"

(ଗ) "ବାହୁଡ଼ିଲା ବେଗେ ଶିବ ଦେଖି ରାମା ଜଣାଇ ହୃଦ କଷଣକୁ ।"

## ଜ୍ୟୋତିଷଜ୍ଞାନ :

ଉପେନ୍ଦ୍ର ଭଞ୍ଜଙ୍କ ଜ୍ୟୋତିଷ ଜ୍ଞାନ ପ୍ରଣିଧାନଯୋଗ୍ୟ । ତାଙ୍କ କାବ୍ୟରେ ଗ୍ରହ ନକ୍ଷତ୍ରର ଚଳନ, କେଉଁ ତିଥିରେ କେଉଁ ରାଶି ପ୍ରତି କ'ଣ ଘଟିବାର ରହିଛି, ତାହା କବି ଉଲ୍ଲେଖ କରିଛନ୍ତି । ନିମ୍ନରେ କେତୋଟି ଉଦାହରଣରୁ ଉପେନ୍ଦ୍ରଙ୍କର ଜ୍ୟୋତିଷ ଜ୍ଞାନ ସମ୍ପର୍କରେ ଅବଧାରଣା କରିହୁଏ ।

(କ) ବୁଝିଲେ ଲଗ୍ନ ମଗ୍ନ ହୋଇ ଶୁଝିଲେ
ମଙ୍ଗଳଦାନରେ ତହିଁ
ବୃହସ୍ପତି ରାଶି ଅଷ୍ଟମେ ବିଳାସୀ
ନୃପତି ନୋହିବେ କେହି
ବାମଦେବ ଉତ୍ତର
ବକ୍ତା ବଶିଷ୍ଟେ ହେବେ ଈଶ୍ୱର । (ବୈ.ବି. ସପ୍ତଦଶ ଛାନ୍ଦ)

(ଖ) ଏବେ ଅନୁଭବ ହେଲା
ଗ୍ରହରେ ମଙ୍ଗଳପ୍ରଦ ଯେମନ୍ତ ରହିଲା । (ପ୍ରେ.ସୁ.)

(ଗ) ଆହେ ନବଗ୍ରହେ ବନ୍ଧୁ ଦରଶନବେଳେ
ମୋର ରାଶି ଏକାଦଶେ ରହ ଏକ ମେଳେ ଯେ । (ଲା.ବ.)

(ଘ) "ଜ୍ୟେଷ୍ଠ ଶୁକଳ ଦ୍ୱାଦଶୀ ସୋମବାର ହୋଏ
ସଂକ୍ରାନ୍ତି କଳାକୁ ଭୋଗ ଦିବସ କୋଡ଼ିଏ ଯେ ।
ସ୍ୱାତୀ ତାରା ତୁଳଚନ୍ଦ୍ର ଶୁଭ ନାମେ ଯୋଗ
ସେଦିନ ବେଳର ଷଡ଼ଘଡ଼ି ହୋଏ ଭୋଗ ଯେ ।
ରବି ବୃଷେ ବୁଧ ଶୁକ୍ର ମିଥୁନରେ ସ୍ଥିତି
କର୍କଟଲଗ୍ନ ତହିଁ ସଙ୍ଗ ବୃହସ୍ପତି ଯେ ।
ଚନ୍ଦ୍ର କେନ୍ଦ୍ରବର୍ତ୍ତୀ ତୁଳେ ଶନିଶ୍ଚର ମୀନେ
ମଙ୍ଗଳ ମଙ୍ଗଳକାରୀ ତୃତୀୟରେ କନ୍ୟେ ଯେ ।
ସ୍ୱର୍ଭାନୁ ମକରେ କରେ ବିଳାସକୁ ତୋଷେ
ଏହି କାଳେ ବର ବିଭା ମଣ୍ଡପରେ ବସେ ଯେ ।" (ଲା.ବ.- ତ୍ରିଂଶ ଛାନ୍ଦ)

(ଙ) "ଚିତ୍ରକାର କର୍ମକର୍ତ୍ତା । ଚିତ୍ରାନକ୍ଷତ୍ର ବିଦିତା
କନ୍ୟକାଦି ରାମାମୋହି । କନ୍ୟ ଚନ୍ଦ୍ରଖ୍ୟାତ ହୋଇ ଯେ ।
ମିଥୁନରେ ସଦା ଚିତ୍ତ । ମିଥୁନ ଲଗ୍ନ ବିଦିତ
ସିଂହ କ୍ଷତ୍ରିୟରେ ଯହୁଁ । ସିଂହରେ ତୃତୀୟେ ରାହୁ ଯେ ।
ପଞ୍ଚତ୍ୱ କରେ ଯେ ଅରି । ପଞ୍ଚମେ ତୁଳେ ଶଉରି
ଗୁରୁ ଗୁଣ ଖ୍ୟାତ କରେ । ଗୁରୁ ସପ୍ତମେ ଧନୁରେ ଯେ ।
ବୁଧସାର ଅଷ୍ଟମରେ । ବୁଧ ସବିତା ମକରେ
ମଙ୍ଗଳପ୍ରଦଯେ ଭୃତ୍ୟେ । ମଙ୍ଗଳ ଶୁକ୍ର ଏକତ୍ୱେ ।
ରହିଛି ଦଶମେ ମୀନେ । ରହିଲା କହି ମଉନେ
ଗୁଣିବର ପୁରୋହିତ । ଗୁଣ କହିଲା ତ୍ୱରିତ ।"
(କୋ.ବ୍ର.ସୁ – ଦ୍ୱାତ୍ରିଂଶ ଛାନ୍ଦ)

## ଭଞ୍ଜ ସାହିତ୍ୟରେ ସମାଜଚିତ୍ର

ଉପେନ୍ଦ୍ର ଭଞ୍ଜଙ୍କ କାବ୍ୟକୃତିରେ ସମକାଳୀନ ସମାଜଚିତ୍ର ପ୍ରତିବିମ୍ବିତ ହୋଇଛି । ତାଙ୍କ ସାହିତ୍ୟରେ ସମାଜର ଯେଉଁ ଯେଉଁ ବିଧିବିଧାନ ବର୍ଣ୍ଣିତ ସେଥିରୁ

ତତ୍କାଳୀନ ଉନ୍ନତ ସମାଜିକ ପରମ୍ପରାର ସ୍ୱଷ୍ଟ ଚିତ୍ର ଆଙ୍କଳନ କରିହୁଏ । ସନ୍ତାନ ଜନ୍ମଲାଭ କଲାପରେ ତାହାର ନାଭିଛେଦନ, ସୂତିକାଗୃହ ପ୍ରସ୍ତୁତି, ଷଠିଘର, ପାଞ୍ଚ ଉଠିଆରି, ଏକୋଇଶିଆ ପାଳନ, ନାମକରଣ ଇତ୍ୟାଦି ଓଡ଼ିଶାର ଗାଁ ଗହଳିଠାରୁ ଆରମ୍ଭ କରି ରାଜପରିବାର ପର୍ଯ୍ୟନ୍ତ ପ୍ରତ୍ୟେକଙ୍କ ଘରେ ପ୍ରଚଳିତ । ଶ୍ରୀରାମଙ୍କ ଜନ୍ମପ୍ରସଙ୍ଗରେ କବି ଉପେନ୍ଦ୍ର ଏହି ସାମାଜିକ ବିଧିବିଧାନ ଗୁଡ଼ିକୁ ଉଲ୍ଲେଖ କରିଛନ୍ତି । ତାଙ୍କ ଭାଷାରେ –

"ବିଚ୍ଛେଦନ କଲେ ନାଭି ଉଦୟହୃଦେ
ବିଗ୍ରହ ସୁବାସ ଯେଣୁ କସ୍ତୁରୀ ବନ୍ଦେ ।
ବ୍ୟକତ ସୂତିକା ଗୃହ କାରୁଣ୍ୟପୟ
ବିସ୍ତୀର୍ଣ୍ଣ ଅନନ୍ତ ଶୋଭା ଶଯ୍ୟା ନିଶ୍ଚୟ ।
ବୀଚି ଚନ୍ଦ୍ରାତପ କୁଞ୍ଜାବାସ ରଚଇ
ବିବେକୀ ଶୁଆଇ ସଦା ନିଦ୍ରାଚିତୋଇ ।
ବ୍ରୀହିଆଦି ପଞ୍ଚବୀଜ ପଞ୍ଚୁଆତୀ ଯେ
ବ୍ୟାନ ସହ ପଞ୍ଚବାୟୁ ତୋଷକ ସେଯେ ।
ବନଜିନୀ ଲକ୍ଷ୍ୟ ନାରୀ ଷଷ୍ଠୀଘରକୁ
ବରାଟକେ ମଣ୍ଡିକଲେ ମନୋହରକୁ ।
ବିଯୋଗ ନିଦ୍ରାରେ କାମମଧୁରେ ବାଦ
ବିରଚି ଏ ପାଞ୍ଚ ଉଠିଆରି ସମ୍ବାଦ ।
ବିଂଶ ଏକ ଦିନେ ଦୋଳି ଶୟନ କରି
ବଟପତ୍ର ପୁଟେ ବାଳ ମୁକୁନ୍ଦ ପରି । ×××
ବ୍ରହ୍ମଋଷି ନାମ ବିହି ଶ୍ରୀରାମ ରାମ
ବୋଲେ ଚନ୍ଦ୍ର ଭଦ୍ରହେଉ ଏ ପଛେ ରମ୍ୟ ।
ବଂଶେ ରଘୁ ରାଘବ ଏ ସେ ନାଥ ଭଣି
ବୋଲାଇବେ ରାବଣାରି ରାଜେନ୍ଦ୍ର ପୁଣି ।×××
ବିହିଲେ ଭରତ ନାମ କୈକେୟୀସୁତେ
ବୋଇଲେ ସଦା ବଞ୍ଚିବ ଏ ଶୁଭରତେ ।" (ବୈ.ବି. ପଞ୍ଚମଛାନ୍ଦ)

କବିସମ୍ରାଟ ଉପେନ୍ଦ୍ର ଭଞ୍ଜ କନ୍ୟାମାନଙ୍କର ରଜସ୍ୱଳା ଦିବସ ପାଳନର ଚିତ୍ର ବର୍ଣ୍ଣନା କରିଛନ୍ତି । ଝିଅଟିଏ ଯୌବନ ପ୍ରାପ୍ତି ହେଲାପରେ ଗୃହରେ କ'ଣ

କ'ଣ ବିଧିବିଧାନ ପାଳନ କରାଯାଏ, ତାହାର ଏକ ଚିତ୍ର କବି ଅଙ୍କନ କରିଛନ୍ତି । କବିଙ୍କ ଭାଷାରେ –

"ପ୍ରେମଶୀଳା ମାତା ପାଶେ ଜଣାଇ
ସ୍ମର ମନ୍ଦିର ସମ୍ଭାର ଅଣାଇ ।
ମାଷ ତଣ୍ଡୁଳରେ ଗୃହ ଗଢ଼ାଇ
ବାସ ପ୍ରକାର ପ୍ରକାରେ ବେଢ଼ାଇ
ଚାରିପାଶେ ଚାରିଗୋଟି ମାର୍ଗଣ
ଅବିଳମ୍ବେ ପୋତିଲେ ସଖିଗଣ ।
ନାରିକେଳଚେଳ ଦୁର୍ବାରୋପକୁ
ଭରି ସମୀପେ ଥୋଇଲେ ସୂର୍ପକୁ ।
ମଧ୍ୟେ ବସାଇଲେ ନବ ବାଳୀକି
ଶୁଭ ଅର୍ଥେ ଦେଇ ହୁଳହୁଳିକି କି ।×××
ସାତ ଦୀପହିଁ ହୋଇଛି ଦୀପିତ
ସାତ କୁମ୍ଭ କୁମ୍ଭ କୁଚ ସ୍ଥାପିତ ।
ଶ୍ରୁବ ଶ୍ରୁଚ ରୋମାବଳି ନାଭିତା
ଜଘନ ତ ହେମବେଦୀ ଶୋଭିତା ।
ଚାରୁସୁଉରୁ କଦଳୀ କାଣ୍ଡରେ
ଶୋଭା ବରାଙ୍ଗି ଆହୁତି କୁଣ୍ଡରେ ।
ଦୀପ୍ତ ଶ୍ରବଣ ତାଟଙ୍କ ଆଳତି
ବକ୍ତ୍ର ବିକାରରେ କରି ଚଳନ୍ତି ।
ଯହିଁ ବରଣ ବ୍ରାହ୍ମଣ ସଞ୍ଚାରୀ
ମନ୍ତ୍ର ମଙ୍ଗଳ ଗୀତକୁ ଉଚ୍ଚାରି ।" (ଲା.ବ. ୩୨ୟ ଛାନ୍ଦ)

## ଗନ୍ଧଷଣ :

କବି ଉପେନ୍ଦ୍ର ସାମାଜିକ ବିଧିବିଧାନ ମଧ୍ୟରେ ଗନ୍ଧଷଣକୁ ଗୁରୁତ୍ୱ ଦେଇଛନ୍ତି । ବିବାହ ପୂର୍ବରୁ ଗନ୍ଧଷଣ କରିବା ଏକ ପବିତ୍ର କ୍ରିୟାନୁଷ୍ଠାନ । ତେଣୁ ଉପେନ୍ଦ୍ରଙ୍କ କାବ୍ୟରେ ଏହି କ୍ରିୟାନୁଷ୍ଠାନର ଚିତ୍ର ଅଙ୍କିତ । କବିଙ୍କ ଭାଷାରେ –

"ବେନି ନରେଶ୍ୱରଙ୍କର ମଣ୍ଡିତ ନବରେ
ବିହାଇଲେ ଗନ୍ଧଷଣ ମହା ଉତ୍ସବରେ ଯେ ।

ବ୍ରାହ୍ମଣୀ ସାତଶ ଅଳଙ୍କାର କରି ତହିଁ
ବସ୍ତ୍ରପାଟେ ଲଲାଟେ ସିନ୍ଦୂର ଚିତା ଦେଇ ଯେ ।
ବିଯୋଗିଲେ ଚନ୍ଦ୍ର ଦୀପ୍ୟମାନ କୁମ୍ଭରାଶି
ବନ୍ଧୁରତାରେ ଧନିଷ୍ଠା ହୋଇ ପରଶଂସି ଯେ ।
ବିଷମେଷୁ ସ୍ୱର୍ପଯୁକ୍ତ ନାରିକେଳତିରେ ।
ବିରହିଣୀ ପ୍ରାୟ ଦିବା କୀର୍ତ୍ତିନାରୀ ଧରେ ଯେ ।"

(ବୈ.ବି.-୧୪ଶ ଛାନ୍ଦ)

"ନାପିତୀ ନୂତନ ସୂର୍ପ ରୋପି ନାରିକେଳ
ନବଚେଳ ପ୍ରଦୀପ ବଦରୀ ଦୁର୍ବାଦଳ
ଘେନି ବାହାରିଲେ ଉଚ୍ଚେ ହୁଳହୁଳି ଦେଇ
ଗୀତ ଇଚ୍ଛାସୁଖେ ବୀଣା କି ଅବା ବାଜଇ ଯେ ।
ବଜାଇ ବିବିଧ ବାଦ୍ୟ ଦେବୀ ଗନ୍ଧଷିଲେ
ସପତ ଗୃହ ବୁଲିଣ ସଳିଳ ତୋଳିଲେ ଯେ ।
ବର ନବରକୁ ଯାଇଁ କଲେ ଗନ୍ଧଷଣ
ସେହି ସଙ୍ଗେ ବରଦାସୀ ବଜାଇ ଘୋଷଣ ଯେ ।

(ଲା.ବ -୩୦ ଛାନ୍ଦ)

(ଗ) "ବର କନ୍ୟା ଗନ୍ଧଷଣ କଲେ ପରସ୍ପର
ଗନ୍ଧବତୀ ନାମ ସାର୍ଥ କରି ଅବନୀର ଯେ ।"

(କୋ.ବ୍ର.ସୁ - ୩୩ ଛାନ୍ଦ)

**କୋଇଲିବୁଢ଼ :**

ବିବାହ କାର୍ଯ୍ୟ ସମ୍ପାଦନ ପୂର୍ବରୁ 'କୋଇଲିବୁଢ଼' ପ୍ରଥାଟିଏ ଅଛି । ଏହାକୁ କୋକିଳସ୍ନାନ କୁହାଯାଏ । ଭଞ୍ଜଙ୍କ କାବ୍ୟରେ ଏହାର ଉଲ୍ଲେଖ ରହିଛି । କବିଙ୍କ ଭାଷାରେ –

(କ) "ଏମନ୍ତେ ରଜନୀ ଶେଷ ସମୟରେ ତହିଁ
କୋକିଳସ୍ନାନ ସେ ବରକନ୍ୟାକୁ କରାଇ ଯେ ।
ଦଧିଗୁଡ଼ ଭକ୍ତଭୁକ୍ତ ଅନୁରକ୍ତ ବଶେ
କନ୍ୟା ଲବଣଚଉଁରୀ ପୂଜିଲା ହରଷେ ଯେ ।" (ଲା.ବ)

(ଖ) "କୋକିଳ ପ୍ରକୃତନାମ ସ୍ନାନ ବିରଚିତ
ଦଧିଗୁଡ଼ ଅନ୍ନ ଅଶନରେ ତୋଷ ଚିତ୍ତ ଯେ ।
ଲବଣଚାମରୀ ପୂଜେ ଲବଣୀ କୋମଳା
ହେଜେ ବିହି ବିହିଲା ଯେ କୃପା ଏତେ ଥିଲା ଯେ ।"

(କୋ.ବ୍ର.ସୁ - ୩୩)

**ବାଟବରଣ :**

"ମୀନକେତୁ ନାମ କୁମାରକୁ ପଠିଆଇ
ଅଣାଇଲେ ସରଣୀବରଣ କରି ତହିଁ ଯେ ।"

(ଲା.ବ. - ୩୦ଶ ଛାନ୍ଦ)

**ଲବଣଚଉଁରୀ :**

ସେହିପରି ବିବାହ ସମୟରେ ଲବଣଚଉଁରୀ ପ୍ରଥା ଓଡ଼ିଶାରେ ବହୁ ଦିନରୁ ପ୍ରଚଳିତ ହୋଇ ଆସୁଅଛି । କବି ଲେଖିଛନ୍ତି –

"ଏ ସମୟେ ପରିବାରୀ ବାରିଜଗନ୍ଧାକୁ
ଲବଣଚଉଁରୀ ଅର୍ଥେ ଆଣିଲେ ସେଠାକୁ ଯେ ।
ଅନ୍ତରପାଟ ଅନ୍ତରେ ତରଳାକ୍ଷୀ ରହି
ତରଳ ନୟନ ଅନ୍ତେ ବଲ୍ଲଭକୁ ଚାହିଁ ଯେ ।
ଲବଣ ତଣ୍ଡୁଳ ସହ ପୁରୁଷକୁ ମାରି
ବିଦ୍ୟୁତପ୍ରାୟ ବାହୁଡ଼ିଲା ଚଞ୍ଚଳ ଚତୁରୀ ଯେ ।" (ଲା.ବ.-୩୦ଶ ଛାନ୍ଦ)

ଉପେନ୍ଦ୍ର ଭଞ୍ଜ ଓଡ଼ିଶାର ସାମାଜିକ ଜୀବନର ବିଶ୍ୱସ୍ତ ରୂପକାର । ସାମାଜିକ ଅନୁଷ୍ଠାନମାନଙ୍କ ମଧ୍ୟରେ ବିବାହ ଏକ ପ୍ରଧାନ କ୍ରିୟାନୁଷ୍ଠାନ । ଉପେନ୍ଦ୍ରଙ୍କ ଲେଖନୀରେ ଏହି ଦୁର୍ଲଭ ବିବାହକାଳୀନ ରୀତିନୀତି ନିମ୍ନଭାବରେ ଚିତ୍ରିତ ହୋଇଛି ।

"ବେଦୋକ୍ତ ମନ୍ତ୍ର ବିଧିରେ ଆରମ୍ଭିଣ କର୍ମ
କ୍ରମରେ ଉଦିତ ହେଲେ କାନ୍ତା କାନ୍ତ ନାମ ଯେ ।
ବଶିଷ୍ଠ ଅରୁନ୍ଧତୀ ଶ୍ରୀରାମ ସୀତାପରି
ଶିବପାର୍ବତୀଏ ଆଦି ଲକ୍ଷ୍ୟମାନ କରି ଯେ ।
ଦ୍ୱିଜେ ବିଞ୍ଚେ ନାରୀକେଳ ବାଦୀ ଯେଣୁ ସ୍ତନେ
ବିଚାରିଣ ନିବେଶିଲେ ତାହାକୁ ଦହନେ ଯେ ।

ମଧୁଶଯ୍ୟାକାଳରେ ଯେ ତେଜ୍ୟା କରିବାକୁ
ଲାଜା ହୋମ ନ କଲେ ଟି ଦହିଲେ ଲଜ୍ଜାକୁ ଯେ ।
କାନ୍ତା କାନ୍ତ କରପଦ୍ମ କୋକନଦଶିରୀ
ଚୋରୀ କରିଥିଲେ ବୋଲି କୁଶବନ୍ଧ କରି ଯେ ।
ପରାଭବ ଅନ୍ତେ ଦ୍ୱିଜସୁତା ଫେଡ଼ି ଦେଲା
ମନୋଭବ ପରାଭବ ଯେଣୁ ହେଉଥିଲା ଯେ ।
ଛୁଆଁଇଲେ କୁମାରକୁ କୁମାରୀ ଚରଣ
ମନ୍ମଥ ଭୟରୁ ନିଶ୍ଚେ ପଶିଲା ଶରଣ ଯେ ।
କମ୍ବୁରେ ଅମ୍ବୁ ତୋଳିଣ ଦେଲା କନ୍ୟା ତାତ
କଣ୍ଠକୁ ସମାନ ନୋହି କି ଅବା ରୋଦିତ ଯେ ।
ବିଭାବିଧି ଶେଷ ଯହୁଁ ହେଲା ଏ ବିଧିରେ
ବରକନ୍ୟା ଘେନିଗଲେ ଅବରୋଧ ପୁରେ ଯେ ।”
(ଲା.ବ.- ୩୦ଶ ଛାନ୍ଦ)

**ବିବାହକାଳୀନ ବିଧିବିଧାନ ଓ ଲାଜାହୋମ ବିଧାନ –**

ଉପେନ୍ଦ୍ରଙ୍କ ଲେଖନୀରେ ବିବାହକାଳୀନ ବିଧିବିଧାନ ନିମ୍ନ ଭାବରେ ଚିତ୍ରିତ ହୋଇଛି ।

“ନୀରଜବାସୀ ଉରଜେ ଦ୍ରୋହି ହେବା ଫଳ
ସୂତ୍ରରେ ବନ୍ଧାଇ ଗତାଗତ ନାରିକେଳ ଯେ ।
ପୂର୍ଣ୍ଣକୁମ୍ଭ ସ୍ଥକିତ ପଲ୍ଲବେ ଶିରେ ଦେଇ
ପଦ ନଖ ଓଳଗ ବ୍ୟାଜରେ ଆଗେ ରହି ଯେ ।
କନ୍ୟାତାତ ଅମ୍ବୁଦାନେ କମ୍ବୁ ହୃଦୁଜଳ
ଗଳେ କି ମୁଖ ପୋତିବା ବ୍ୟାଜେ ଶ୍ରମ ଝାଳ ଯେ ।
ଲାଜା ଦହନକୁ ଚାହିଁ ଲଜ୍ଜାଲଭି ତ୍ରାସ
ବିଚାରିଲା ପଳାଇବି କିମ୍ବାଯିବି ନାଶ ଯେ ।
ଦୃଢ଼େ ଗଣ୍ଠି ଦିଆଇ ବସନେ ଏ ନିମନ୍ତେ
କନ୍ଧେ ପକାଇ ଗମନ କଲେ ସେ ଶୁଦ୍ଧାନ୍ତେ ଯେ ।
କ୍ରୂତ ଲୀଳାରେ ରସିଲେ ସେ ଯୁବତୀ ଯୁବା
ଯୁତଲୀଳା କଉତୁକ ଆଦ୍ୟାରମ୍ଭ କିବା ଯେ ।

ସେ ଯୋଗୀନ୍ଦ୍ର ମୋହିନୀ ସମ୍ପାଦି ବଢ଼ାଇକି
କରମୁଠା ଭିତରେ ରଖିଲା କପର୍ଦ୍ଦୀକି ଯେ ।" (କୋ.ବ୍ର.ସୁ- ୩୩ ଛାନ୍ଦ)

**ମୁକୁଟପିନ୍ଧା :**

ବିବାହ ସମୟରେ ବରକନ୍ୟାଙ୍କୁ ମୁକୁଟ ପିନ୍ଧାଇ ଦିଆଯାଏ । ସେହି ସମୟରେ ବରକନ୍ୟାଙ୍କୁ ଶିବ-ପାର୍ବତୀ ବୋଲି ବିଚାର କରାଯାଇଥାଏ । କବି ସମ୍ରାଟ ଏହି ଲୋକ ବିଶ୍ୱାସକୁ ନିମ୍ନ ଭାବରେ ବର୍ଣ୍ଣନା କରିଛନ୍ତି –

"ବିପ୍ରେ ଲକ୍ଷିତ ହୋଇଲେ ତାଙ୍କ କରସଙ୍ଗେ
ବିଷ୍ଟର ତାମ୍ର ସୁପାତ୍ରୀ ସ୍ରୁବ ସ୍ରୁଚଯୋଗେ ଯେ ।
ବରକନ୍ୟାଙ୍କୁ ବୋଲନ୍ତି ଈଶ୍ୱର ପାର୍ବତୀ
ବାନ୍ଧିଲେ ସେ ମୁକୁଟ କରି କି ଏହି ମତି ଯେ ।"

**ଲାଜାହୋମ :**

"ବୀତିହୋତ୍ରେ ଲାଜାହୋମ କରୁ ଲଜ୍ଜାବଳୀ
ବଳିଲେ ବିଚାରେ କାହିଁ ହୋଇବା ସମ୍ଭାଳି ଯେ ।"
(ବୈ.ବି- ୧୪ଶ ଛାନ୍ଦ)

**ହାତଗଣ୍ଠିର ବର୍ଣ୍ଣନା :**

"ବନ୍ଧାଇଲେ ଦୁହିଁଙ୍କର କର ସେ କୋବିଦେ
ବାମାପୁଂସ ଏକ କରି ସେ ଦମ୍ପତି ପଦେ ଯେ ।"
(ବୈ.ବି. - ୧୪ଶ ଛାନ୍ଦ)

**ଗଣ୍ଠିଆଳର ବର୍ଣ୍ଣନା :**

"ବାହାରିଲେ ଗଣ୍ଠିଆଳ ଅଳଙ୍କୃତ ହୋଇ
ବିଶ୍ୱକେତୁ ରଣାରମ୍ଭେ କିସେ ଶାଢ଼ୀପାଇ ଯେ ।"

**ବେଦୀରେ ବନ୍ଦାଣ :**

"ବଢ଼ିଲା ଏ ବିଧାନ ଶାଶୁଏ ବନ୍ଦାଇଲେ
ବିତରଣ ଅମୂଲ୍ୟ ରତନମାନ କଲେ ଯେ ।"

**ଚଉଠି ବର୍ଣ୍ଣନା :**

"ବରବର୍ଣ୍ଣନୀ ବରଙ୍କ ଚଉଠି ଉତ୍ସବ
ବରବର୍ଣ୍ଣିନୀ କ୍ରୀଡ଼ାକୁ ରଚିଲେ ବାନ୍ଧବ ଯେ ।"

ପ୍ରସଙ୍ଗ କ୍ରମେ କବି ଉପେନ୍ଦ୍ର ସପ୍ତମଙ୍ଗଳା, ଅଷ୍ଟମଙ୍ଗଳା ପ୍ରଭୃତି ବିବିଧ ବିଧାନକୁ ଉଲ୍ଲେଖ କରିଛନ୍ତି ।

## ଯୌତୁକ ପ୍ରଦାନର ଚିତ୍ର :

ସେ ସମୟରେ ସମାଜରେ ପ୍ରଚଳିତ ଥିବା ଯୌତୁକପ୍ରଥା ବିଷୟଟି କବିଙ୍କ ଲେଖନୀରେ ମଧ୍ୟ ନିମ୍ନଭାବରେ ପ୍ରତିପାଦିତ । ସାଧାରଣତଃ ଏହା ରାଜପରିବାର, ସାମନ୍ତ ପରିବାରର ଯୌତୁକ ପ୍ରଥା । କବିଙ୍କ ଭାଷାରେ –

"ଯଉତୁକ ସମ୍ଭାର ଘେନାଇ ସଚିବକୁ
ପ୍ରେଷିତ କଲେ ତ୍ୱରିତ କୁମାର ପାଶକୁ ଯେ ।
ତାହିଁ ସେ ସମ୍ଭାର ଯୁବରାଜ ହୋଇ ତୋଷ
ଦେଇଛି ଧନଦକୋଷ ପରି ରତ୍ନକୋଷ ଯେ ।
କରୀହୟ ହରିଚୟ ଯାନ ସମାନରେ
ଲକ୍ଷ ସଂଖ୍ୟକ ଦେଇଛି ସହଜ ଚିତ୍ତରେ ଯେ ।
କାମଧେନୁ ପରି ଧେନୁ ସବତ୍ସା କରିଣ
କୋଟି ପରିମିତ ଘେନିଛନ୍ତି ବ୍ରଜଗଣ ଯେ ।
କଥା କୁହା ପିକ ଶୁକ ସାରିକା ଅନେକ
ଅଶେଷ ମଞ୍ଜୁଷ ଚର୍ମ ଆଢ଼େଣୀ ସାୟକ ଯେ ।
ବାସନ ପେଡ଼ାମାନଙ୍କ ସଂଖ୍ୟା ହେବ ନାହିଁ
ହାନ୍ଦୋଳା ସ୍ୟନ୍ଦନ ଯହିଁ ଗଣନାହିଁ ନାହିଁ ଯେ ।
ଏ ବିଧିରେ ପଦାର୍ଥ ସମର୍ପି ଜଣାଇଲା
ସଭୂଷଣ କରି ଦାସୀ ସହସ୍ରେକ ଦେଲା ଯେ ।"

(ଲା.ବ. - ୩୧୫ଶ ଛାନ୍ଦ)

ସେହିପରି 'ବୈଦେହୀଶ ବିଳାସ' କାବ୍ୟରେ ଯୌତୁକ ପ୍ରଦାନର ଚିତ୍ର ରହିଛି । ବୈଦେହୀଙ୍କ ବିବାହପରେ ରାଜା ଜନକ ଦେଇଥିବା ଯୌତୁକ ସମ୍ଭାର ବିଷୟକୁ ନିମ୍ନମତେ କବି ବର୍ଣ୍ଣନା କରିଛନ୍ତି –

"ବିଭରଣ କରି ଆଣି ବୁହାଇ ଜନକ
ବଚନୀୟ ନୋହେ ଯେତେ ଦେଲେ ଯଉତୁକ ଯେ
ବାତାୟୁ ଲୋମଜ କଉଶେୟ କରି ବସ୍ତ୍ର
ବ୍ରହ୍ମାସ୍ତ୍ର ସମାନ କରି ସମର୍ପିଲେ ଅସ୍ତ୍ର ଯେ ।
ବୃଷାହୟ ପରି ହୟଚୟ କରୀ ତହିଁ
ବାସବ ଗଜତନୟ ନୟ ଉପୁଜଇ ଯେ ।

ବାରାଂନିଧି ଶୂନ୍ୟ କଲା-ପରି ରତ୍ନ ଦିଏ
ବେଳବୁଝା ପାରାବତ ଜ୍ୟୋତିର୍ବିଦ ପ୍ରାୟେ ଯେ ।
ବିହଙ୍ଗେ ଶୁକ ସାରିକା ଶ୍ଳୋକ ପଢ଼ା ହୋଇ
ବିଦ୍ୟାଧରୀ ବିଜିତା ଦାସୀ ତ ଥିଲେ ଦେଇ ଯେ ।"

(୧୪ଶ ଛାନ୍ଦ)

(୧) ନିମନ୍ତ୍ରଣ ରୀତି – ସଗୋତ୍ର ତଥା ବନ୍ଧୁ ବାନ୍ଧବଙ୍କୁ ବିବାହ, ବ୍ରତ ଇତ୍ୟାଦି ଶୁଭକାର୍ଯ୍ୟରେ ପାନ, ଗୁଆ, ବସ୍ତ୍ର ପ୍ରଦାନ କରାଯାଏ । ଯଥା –

"ସଂଗ୍ରହଣ କରି ବହୁ ବାସ ପାନ ଗୁଆ
ସଗୋତ୍ର ଲୋକଙ୍କୁ ନିମନ୍ତ୍ରଣ ହେଲା ଦିଆ ଯେ ।"

ସୁଭଦ୍ରା ପରିଣୟ (୧୬ଶ ଛାନ୍ଦ)

(୨) ଶବର ହାଟର ବର୍ଣ୍ଣନା – 'ସୁଭଦ୍ରା ପରିଣୟ' କାବ୍ୟରେ ଶବରହାଟର ମଞ୍ଜୁଳ ବର୍ଣ୍ଣନା ରହିଛି । ଯଥା–

"ସମସ୍ତ ମନତୋଷ କଲା ଥିଲା ଶବର ତହିଁ
ସ୍ୱଦିଗ ପୋଷଣ ବିଚାରି ଦିବ୍ୟହାଟ ବସାଇ ।
ସନ୍ନ୍ୟାସୀଏ ନେଲେ ଶାର୍ଦ୍ଦୁଳମୃଗ ଉତ୍ତମ କୃତ୍ତି
ସାର କୃଷ୍ଣସାର ଚଉଁରୀ କିଣି ନାରୀ ନୃପତି ।
ସୁକର୍ମୀ ରାଉତେ ଘେନିଲେ ଗଣ୍ଡାପାତ୍ରୀ ଆଡ଼ିଣୀ
ସାମଜନିଦନ୍ତ ନିକର ନେଲେ ବର୍ଦ୍ଧକୀ କିଣି ।
ସାରଙ୍ଗ ନାଭିକି ବଣିକେ ଲୋଭୀ ହୋଇ କିଣିଲେ
ସଞ୍ଚୟ ତନ୍ତୁବାୟଚୟ କୋଷାନିକର କଲେ ।
ସଂଗ୍ରହ କଲେ ପୁତ୍ର ସ୍ନେହୀ ତହିଁ ବ୍ୟାଘ୍ର କରଜ
ସଲମ୍ପଟ ହୋଇ କିଣିଲେ ପକ୍ଷପତି ସମାଜ ।
ସୁଉତ୍ତମ ଜନେ କିଣିଲେ ସୁଖେ ଶିଖିବରହ
ସ୍ନେହୀ ହୋଇ ନେଲେ ନୃପତି ଶ୍ୱେତଚାମର ବ୍ୟୂହ ।
ଶସ୍ତା ଅତିଶୟ ହୋଇଲା ଭାବି ହରଷମନ
ସୁଖେ ତାଙ୍କ ସଙ୍ଗେ ସଞ୍ଚିଲେ ବୈଦ୍ୟେ ପୁସ୍ତକଧନ ।"

(ସୁଭଦ୍ରା ପରିଣୟ – ୫ମ ଛାନ୍ଦ)

ସେହିପରି କବି ଲେଖିଛନ୍ତି–

"ଯେତେଗୋଟି ସୁବର୍ଣ୍ଣ ଯାହାକୁ ମିଳେ ତହିଁ
ତେତେଗୋଟି କଳସ ସେ ମନ୍ଦିରେ ବସାଇ ସେ ।"

(ଲା.ବ. - ୨ୟ ଛାନ୍ଦ)

ଓଡ଼ିଆ ଘରର ଆଉଗୋଟିଏ ପାରିବାରିକ ଚିତ୍ର–

"ଦ୍ୱିଜକୁ କହିଦେଲା ମେଘମାଳା
ନମସ୍କାର କରୁଅଛନ୍ତି ବାଳା
ମନୋରଥ ସିଦ୍ଧିରସ୍ତୁ ଏ ବାଣୀ
ଯୋଗୀ କଲ୍ୟାଣ କଲେ ଯୋଡ଼ିପାଣି ।"

(ଲା.ବ. - ୧୮ଶ ଛାନ୍ଦ)

ସେ ସମୟରେ ରାଜପରିବାରରେ ହାତ ତିଆରି କାଗଜ ବ୍ୟବହୃତ ହେଉଥିଲା । ଏହାର ବିରଳ ବ୍ୟବହାର ଥିଲା ତ ନିଶ୍ଚୟ । ତେବେ ଉପେନ୍ଦ୍ର କାଗଜକୁ କାଗତ ବୋଲି ଉଲ୍ଲେଖ କରିଛନ୍ତି–

"ଆଣି କାଗତକୁ ନବବାଳୀ
ଅନୁରାଗୁଁ ନ ଲେଖିଲା କାଳୀ
କୁଙ୍କୁମେ ଲିଖିତ ବର୍ଣ୍ଣ ନିଜବର୍ଣ୍ଣ
ଭାଳି ଆଳୀଙ୍କ ନାମରେ ଛଳି ସେ, ସୁନ୍ଦରୀ ।"

(ଲା.ବ. - ୨୦ଶ ଛାନ୍ଦ)



# ଚତୁର୍ଥ ପରିଚ୍ଛେଦ

# ମଧ୍ୟଯୁଗୀୟ ଓଡ଼ିଆ କାବ୍ୟଯୁଗ ଓ କବିସମ୍ରାଟ ଉପେନ୍ଦ୍ର ଭଞ୍ଜ

"ଅପାରେ କାବ୍ୟସଂସାରେ କବିରେବଃ ପ୍ରଜାପ୍ରତିଃ
ଯଥାସ୍ମୈ ରୋଚତେ ବିଶ୍ୱଂ ତଥେଦଂ ପରିବର୍ତ୍ତତେ ।

(ଅଗ୍ନି ପୁରାଣ)

ଶୃଙ୍ଗାରୀ ଚେତ୍ କବିଃ କାବ୍ୟଜାତଂ ରସମୟଂ ଜଗତ୍
ସ ଏବ ବୀତରାଗଶ୍ଚେତ୍ ନୀରସଂ ସର୍ବମେବ ତତ୍" ।

(ଭୋଜରାଜ)

ଅର୍ଥାତ୍ କବି ହେଉଛନ୍ତି କାବ୍ୟରୂପୀ ସଂସାରରେ ସୃଷ୍ଟିକର୍ତ୍ତା ବା ବ୍ରହ୍ମା । ତାହାଙ୍କ ଭାବନା ଅନୁସାରେ ବିଶ୍ୱର ନିୟମ ପରିବର୍ତ୍ତିତ ହୋଇଥାଏ । ସେ ଏହି ସଂସାରକୁ ନିଜର ହୃଦୟ ନିହିତ ରସଦ୍ୱାରା ଏପରି ସିଞ୍ଚିତ କରିଦେଇଥାନ୍ତି ଯେ ସଂସାର ସେହି ପରି ଭାବରେ ରସ ରୂପରେ ପରିଣତ ହୋଇଥାଏ । ଯଦି କବିଙ୍କ ହୃଦୟ ଶୃଙ୍ଗାର ଭାବରେ ପୂର୍ଣ୍ଣ ହୋଇଥାଏ ତାହା ହେଲେ ସଂସାର ମଧୁଧାରାରେ ଉଛୁଳି ଉଠିଥାଏ । ପକ୍ଷାନ୍ତରେ କବି ଯଦି ବୀତରାଗ ହୋଇଥାନ୍ତି, ତେବେ ସଂସାର ନୀରସ ମନେ ହୋଇଥାଏ । ମଧ୍ୟ ଯୁଗୀୟ ଓଡ଼ିଆ କବିଗଣ ଏହି ଚେତନାରେ ଅନୁବ୍ରତୀ ଅଟନ୍ତି ।

କାବ୍ୟ ହେଉଛି କବିଙ୍କର ମାନସ କନ୍ୟା । କାବ୍ୟର ଲକ୍ଷଣ ସମ୍ପର୍କରେ ବକ୍ରୋକ୍ତି ସଂପ୍ରଦାୟର ପ୍ରତିଷ୍ଠାତା କୁନ୍ତକ ପ୍ରତିପାଦନ କରିଛନ୍ତି –

"ଶବ୍ଦାର୍ଥୌ ସହିତୌ ବକ୍ରକବି ବ୍ୟାପାରଶାଳିନି
ବନ୍ଧେ ବ୍ୟବସ୍ଥିତୌ କାବ୍ୟଂ ତଦ୍‌ବିଦାହ୍ଲାଦ କାରିଣି ।"

ଅର୍ଥାତ୍ ସହୃଦୟମାନଙ୍କୁ ଆହ୍ଲାଦିତ କରୁଥିବା ସୁନ୍ଦର କବି ବ୍ୟାପାରରେ ଯୁକ୍ତ ରଚନାରେ ସମୁଚିତ ରୀତିରେ ଅବସ୍ଥିତ ସାହିତ୍ୟଯୁକ୍ତ ଶବ୍ଦାର୍ଥର ନାମ ହେଉଛି

କାବ୍ୟ । କାବ୍ୟରେ ତ ଶବ୍ଦ ଓ ଅର୍ଥର ସମ୍ପର୍କ ପାର୍ବତୀ ପରମେଶ୍ୱରଙ୍କ ପରି ନିତ୍ୟ ସମ୍ବନ୍ଧାନ୍ୱିତ । ତେଣୁ ମହାକବି କାଳିଦାସ ଲେଖିଛନ୍ତି –

"ବାଗର୍ଥା ବିବ ସଂପୃକ୍ତୌ ବାଗର୍ଥ ପ୍ରତିପତୟେ
ଜଗତଃପିତରୌ ବନ୍ଦେ ପାର୍ବତୀ ପରମେଶ୍ୱରୌ ।" (ରଘୁବଂଶ)

ଆଚାର୍ଯ୍ୟ ଦଣ୍ଡୀ କାବ୍ୟାଦର୍ଶରେ ପ୍ରତିପାଦନ କରିଛନ୍ତି ଯେ ପ୍ରତିଭା, ଅଧ୍ୟୟନ ଓ ଅଭ୍ୟାସ ଏହି ତିନୋଟି ମିଳିତ ଭାବ ହେଉଛନ୍ତି କାବ୍ୟର ହେତୁ ବା କାରଣ । ସ୍ୱାଭାବିକୀ ପ୍ରତିଭା (ନବନବଉନ୍ମେଷଶାଳିନୀପ୍ରଜ୍ଞା), ନିର୍ମଳଜ୍ଞାନ ଏବଂ ଦୋଷରହିତ ଅଭ୍ୟାସ ଏହି ତ୍ରୟ ହେଉଛନ୍ତି କାବ୍ୟର କାରଣ । ସୁତରାଂ ଆଚାର୍ଯ୍ୟ ଦଣ୍ଡୀ ଲେଖିଛନ୍ତି –

"ନୈସର୍ଗିକୀ ଚ ପ୍ରତିଭା ଶ୍ରୁତଞ୍ଚ ବହୁ ନିର୍ମଳମ୍
ଅମନ୍ଦଶ୍ଚାଭିଯୋଗୋ ସ୍ୟାଃ କାରଣଂ କାବ୍ୟସଂପଦଃ ।"

ଆଚାର୍ଯ୍ୟ ମମ୍ମଟ ଭଟ୍ଟ ତାଙ୍କର "କାବ୍ୟପ୍ରକାଶ" ଗ୍ରନ୍ଥରେ କାବ୍ୟର ପ୍ରୟୋଜନୀୟତା ସମ୍ପର୍କରେ ଯଥାର୍ଥରେ କହିଛନ୍ତି –

"କାବ୍ୟଂ ଯଶସେଽର୍ଥକୃତେ ବ୍ୟବହାରବିଦେ ଶିବେତର କ୍ଷତୟେ
ସଦ୍ୟଃ ପରିନିର୍ବୃତୟେ କାନ୍ତାସମ୍ମିତ ତୟୋପଦେଶଯୁଜେ ।"

ସେହିପରି ଆଚାର୍ଯ୍ୟ ଭାମହ 'କାବ୍ୟାଳଙ୍କାର'ରେ ଉଲ୍ଲେଖ କରିଛନ୍ତି –

"ଧର୍ମାର୍ଥକାମମୋକ୍ଷେଷୁ ବୈଚକ୍ଷଣ୍ୟଂ କଳାସୁ ଚ
ପ୍ରୀତିଂ କରୋତି କୀର୍ତ୍ତିଂ ଚ ସାଧୁ କାବ୍ୟଂ ନିବନ୍ଧନମ୍ ।"

(ଭାମହ – କାବ୍ୟାଳଙ୍କାର ୧–୨)

ଅର୍ଥାତ୍ ଧର୍ମ, ଅର୍ଥ, କାମ ଓ ମୋକ୍ଷ – ଏହି ଚାରିଗୋଟି ପୁରୁଷାର୍ଥର ଏବଂ ସମସ୍ତ କଳାମାନଙ୍କରେ ନୈପୁଣ୍ୟ, କୀର୍ତ୍ତି ଏବଂ ଆନନ୍ଦର ଉପଲବ୍ଧି ନମିତ୍ତ କାବ୍ୟ ରଚନା କରାଯାଏ ।

ମଧ୍ୟଯୁଗୀୟ ଓଡ଼ିଆ କାବ୍ୟଯୁଗର ଏକ ସୁଦୀର୍ଘ ଓ ସମୃଦ୍ଧ ପରମ୍ପରା ରହିଛି । ଓଡ଼ିଆ ସାହିତ୍ୟରେ କାବ୍ୟଯୁଗର ପୁରୋଭାଗରେ ଚୈତନ୍ୟ ଦାସ ସ୍ମରଣକୁ ଆସନ୍ତି । ନୂଆପଡ଼ା ଜିଲ୍ଲାର ଖଡ଼ିଆଳରେ ସେ ଅବସ୍ଥାନ କରୁଥିଲେ । ଷୋଡ଼ଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ସେ ଆବିର୍ଭୂତ ହୋଇଥିଲେ । ପଞ୍ଚସଖାଙ୍କ ସମସାମୟିକ ଏହି କବି ଶୂନ୍ୟବାଦୀ ଓ ନିର୍ଗୁଣ ବ୍ରହ୍ମର ଉପାସକ ଥିଲେ । 'ନିର୍ଗୁଣ

ମାହାତ୍ମ୍ୟ' ଓ 'ବିଷ୍ଣୁ ଗର୍ଭପୁରାଣ' କବି ଚୈତନ୍ୟ ଦାସଙ୍କର ଦୁଇଗୋଟି ଉଲ୍ଲେଖଯୋଗ୍ୟ କୃତି । 'ନିର୍ଗୁଣ ମାହାତ୍ମ୍ୟ' ଗ୍ରନ୍ଥ କବି ଚୈତନ୍ୟ ଦାସଙ୍କର ଏକ ସାର୍ଥକ କୃତି । ଏହା ଭାଗବତର ନବାକ୍ଷରୀ ବୃତ୍ତରେ ଲିଖିତ । ଷୋଡ଼ଶ ଛାନ୍ଦ ବିଶିଷ୍ଟ ଏହି କାବ୍ୟରେ ଜୀବଜଗତର ପ୍ରାଣସ୍ୱରୂପ ମହାବିଷ୍ଣୁ ନିର୍ଗୁଣ ବ୍ରହ୍ମଙ୍କ ମହିମା ବର୍ଣ୍ଣିତ ହୋଇଛି । ଏହି ଗ୍ରନ୍ଥରେ କବି ନିଜର ପରିଚୟ, ଅବସ୍ଥାନ କ୍ଷେତ୍ର ସମ୍ପର୍କରେ ସୂଚନା ଦେଇଛନ୍ତି –

"ଦାଦିଙ୍କ ନାମ ଧର୍ମୋତ୍ତର । ପିତାଙ୍କ ନାମ ବୁଦ୍ଧେଶ୍ୱର ।
ମାତାଙ୍କ ନାମ ମେଘାବତୀ । ସେ ମୋତେ ଜନ୍ମ କଲେ କ୍ଷିତି ।
ଗୁରୁଙ୍କ ନାମ ଧ୍ୟାନ ଦାସ । ସେ ଦେଲେ ଜ୍ଞାନ ଉପଦେଶ ।
ମୋ କର୍ଣ୍ଣଗୁରୁ ସେ ଗୋସାଇଁ । ବ୍ରହ୍ମ ବିଦ୍ୟା ହିଁ ଦେଲେ କହି ।
ଗୃହ ବେପାର ତ୍ୟାଗ କରି । ବାଲୁତ କାଲୁ ଦିଗାମ୍ବରୀ ।
ମୋଠାରେ ଥିଲେ ଛଡ଼ ମାସ । ପୁଣି ସେ ଦିଗ କଲେ ବାସ ।
ବୈଷ୍ଣବ ଆଚାର ମୋହର । ଯମକୁ ମନେ କରି ଡ଼ର ।
ଏ ଗୀତ ଭକତ ଯହିଁରେ । ନାମ ବଡ଼ମୂଳ ଗ୍ରାମରେ ।
ଭାଗୀରଥି ବାବୁଙ୍କ ଦେଶ । ତହିଁରେ ମୋର ଗୃହ ବାସ ।
ରଖିଲେ ମୋତେ ଶ୍ରଦ୍ଧା ପାଇ । ପାଞ୍ଚହଳ ଯେ ଭୂମି ଦେଇ ।
କହିବି ରାଜ୍ୟର ଭାବନା । ନାମ ତା କାଉଁରୀପାଟଣା ।
ପ୍ରତାପରୁଦ୍ର ରାଜାଦେଶ । ନଗ୍ର ଖରିଆଳ ବିଶେଷ ।"

ଏହି ଗ୍ରନ୍ଥର ମୁଖ୍ୟ ଚରିତ୍ର ହେଲେ ଭଗବାନ କପିଳ ଓ ଦତ୍ତାତ୍ରେୟ ଅବଧୂତ । ଏଥିରେ କପିଳସମ୍ବାଦ, ଅବଧୂତ ଦତ୍ତାତ୍ରେୟ ସମ୍ବାଦ, ନାରାୟଣ ବ୍ରହ୍ମା ସମ୍ବାଦ ଇତ୍ୟାଦି ମୁଖ୍ୟ ପ୍ରସଙ୍ଗ । କବି ଚୈତନ୍ୟ ଦାସ ଦ୍ରବ୍ୟ ଯଜ୍ଞ ଅପେକ୍ଷା ଜ୍ଞାନଯଜ୍ଞର ଶ୍ରେଷ୍ଠତା ପ୍ରତିପାଦନ କରିଛନ୍ତି । ତାଙ୍କ ଭାଷାରେ –

"ପିଣ୍ଡକୁ କରି ଯଜ୍ଞ କୁଣ୍ଡ । ପଚିଶ ପ୍ରକୃତି ସମିଧ ।।
ବଚନ ଶ୍ରୁତି ଚରୁ ତିଳ । ବ୍ରହ୍ମରୂପ ଜାଳି ଅନଳ ।।
ବେଦକୁ କରି ପୁରୋହିତ । ସେ ଜାଣେ ତହିଁ ଆଦି ଅନ୍ତ ।।
ଶ୍ରୁବ କରିବ ନୟନ । ଢାଳିବ ଘୃତ କରି ମନ ।।
ଏ ଭାବେ କଲେ ଆତ୍ମଯର୍ଗ୍ୟ । ଯେ କରେ ତାର ବଡ଼ ଭାଗ୍ୟ ।।"

ଗୃହସ୍ଥ ପୁରୁଷମାନଙ୍କୁ କବି ପରାମର୍ଶ ଦେଇ କହିଛନ୍ତି –

"ମନକୁ କରି ତପୋବନ । ଚିତ୍ତେ ଶୋଧିବ ବ୍ରହ୍ମଜ୍ଞାନ ॥
ପଚିଶ ପ୍ରକୃତି ନିରୋଧି । ଲାଭେ ଅଲାଭେ ସମବୁଦ୍ଧି ॥
ନିତ୍ୟ ବୈରାଗ ଯାର ମନ । ଗୃହ ହିଁ ତାର ତପୋବନ ॥"

ସେହିପରି ଗୃହୀର ଆଚରଣ କିପରି ହେବା ଉଚିତ୍ ତାହା ଚୈତନ୍ୟଦାସ ଉଲ୍ଲେଖ କରିଛନ୍ତି –

"ମୁଖେ କହିବ ସତ୍ୟ ଭାଷା । ନ କରି ପର ଦ୍ରବ୍ୟ ଆଶା ॥
କ୍ଷମା କରୁଣା ହୃଦେ ଧରି । ଜୀବ ଉପରେ ଦୟା କରି ॥
କୋଟିଏ ବ୍ରତ ମଧ୍ୟେ ସାର । ଜୀବ ଉପରେ ଦୟା ଯାର ॥
ସକଳ ବ୍ରତ କଲା ସରି । ଅହିଂସା କର୍ମ ଯେ ଆଚରି ॥"

କବିଙ୍କର 'ବିଷ୍ଣୁଗର୍ଭ ପୁରାଣ' ତ୍ରୟୋଦଶ ଅଧ୍ୟାୟ ବିଶିଷ୍ଟ ଏକ ରଚନା । ଏହି ଗ୍ରନ୍ଥଟିର ନାମକରଣ ସମ୍ପର୍କରେ କବି ଲେଖିଛନ୍ତି –

"ଏତେ ବୋଲି ଅନେ[illegible] ଯେ ପରମକୁ ଧରି
ଅନନ୍ତ କୋଟି ବ୍ରହ୍ମାଣ୍ଡ ଆପଣା ଗର୍ଭଗତେ କରି ।
ମହାବିଷ୍ଣୁ ସ୍ୱରୂପ ଅଙ୍ଗ ପ୍ରକାଶିଲା
ତେଣୁ କରି ନାମ ତାର ବିଷ୍ଣୁଗର୍ଭ ହେଲା ।"

କବି ଏଥିରେ ପ୍ରସଙ୍ଗକ୍ରମେ ବର୍ଣ୍ଣନା କରିଛନ୍ତି ଯେ ବିଷ୍ଣୁକଳ୍ପରେ ମହାଶୂନ୍ୟରୂପୀ ସର୍ବଶକ୍ତିମାନ୍ ଅଲେଖ ବ୍ରହ୍ମ ରୂପ ପ୍ରକାଶ କରିବାକୁ ସଂକଳ୍ପନେଲେ । ଫଳରେ ତାଙ୍କ ଅଙ୍ଗରୁ ଷଡ଼ରଙ୍ଗର ବର୍ଣ୍ଣ ନିସୃତ ହେଲେ ଏବଂ ଏହି ଷଡ଼ବର୍ଣ୍ଣରୁ ଷଡ଼ ମହାବିଷ୍ଣୁ ନିରାକାର ଆବିର୍ଭାବ ହେଲେ । ଏହିପରି ଏଥିରେ ଅନେକ ତାତ୍ତ୍ୱିକ ବିଷୟ ଗର୍ଭିତ । କବି ଏହି ଗ୍ରନ୍ଥର ମହିମା ସମ୍ପକରେ ଉଲ୍ଲେଖ କରିଛନ୍ତି –

"ବିଷ୍ଣୁ ଗର୍ଭପୁରାଣ ଚରିତ୍ର ପ୍ରତି ଭେଦ
ଏ ଜନ୍ମ ମୃତ୍ୟୁ ବ୍ୟାଧି କି ଅଟଇ ଔଷଧ ।
ଏ ଜନ୍ମ ମରଣକୁ ଯାହାର ମନେ ଭୟେ
ବିଷ୍ଣୁଗର୍ଭ ପୁରାଣକୁ ଶୁଣିବ କରିଲୟେ ।"

'ଚୈତନ୍ୟ ବିଳାସ' ଓ 'ବୈଷ୍ଣବ ଲୀଳାମୃତ' – ଏହି ଦୁଇଗୋଟି କାବ୍ୟର ରଚୟିତା ମାଧବ ପଟ୍ଟନାୟକ ଶ୍ରୀଚୈତନ୍ୟଙ୍କ ସମସାମୟିକ ଜଣେ ବୈଷ୍ଣବ

କବି । ସେ ଶୁଦ୍ଧା ଭକ୍ତିବାଦର ଜଣେ ବିଶିଷ୍ଟ ପ୍ରବକ୍ତା । ତାଙ୍କର ଜନ୍ମ ସ୍ଥାନ ଖଣ୍ଡପଡ଼ା । ସେ ତାଙ୍କର ପରିଚୟ ଦେଇ ଲେଖିଛନ୍ତି –

"ମୁଁ ହୀନ ମାଧବ ପାମର । ଶୂଦ୍ର କୂଳରେ ଜନ୍ମ ମୋର ।।
ମୋ ପିତା ନାମ ଭଗବାନ । ମାତା ମୋ ହୀରାଦେବୀ ଜାଣ ।।
କରଣ ବଂଶେ ଜନ୍ମ ହୋଇ । ପଟ୍ଟନାୟକ ସଂଜ୍ଞା ବହି ।।
ଖଣ୍ଡପଡ଼ା ମୋ ପୂର୍ବସ୍ଥାନ । ଶ୍ରୀକ୍ଷେତ୍ରେ ବାସେ ଦେଲି ମନ ।।"

(ବୈ.ଲୀ)

କବିଙ୍କର 'ଚୈତନ୍ୟ ବିଳାସ' ଦଶଗୋଟି ଛାନ୍ଦରେ ରଚିତ । ଏହାର ରଚନାକାଳ ୧୫୧୬ ଖ୍ରୀଷ୍ଟାବ୍ଦ । ଶ୍ରୀକ୍ଷେତ୍ର ଅବସ୍ଥାନ କାଳରେ ସେ ଶ୍ରୀଚୈତନ୍ୟଙ୍କ ମୁଖରୁ ଯେଉଁ ତତ୍ତ୍ୱ ଉପଦେଶ ଶୁଣିଥିଲେ ତାହା 'ଚୈତନ୍ୟ ବିଳାସ' ଗ୍ରନ୍ଥରେ ଲିପିବଦ୍ଧ ହୋଇଛି । କବିଙ୍କର 'ବୈଷ୍ଣବଲୀଳାମୃତ' ଗ୍ରନ୍ଥର ରଚନାକାଳ ୧୫୩୫ ଖ୍ରୀଷ୍ଟାବ୍ଦ । ଏହି ଗ୍ରନ୍ଥରେ ଗଜପତି ପ୍ରତାପରୁଦ୍ରଦେବଙ୍କ ରାଜତ୍ୱକାଳରେ ସମବେତ ବୈଷ୍ଣବମାନଙ୍କର କାର୍ଯ୍ୟକଳାପ ବର୍ଣ୍ଣିତ । ଷୋଡ଼ଶ ଶତାବ୍ଦୀ ଓଡ଼ିଶାରେ ବୈଷ୍ଣବ ଧର୍ମ ଆନ୍ଦୋଳନର ପ୍ରାମାଣିକ ତଥ୍ୟ ଏଥିରେ ରହିଛି । ବଲ୍ଲଭାଚାର୍ଯ୍ୟ, କବୀର, ରାୟରାମାନନ୍ଦ, ଶ୍ରୀଚୈତନ୍ୟ, ରୂପ, ସନାତନ, ପଞ୍ଚସଖା, ହରିଦାସ ପ୍ରଭୃତି ବୈଷ୍ଣବମାନଙ୍କ ସମ୍ପର୍କରେ ଅନେକ ତଥ୍ୟ କବି ମାଧବ ପଟ୍ଟନାୟକ ଜଣେ ପ୍ରତ୍ୟକ୍ଷଦ୍ରଷ୍ଟାରୂପେ ଏଥିରେ ଲିପିବଦ୍ଧ କରିଛନ୍ତି ।

ଷୋଡ଼ଶ ଶତାବ୍ଦୀର କବି ଅର୍ଜ୍ଜୁନ ଦାସ 'ରାମବିଭା' ଓ 'କଳ୍ପଲତା' କାବ୍ୟଦ୍ୱୟର ରଚୟିତା । 'ରାମବିଭା' ବାରଗୋଟି ଛାନ୍ଦ ବିଶିଷ୍ଟ କାବ୍ୟ । ଏହା ଓଡ଼ିଆ ସାହିତ୍ୟର ସର୍ବପ୍ରଥମ ଛନ୍ଦୋବଦ୍ଧ କାବ୍ୟ ଭାବରେ ମାନ୍ୟତା ଲାଭ କରିଛି । ଏହି ଗ୍ରନ୍ଥରେ ଦଶରଥଙ୍କ ପୁତ୍ରଲାଭ, ବିଶ୍ୱାମିତ୍ରଙ୍କ ନିମନ୍ତ୍ରଣ ଓ ତାଙ୍କ ସହିତ ରାମଲକ୍ଷ୍ମଣଙ୍କ ବନଗମନ, ତାଡ଼କାବଧ, ଅହଲ୍ୟା ଶାପମୋଚନ, ସୀତା ସ୍ୱୟଂବର, ଶିବଧନୁଭଙ୍ଗ, ପର୍ଶୁରାମଙ୍କ ଦର୍ପଭଞ୍ଜନ ବର୍ଣ୍ଣିତ । କବି ଏହି ଗ୍ରନ୍ଥର କଥାବସ୍ତୁ 'ସାରଳା ମହାଭାରତ' ଓ 'ରାମାୟଣ'ରୁ ଆହରଣ କରିଛନ୍ତି । କାବ୍ୟର ଆରମ୍ଭରେ ଶ୍ରୀଜଗନ୍ନାଥଙ୍କର ବନ୍ଦନା ରହିଛି । 'ରାମବିଭା' କାବ୍ୟର ନବମଛାନ୍ଦର କିୟଦଂଶରୁ କବିଙ୍କର ବର୍ଣ୍ଣନାଶୈଳୀ ଲକ୍ଷ୍ୟ କରାଯାଇଥାଏ –

"ବୋଲନ୍ତି ଯେ ମହାରଷି ପାତ୍ର ବେହରଣେ ବସି
ବଶିଷ୍ଠ ଦୂତକୁ ଧନ ବସନ ଦେଲେ
ରାଉତମାହୁନ୍ତ ଘାସି ସବୁ ପରିବାରେ ଆସି
ଯେ ଯାହାରେ ଭାତ ବରତନ ଯେ ନେଲେ
ବିଚାରିଣ ମାହେନ୍ଦ୍ର ବେଳ
ବଶିଷ୍ଟେ ଆପଣେ ଦେଲେ ସୁଅନୁକୂଳ ।
ରାୟେ ଅବକାଶ ହୋଇ ଅମନାତ୍ୟଗଣ ରାଇ
ପଚାରନ୍ତି କେବେ କଟକାଇ କରିବା
ଖୋଜିଲ କି ଅନୁକୂଳ ସଜକର ସବୁଦଳ
ମନ ନ ରହଇ ବେଗ ହୋଇଣ ଯିବା
ଦେଖିବାକୁ ଶ୍ରୀରାମ ମୁଖ
ତେବେ ସେ ଛାଡ଼ିବ ଆମ୍ଭ ସକଳଦୁଃଖ ।" (ନବମ ଛାନ୍ଦ)

କବି ଅର୍ଜ୍ଜୁନଦାସ 'ରାମବିଭା' କାବ୍ୟର କେତେକ ଛାନ୍ଦର ଆରମ୍ଭରେ ଓ ଶେଷରେ ଜଗନ୍ନାଥଙ୍କର ବର୍ଣ୍ଣନା କରିଛନ୍ତି । ଯେପରି କାବ୍ୟର ପ୍ରଥମଛାନ୍ଦରେ ସେ ଶ୍ରୀଜଗନ୍ନାଥଙ୍କୁ ଶ୍ରୀକ୍ଷେତ୍ରର ନୃପତି ଭାବରେ ବର୍ଣ୍ଣନା କରିଛନ୍ତି –

"ଈଶ୍ୱର ଇଚ୍ଛାୟେ ଦୟାନିଧି ଦେହ ଧରି
ନୃପତିପଣେ ପୁରୁଷୋତ୍ତମେ ବିହରି ।"
(ପ୍ରଥମ ଛାନ୍ଦ, ୫ମ ପଦ)

ଜଗନ୍ନାଥ ମହାପ୍ରଭୁଙ୍କର ଆଚମନ, ଅବକାଶ କଥା ମଧ୍ୟ କବି ଉଲ୍ଲେଖ କରିଛନ୍ତି –

"ଆଚମନ ଅବକାଶ ଦର୍ଶନ କରି
ଶିଶୁଅରଜୁନ କର ଅଛଇ ଯୋଡ଼ି ।" (ପଞ୍ଚମ ଛାନ୍ଦ)

କବିଙ୍କ ଲେଖନୀରେ ଶ୍ରୀରାମଙ୍କ ବାଲଧୂପ ମଣୋହି ଓ ବେଶ ବର୍ଣ୍ଣନା ବେଶ୍ ଦିବ୍ୟ ଓ ସୁନ୍ଦର । ଦୃଷ୍ଟାନ୍ତସ୍ୱରୂପ –

"ରାମ ମୁଖେ ଚୁମ୍ବନ ଦେଇଣ କଉଶୁଲ୍ୟା
ଆନନ୍ଦ ଜଳଧି ତାର ମନ ମଜ୍ଜାଇଲା ହେ ।
ଗୋପାଳବଲ୍ଲଭ ସାରି ନୀଳଗିରି ପତି
ଆଚୋମନ ସାରି ତଢ଼ାଉ ଲାଗି ହୋନ୍ତି ହେ ।

ବାଳଧୂପ ମଣୋହି କୋଠାରେ ବଢ଼ାଇଲେ
ସୁବେଶ ହୋଇବେ ବୋଲି ଆୟେ କଢ଼ାଇଲେ ହେ ।
ପୁଣି ଯମଦାଢ଼ ଘେତି ଆନକରି ବାନ୍ଧି
ଗଉଁଛିଲେ ଶ୍ରୀଅଙ୍ଗେ ସୁରତ ନେତ ଛନ୍ଦି ହେ ।
ଶିରେଣ ଶିରିକାପଡ଼ା ଉପରେ ଫୁଲ ଚୁଳ
ଲଲାଟେ ଲୁଚାଇଣ ଖଞ୍ଜିଲେ ଫୁଲମାଳ ହେ ।
ମଣିମୟେ କମନୀୟ କନକର କାନ
ଯେହୁ ମୁନିଜନ ମନ କରେ ଅନୁଆନ ହେ ।
ଅବତଂସ କଣୟ କମଳ ଫୁଲ ବେନି
ଗରବ କରନ୍ତି ବେନି ନୟନକୁ ଘେନି ହେ ।” (ଇତ୍ୟାଦି)

(ପ୍ରଥମ ଛାନ୍ଦ)

କବି ଅର୍ଜ୍ଜୁନଦାସଙ୍କ ‘ରାମବିଭା’ କାବ୍ୟ ସେ ସମୟରେ କବିମାନଙ୍କର ଆଦର୍ଶ କାବ୍ୟରୂପେ ଗୃହୀତ ହୋଇଥିଲା । ପରବର୍ତ୍ତୀକାଳରେ ନିମ୍ନ କବିମାନେ ସେମାନଙ୍କ କାବ୍ୟରେ ‘ରାମବିଭା’ର ବିଭିନ୍ନ ବାଣୀ ମାନଙ୍କରେ ଗାନକରିବାକୁ ନିର୍ଦ୍ଦେଶ ଦେଇଯାଇଛନ୍ତି । ଯଥା –

(କ) କବି ପ୍ରତାପ ରାୟ ତାଙ୍କର ‘ଶଶିସେଣା’ କାବ୍ୟର ଚତୁର୍ଥ ଛାନ୍ଦକୁ ‘ରାମବିଭା’ର ‘ମାରକଣ୍ଡ ଋଷି କହେ ବାଣୀରେ ଗାଇବ’ ବୋଲି ନିର୍ଦ୍ଦେଶ ଦେଇଛନ୍ତି ।

(ଖ) କବି କାର୍ତ୍ତିକ ଦାସ ‘ରୁକ୍ମିଣୀ ବିଭା’ କାବ୍ୟର ଅଷ୍ଟମଛାନ୍ଦକୁ ‘ମାର୍କଣ୍ଡ ଋଷି କହେ’ ‘ରାମବିଭାର’ ଷଷ୍ଠଛାନ୍ଦ ‘ଏ ବାଣୀରେ ଗାଇବ’ ବୋଲି ଉଲ୍ଲେଖ କରିଛନ୍ତି ।

(ଗ) କବି ନରସିଂହ ସେଣ – ‘ପରିମଳା’ କାବ୍ୟ ପଞ୍ଚମଛାନ୍ଦକୁ ‘ରାମବିଭା’ ର ତୃତୀୟଛାନ୍ଦ ବାଣୀରେ ଗାଇବାକୁ କହିଛନ୍ତି ।

(ଘ) କବି ବିଷ୍ଣୁଦାସ ସ୍ୱରଚିତ ‘ପ୍ରେମଲୋଚନା’ କାବ୍ୟର ପଞ୍ଚମ ଛାନ୍ଦକୁ ‘ରାମବିଭା’ର ‘ମାରକଣ୍ଡ ଋଷି କହେ ବାଣୀରେ ଗାଇବ’ ବୋଲି କହିଛନ୍ତି ।

(ଙ) କବି ଧନଞ୍ଜୟ ଭଞ୍ଜ ‘ଶ୍ରୀରାମ ବିଳାସ’ ତ୍ରୟୋଦଶ ଛାନ୍ଦକୁ ‘ମଣୋହି ଭିଆଇ ଜନକ ରାୟେ’ – ରାମବିଭା ପଞ୍ଚମ ଛାନ୍ଦ ବାଣୀରେ ଗାଇବାକୁ ସୂଚନା ଦେଇଛନ୍ତି ।

(ଚ) କବିସମ୍ରାଟ ଉପେନ୍ଦ୍ର ଭଞ୍ଜ 'ଲାବଣ୍ୟବତୀ' କାବ୍ୟର ପ୍ରଥମ ଛାନ୍ଦକୁ 'ରାମବିଭା'ର ପ୍ରଥମଛାନ୍ଦ ବାଣୀରେ ଏବଂ ୪୮ଶ ଛାନ୍ଦକୁ 'ରାମବିଭା'ର 'ମଣୋହି ଭିଆଇ ଜନକରାୟେ' ବାଣୀରେ ଗାଇବାକୁ ନିର୍ଦ୍ଦେଶ ଦେଇଛନ୍ତି ।

ସୁତରାଂ କବି ଅର୍ଜ୍ଜୁନ ଦାସଙ୍କର 'ରାମବିଭା' କାବ୍ୟଟି ଏକ ଲୋକପ୍ରିୟ କାବ୍ୟ ଭାବରେ ଆଦୃତି ଲାଭ କରିଥିଲା । ଯେହେତୁ ଏହା ହେଉଛି ପ୍ରଥମ ଛାନ୍ଦୋବଦ୍ଧ (ରାମ) କାବ୍ୟ, ସୁତରାଂ ପରବର୍ତ୍ତୀ କାଳର କାବ୍ୟରଚନାର ଏକ ଆଦର୍ଶ ରୂପେ ଏହା ଗୃହୀତ ହୋଇଥିଲା ।

କବି ଅର୍ଜ୍ଜୁନ ଦାସଙ୍କ ରଚିତ ଅନ୍ୟତମ ପ୍ରସିଦ୍ଧ କାଳ୍ପନିକ କାବ୍ୟ 'କଳ୍ପଲତା' ଏକ କମନୀୟ ପ୍ରେମାଖ୍ୟାନମୂଳକ ରଚନା । ଏହି କାବ୍ୟକୁ ଓଡ଼ିଆ ସାହିତ୍ୟର ପ୍ରଥମ ବିଧିବଦ୍ଧ କାଳ୍ପନିକ ଆଖ୍ୟାୟିକା କାବ୍ୟର ମାନ୍ୟତା ଦିଆଯାଇଅଛି । କାବ୍ୟର ନାୟକ ଅମରଶିଖର ଓ ନାୟିକା କଳ୍ପଲତା । କବି ବର୍ଣ୍ଣନା କରିଛନ୍ତି ଯେ ଏକଦା ଇନ୍ଦ୍ରସଭାରେ ନୃତ୍ୟରତା ଅପ୍‌ସରା ସୁରେଖା ତା'ର ପ୍ରଣୟୀ ବସନ୍ତକକୁ ଦେଖି ଆନମନା ହୋଇଛି ଏବଂ ତାର ତାଳ ଭଙ୍ଗ ହୋଇଛି । ତେଣୁ ଇନ୍ଦ୍ରଙ୍କ ଦ୍ୱାରା ଅଭିଶାପ ଗ୍ରସ୍ତ ହୋଇ ବସନ୍ତକ ମଲ୍ଲାଳଦେଶର ରାଜକୁମାର ଅମରଶିଖର ଭାବରେ ଓ ସୁରେଖା କର୍ଣ୍ଣାଟ ଦେଶର ରାଜକୁମାରୀ କଳ୍ପଲତା ଭାବରେ ଜନ୍ମଲାଭ କରିଛନ୍ତି । ତେଣୁ କାବ୍ୟଟିରେ ସେମାନଙ୍କର ପୁନର୍ଜନ୍ମ ପ୍ରସଙ୍ଗ ସହିତ ସେମାନଙ୍କର ବିବାହ, ବିଚ୍ଛେଦ ଓ ପୁନର୍ମିଳନ ବର୍ଣ୍ଣିତ । 'କଳ୍ପଲତା' କାବ୍ୟର ବିଷୟବସ୍ତୁ ତେରଗୋଟି ଛାନ୍ଦରେ ବର୍ଣ୍ଣିତ ।

'କଳ୍ପଲତା' କାବ୍ୟର ପ୍ରଥମ ଛାନ୍ଦରେ ଶ୍ରୀଜଗନ୍ନାଥଙ୍କର ସ୍ନାନ ମହୋତ୍ସବର ଉଲ୍ଲେଖ ରହିଛି । ଯଥା –

"ଶୁଣହେ ରସିକ ଜନ ଜ୍ୟେଷ୍ଠ ପୂର୍ଣ୍ଣିମୀ ଦିନ
ଜ୍ୟେଷ୍ଠା ନକ୍ଷତ୍ର ସେକାଳେ
ଟମକ ବାଜେ ସିନ୍ଧୁ କୂଳେ ।" (ପ୍ରଥମ ଛାନ୍ଦ)

ସେହିପରି ଜଗନ୍ନାଥଙ୍କ 'ବଳଗଣ୍ଡି ପ୍ରବେଶ' ଦୃଶ୍ୟକୁ ବର୍ଣ୍ଣନା କରିବାକୁ ଯାଇ କବି ଲେଖିଛନ୍ତି –

"ବଳଗଣ୍ଡି ପରବେଶ ରହିଣ ନବ ଦିବସ
ଶିଶୁ ଅରଜୁନ ଦାସ, ମନେ ଉଲ୍ଲାସ ଯେ ।" (୮ମ ଛାନ୍ଦ)

କାବ୍ୟଟିର ଶେଷଛାନ୍ଦରେ କବି ଗୁଣ୍ଡିଚାଯାତ୍ରାର ବର୍ଣ୍ଣନା କରି ତାଙ୍କର ଜଗନ୍ନାଥ-ପ୍ରାଣତାର ପରିଚୟ ଦେଇଛନ୍ତି । କବିଙ୍କ ଭାଷାରେ –

"ଶୁଣହେ ରସିକମାନେ ଦକ୍ଷିଣ ଜଳଧିକୂଳେ
କ୍ଷେତ୍ରବର ନୀଳଗିରି ନବରରୁ ଗୁଣ୍ଡିଚା ବିଜୟ କଲେ ।
ବବିଧ ତଡ଼ାଉଲାଗି ହୋଇ ବାମେ ବୀରବର ଛୁରୀ
ନନ୍ଦିଘୋଷ ରହୁବରେ ଆରୋହିଣ ଶ୍ରୀଭୁଜେ ଶଙ୍ଖ ଚକ୍ରଧରି ।
ସକଳଦେବ ପଛେ ପଟୁଆରୀ କୁସୁମ ବରଷେ ରହୁବରେ
ଶିବକେଶବ ବେନିଙ୍କ ଛାମୁରେ କର ସେ ଯୋଡ଼ନ୍ତି ଶିରେ ।
କମଳିଣୀ ପ୍ରସନ୍ନ କରାଇଣ ସିଂହାସନେ ପୀତବାସ
ଦେବତାଙ୍କ ପଛେ ପାୟେ ପଡ଼ି ଶୋଇ ବାହୁଡ଼ଇ ଅରଜୁନି ଦାସ ।"

(ଦ୍ୱାଦଶ ଛାନ୍ଦ)

'କଳ୍ପଲତା' କାବ୍ୟରେ କବିଙ୍କର ବର୍ଣ୍ଣନାବିଳାସ ବେଶ କାବ୍ୟିକ ଓ ମନୋଜ୍ଞ ହୋଇଛି । ଏହା ପରବର୍ତ୍ତୀ କାଳର କବିମାନଙ୍କୁ ବହୁଳଭାବରେ ପ୍ରଚୋଦିତ କରିଛି ନିଶ୍ଚୟ । ଦୃଷ୍ଟାନ୍ତ ସ୍ୱରୂପ –

"ଉଠିଣ ରାଜକୁମାରୀ ବଂଳହର ଭୁଜଧରି
ତୋଟାପୋଖରୀ କୂଳେଣ ହୋଇଲେ ଉଭା
ସଙ୍ଗେ ସବୁ ପରିବାରୀ ଆଲଟ ଚାମର ଧରି
କମଳ ବନେଣ ଯେହ୍ନେ ଆଦିତ୍ୟ ଶୋଭା
ରତି ସଙ୍ଗେ କାମ କି ଖେଳେ
ସଖୀମାନେ ରଖି କରି ପଶିଲେ ଜଳେ ।
ଛାଡ଼ିଣ କମଳ ବନ ମଧୁପଗଣ ବହନ
ମତ୍ତ ମଧୁପାନେ ମତ୍ତ ଛାଡ଼ିଣଭଲେ
କୁମାରୀମୁଖ କମଳ ମଧୁରସ ପରିମଳ
କଳପଲତା ବଦନ ବେଢ଼ି ଉଡ଼ିଲେ
ନିବାରେ କୁରଙ୍ଗୀ ଲୋଚନୀ
କୁମର କୁସୁମ ଶର ଚିକୁର ଘେନି ।

କରନ୍ତି ସେ ଜଳକେଳି କୁମର ସଙ୍ଗେଣ ବାଳୀ
ବୁଡ଼ିଯାନ୍ତେ ମୁକୁଳିତ କବେରୀ ଶୋଭା
ବିସ୍ତାରିଛି ଆଳିବଳ ଚଞ୍ଚଳ ସକଳ କୂଳ
ଉଜଳ ଝଟକିଲାସେ ବଦନ ଶୋଭା
ପରିମଳ ପତନୀ ପିନ୍ଧି
ସରୁ ମଝାରେଣ ଭିଡ଼ି ପଣତ ବାନ୍ଧି ।" (୧୧ଶ ଛାନ୍ଦ)

କାଳ୍ପନିକ କାବ୍ୟ ଭାବରେ 'କଳ୍ପଲତା'ର ସ୍ଥାନ ସ୍ୱତନ୍ତ୍ର । ଏଥିରେ କବିଙ୍କର କବିତ୍ୱ, ବର୍ଣ୍ଣନାବିଳାସ ଏବଂ ଶିଳ୍ପସିଦ୍ଧି ଯଥାର୍ଥରେ ପ୍ରଣିଧାନଯୋଗ୍ୟ ।

ଷୋଡ଼ଶ ଶତାବ୍ଦୀର ଅନ୍ୟତମ କବି ଶିଶୁଶଙ୍କର ଦାସଙ୍କ 'ଭାଷାଭିଳାଷ' କାବ୍ୟଟି ମଧ୍ୟଯୁଗୀୟ କାବ୍ୟସାହିତ୍ୟରେ ଏକ ଅମୂଲ୍ୟ ଗ୍ରନ୍ଥ । ଏହି କାବ୍ୟଟି ବାଣାସୁର ନନ୍ଦିନୀ ଉଷା ଓ ପ୍ରଦ୍ୟୁମ୍ନଙ୍କ ପୁତ୍ର ଅନିରୁଦ୍ଧଙ୍କ ପ୍ରଣୟକାହାଣୀକୁ ଉପଜୀବ୍ୟ କରି ରଚିତ ହୋଇଛି । 'ଉଷାଭିଳାଷ' କାବ୍ୟଟିର ବିଷୟ ବସ୍ତୁ ବାରଗୋଟି ଛାନ୍ଦରେ ବର୍ଣ୍ଣିତ । ସୂଚନାଯୋଗ୍ୟ ଯେ ସାରଳା ମହାଭାରତର ମଧ୍ୟପର୍ବରେ ଉଷାହରଣ ପ୍ରସଙ୍ଗ ରହିଛି । ସେହିପରି ଭାଗବତ ଓ ହରିବଂଶରେ ମଧ୍ୟ ଉଷା – ଅନିରୁଦ୍ଧ ଉପାଖ୍ୟାନ ବର୍ଣ୍ଣିତ । ତେଣୁ ଏହିସବୁ ଗ୍ରନ୍ଥରୁ କବି ବିଷୟ ଚୟନ କରିଥିବା ମନେହୁଏ ।

ବାଣାନନ୍ଦିନୀ ଉଷାଙ୍କର ଯୌବନକାଳୀନ ବର୍ଣ୍ଣନାରେ କବି ରସିକତା ପ୍ରଦର୍ଶନ କରିଛନ୍ତି –

"ଯୁବାଜନ – ମନଚୂତ ନନ୍ଦନ ସମୀର
ପୁରୁଷ ହୃଦୟ ଚନ୍ଦ୍ରମଣି ନିଶାକର ।
ଶବଦ ସମ୍ପୂର୍ଣ୍ଣ ଅକଳଙ୍କ ହରିଣାଙ୍କ
ଲପନ ଲାବଣ୍ୟ ଲକ୍ଷ୍ମୀ ଚାହିଁଣ ଆତଙ୍କ ।
ସ୍ମିତ ଭାବ ଚାହିଁଣ ସେବିଲା ଯହୁଁ ହର
ଆହାଲାଦ ଗୁଣ ତେଣୁ ବହେ ନିଶାକର ।
ନିର୍ମଳ ସ୍ୱଭାବ ବହେ ମର୍ଦନ ଦର୍ପଣ
ଜଳରୁହ ବହେ ତାର ସୁଗନ୍ଧ ଲାବଣ୍ୟ ।

ସୁସଞ୍ଚ ନାସିକା ପୁଟେ ଲୁଳେ ଗଜମୋତି
ସୁଧା ବିନ୍ଦୁ ଘେନି କି ପୌର୍ଣ୍ଣମୀ ନିଶାପତି ।
କାମକୁ ଦିଆଇବାକୁ ଲୋଡ଼େ ହେମଗିରି
ଯହୁଁ ସେ କୁଚକୁ ଚାହେଁ ହେଠ ମାଥ କରି ।
କୁଟୀଳ କୁନ୍ତଳ କି କୋମଳ ଭୃଙ୍ଗରାଜି
କାମରଥ ଧ୍ୱଜେ ନୀଳ ପତାକା ବିରାଜି ।" (ଦ୍ୱିତୀୟ ଛାନ୍ଦ)

ଏଠାରେ ଉଲ୍ଲେଖ ଯୋଗ୍ୟ ଯେ କବିସମ୍ରାଟ ଉପେନ୍ଦ୍ର ଭଞ୍ଜ ଶିଶୁଶଙ୍କର ଦାସଙ୍କ 'ଉଷାଭିଳାଷ' କାବ୍ୟ ଦ୍ୱାରା ପ୍ରଭାବିତ ହୋଇଛନ୍ତି । 'ଉଷାଭିଳାଷ' କାବ୍ୟର ପଞ୍ଚମ ଛାନ୍ଦରେ ନାୟିକା ଉଷାର ସ୍ୱପ୍ନଭଙ୍ଗ ପରେ ତା'ର ପ୍ରତିକ୍ରିୟାକୁ କବି ଶଙ୍କର ଦାସ ନିମ୍ନ ମତେ ବର୍ଣ୍ଣନା କରିଛନ୍ତି–

"ପଲଙ୍କ ତେଜିଣ ଉଠିଲା ସୁମୁଖୀ ସପନ ସଙ୍କେତ ପାଇଣ
ଆହା ପ୍ରାଣନାଥ କେଣେ ଗଲ ବୋଲି ଉଚ୍ଚସ୍ୱରେ କରେ କାରୁଣ
ଦଇବ, ଦେଖାଇ ନିଧି ହରିନେଲୁ ।
ଶିଶୁ ସୁକୁମାରୀ କିଛି ନ ଜାଣଇ କିମ୍ପାଇଁ ମୋତେ ଏହା କଲୁ ।"
(ଉ.ଭି. ୫ମ ଛାନ୍ଦ)

ଅନୁରୂପଭାବରେ ଉପେନ୍ଦ୍ର ଭଞ୍ଜଙ୍କ 'ଲାବଣ୍ୟବତୀ' କାବ୍ୟରେ ନାୟିକା ଲାବଣ୍ୟବତୀର ସ୍ୱପ୍ନଦର୍ଶନ ପରେ ସମାନ ଦଶା ଘଟିଛି । ଉପେନ୍ଦ୍ରଙ୍କ ଭାଷାରେ –

"ଚେତି ଚତୁରୀ ଚାହିଁଲା ନିଶି ନାଶେ ପାଶେ ନାହିଁ ଦିବ୍ୟ ତରୁଣ
ମାରି ହୃଦେ ହାତ ନାଥ ନାଥ ବୋଲି ଅତି ଉଚ୍ଚେ କଲା କାରୁଣ୍ୟ
ଖୋଜେ ଅଧୀରେ, ଚେତନା ହତ ସେ ବିଧିରେ
ଶେଯ ଲେଉଟାଇ କବରୀ ଫିଟାଇ କରଭରି କୁଚ ସନ୍ଧିରେ ।"
(ଲା.ବ. – ଦ୍ୱାଦଶ ଛାନ୍ଦ)

ଲାବଣ୍ୟବତୀର ସ୍ୱପ୍ନ ଭଙ୍ଗ ପରବର୍ତ୍ତୀକାଳୀନ ଅବସ୍ଥାକୁ କବି ଅତ୍ୟନ୍ତ ଚାତୁର୍ଯ୍ୟ ସହ ବର୍ଣ୍ଣନା କରିଛନ୍ତି । ଲାବଣ୍ୟବତୀ ଯେ ଜଣେ ସୁଚତୁରା ନାୟିକା ତାହା ମଧ୍ୟ କବି ପ୍ରତିପାଦନ କରିଛନ୍ତି ।

ସେହିପରି 'ଉଷାଭିଳାଷ' କାବ୍ୟର ଆଉ କେତୋଟି ପଦ ଦୃଷ୍ଟାନ୍ତ ସ୍ୱରୂପ ନିଆଯାଇଛି, ଯାହାକି ଉପେନ୍ଦ୍ରଙ୍କ ବର୍ଣ୍ଣନାରେ କେତେ ପରିମାଣରେ ସାମ୍ୟ ରହିଥିବାର ଲକ୍ଷ୍ୟ କରାଯାଇପାରେ –

ଉଷାଭିଳାଷ –

"ପ୍ରିୟେ ମୋ ବିନୟ ଘେନ ଭାଷସି ମୃଦୁ ବଚନ
ନିର୍ଦ୍ଦୟ ମଦନଭୀତି ଅଭୟକର
କପାଳେ ମକରୀ ଲିହି ଚରଣେ ଅଳତା ଦେଇ
ପବିତ୍ର କରିବ ମୋର ଏ ବେନି କର
ସୁଧାରସ ଅଧରୁ ନେଇ
ଦାସ କରି କିଣମୋତେ କମଳ ମୁହିଁ ।" (ସପ୍ତମ ଛାନ୍ଦ)

ଉପେନ୍ଦ୍ର 'ଲାବଣ୍ୟବତୀ'ରେ ଲେଖିଲେ –

"ଏ କାଳେ କର କୋରକ କରି ତରୁଣତିଳକ
ବୋଇଲା ହେ ଜୀବେଶ୍ୱରୀ ବିନୟଘେନ
ଚରଣେ ଅଳତାପରି ପଛେ ପଛେ ଛାଇ ସରି
ଅନୁସରି ଥିବାକୁ ମୋ ହେଉଛି ମନ
ମୋତେ ଦିଅ ବସନଭାଗ୍ୟ
ହେଲିନି ସବୁମତେ ମୁଁ କୃତାର୍ଥ ଯୋଗ୍ୟ ।"(ଏକାଦଶ ଛାନ୍ଦ)

'ଉଷାଭିଳାଷ'ରେ ଅଛି –

"ମଦନେ କାତର ହୋଇ ଚିତୋଇଲା ଚଟୁକହି
ଚରଣ ଧରନ୍ତେ କରେ ସୁଜାଣ ରାମା
ସାତ୍ତ୍ୱିକ ବିକାରେ ତନୁ ବିନ୍ଧିଲା କୁସୁମ ଧନୁ
ଉଠି ପ୍ରଣମିତ କଲା ଅସୁର ଯେମା
ଭୁଜେ ଭିଡ଼ି ମଦନ ସୁତ
ବଦନ ଚୁମ୍ବିଲା ହୋଇ ଉତ୍ସୁକ ଚିତ୍ତ ।" (ସପ୍ତମ ଛାନ୍ଦ)

ଉପେନ୍ଦ୍ର 'ଲାବଣ୍ୟବତୀ'ରେ ଲେଖିଲେ –

"ସେ ରମଣୀ ଚନ୍ଦ୍ରମଣି ହୋଇଲା ଏମନ୍ତମଣି
ଚଟୁଚନ୍ଦ୍ରେ ଦ୍ରବୀଭୂତ କଳାନାଗର
ହାସ ପୂରିଲା ପରାୟେ ଶ୍ରୀମୁଖ ପ୍ରସନ୍ନ ହୋଏ
ହେଲାଜାଣି ବକ୍ରନେତ୍ରେ ତା' ସୀତକାର
କରଧରି ଶିରେ ଲଗାଇ
କୋଳକରି ସୁରସିକ ପଲ୍ୟଙ୍କେ ନେଇ ।"(ଏକାଦଶ ଛାନ୍ଦ)

'ଉଷାଭିଳାଷ' କାବ୍ୟଟି ଏକ ମନୋଜ୍ଞ ଓ ରସାଳ ରଚନା । ଏହାର ସାହିତ୍ୟିକମୂଲ୍ୟ ଉଚ୍ଚକୋଟୀର । ପରବର୍ତ୍ତୀ ସମୟରେ ଲକ୍ଷ୍ୟ କରାଯାଇଛି ଯେ କାର୍ତ୍ତିକ ଦାସଙ୍କର 'ରୁକ୍ମିଣୀ ବିଭା', ପ୍ରତାପ ରାୟଙ୍କ 'ଶଶିସେଣା', ପଦ୍ମନାଭ ଶ୍ରୀଚନ୍ଦନଙ୍କ 'ଶଶୀରେଖା', ଲୋକନାଥ ବିଦ୍ୟାଧରଙ୍କ 'ଚନ୍ଦ୍ରକଳା,' ରଘୁନାଥ ହରିଚନ୍ଦନଙ୍କ 'ଲୀଳାବତୀ' ଓ ଧନଞ୍ଜୟ ଭଞ୍ଜଙ୍କ 'ରତ୍ନମଞ୍ଜରୀ' କାବ୍ୟଗୁଡ଼ିକର ବିଭିନ୍ନ ଛାନ୍ଦ 'ଉଷାଭିଳାଷ' କାବ୍ୟର କେତୋଟି ଛାନ୍ଦର ରାଗରେ ଗାଇବାକୁ ନିର୍ଦ୍ଦେଶ ଦିଆଯାଇଛି । ସୁତରାଂ 'ଉଷାଭିଳାଷ' କାବ୍ୟର ଲୋକପ୍ରିୟତା ରହି ଆସିଛି, ଏଥିରେ ସନ୍ଦେହ ନାହିଁ ।

ମଧ୍ୟଯୁଗୀୟ କବିମାନଙ୍କ ମଧ୍ୟରେ ଅନ୍ୟତମ ଲବ୍ଧପ୍ରତିଷ୍ଠ କବି ହେଉଛନ୍ତି ନରସିଂହ ସେଣ ଓ ତାଙ୍କର 'ପରିମଳା' କାବ୍ୟଟି ଏକ ଉଚ୍ଚକୋଟୀର ସର୍ଜନା । ଏହା ଚବିଶ ଛାନ୍ଦ ବିଶିଷ୍ଟ ଏକ କାଳ୍ପନିକ କାବ୍ୟ । 'ପରିମଳା' କାବ୍ୟର ପଞ୍ଚମ ଛାନ୍ଦକୁ ଅର୍ଜ୍ଜୁନ ଦାସଙ୍କ 'ରାମବିଭା' କାବ୍ୟର ତୃତୀୟ ଛାନ୍ଦର ବାଣୀରେ ଗାଇବା ପାଇଁ ନିର୍ଦ୍ଦେଶ ରହିଛି । କବି ନରସିଂହ ସେଣ ଗୌଡ଼ୀୟ ବୈଷ୍ଣବ ଥିଲେ । ସେ ଥିଲେ କୃଷ୍ଣୋପାସକ । କବି କାବ୍ୟର ପ୍ରାରମ୍ଭରେ ଯମୁନାପୁଳିନ ବିହାରୀ ଶ୍ରୀକୃଷ୍ଣଙ୍କର ଜୟଗାନ କରିଛନ୍ତି –

"ଜୟ ତୁ ଜୟ ପ୍ରଭୁଂ ବନମାଳୀ
ଯମୁନାତୀରେ ଯେ କରନ୍ତି କେଳି ।"×××
ଗୋପଯୁବତୀ ଜନ ମନୋହାରୀ
କୁଚ କଳସ ସୁପୁଲକକାରୀ ।" (ପ୍ରଥମଛାନ୍ଦ)

କବି ଓଡ଼ିଆ ଭାଷାରେ କାବ୍ୟ ପ୍ରଣୟନ କରିଥିବାରୁ ନମ୍ରତାର ସହ ଲେଖିଛନ୍ତି –

"ଦେଶ ଭାଷାରେ ମୁଁ ଗୀତ ରଞ୍ଚିଲଇ ସବୁଙ୍କର ବୁଝିବାପାଇଁ
ଯେଥକୁ ମନ୍ଦ ବୋଲି କେହି ନ ବୋଲିବ ଦୋଷ ମୋର କିଛି ନାହିଁ ।"

କାବ୍ୟର ନାୟିକା 'ପରିମଳା'। ତେଣୁ ନାୟିକାର ନାମାନୁସାରେ କାବ୍ୟର ନାମକରଣ। କାଞ୍ଚିନଗରାଧିପତି ଭଦ୍ରେଶ୍ୱରଙ୍କ ପରମ ରୂପବତୀ କନ୍ୟା ପରିମଳା । କାବ୍ୟର ନାୟକ ହେଉଛନ୍ତି ଧର୍ମବତୀ ନଗରାଧିପତି ବିକ୍ରମକେଶରୀ ଓ ପଟ୍ଟମହିଷୀ ସୁଶୀଳାଙ୍କ ପୁତ୍ର ମକରକେତୁ । ପରିମଳା ପୂର୍ବଜନ୍ମରେ ତିଳୋତ୍ତମା ନାମ୍ନୀ ଅପ୍ସରୀ ଥିଲେ । ସେ ଇନ୍ଦ୍ରଙ୍କ ଅଭିଶାପରୁ ପରିମଳା ରୂପରେ ଜନ୍ମଗ୍ରହଣ

କରିଥିଲେ । କାବ୍ୟଟିରେ କବି ଦୁଇଜଣ ନାୟକର ପରିକଳ୍ପନା କରିଛନ୍ତି, ଜଣେ ସ୍ୱର୍ଗର ଗନ୍ଧର୍ବ ଏବଂ ଅନ୍ୟ ଜଣକ ହେଉଛନ୍ତି ମକରକେତୁ । ପରିମଳା ପୁଷ୍ପବତୀ ହେବାପରେ ସ୍ୱର୍ଗର ଗନ୍ଧର୍ବ ପରିମଳା ସହିତ ରତିକ୍ରୀଡ଼ା କରିବାକୁ ଲାଗିଲେ । ଏହାପରେ ମକରକେତୁ ଓ ପରିମଳା ସହ ବିବାହ ସମ୍ପନ୍ନ ହେଲା। ମାତ୍ର ପୂର୍ବରୁ ଗନ୍ଧର୍ବ ପରିମଳାଠାରୁ ଶପଥ କରାଇ ନେଇଥିଲେ ଯେ ସେ ସ୍ୱର୍ଗରୁ ଗନ୍ଧର୍ବଙ୍କ ବାର୍ତ୍ତା ନ ପାଇବା ପର୍ଯ୍ୟନ୍ତ ତାଙ୍କ ସ୍ୱାମୀଙ୍କ ତାଙ୍କ ଅଙ୍ଗ ସ୍ପର୍ଶ କରିପାରିବେ ନାହିଁ । ତେଣୁ ବିବାହ ପରେ ମକରକେତୁ ଓ ପରିମଳା ପୃଥକ୍ ପୃଥକ୍ ଶୟନ କଲେ । ଏହାପରେ ମକରକେତୁ ସିଦ୍ଧ ଜ୍ଞାନାନନ୍ଦ ନାମକ ଯୋଗୀଙ୍କୁ ସନ୍ତୁଷ୍ଟ କରି ସେହି ଯୋଗୀ ପ୍ରଦତ୍ତ ମନ୍ତ୍ର ବଳରେ ସ୍ୱର୍ଗକୁ ଗମନ କଲେ ଏବଂ ଫେରିଆସି ପରିମଳାକୁ ସ୍ୱର୍ଗର ସନ୍ଦେଶ କହିବାରୁ ପରିମଳା ଗନ୍ଧର୍ବଙ୍କୁ ସମ୍ପୂର୍ଣ୍ଣ ଭୁଲିଗଲେ । ଏହାପରେ ମକରକେତୁ ଓ ପରିମଳାର ଦାମ୍ପତ୍ୟ ମିଳନର କଥା ବର୍ଣ୍ଣିତ । ଏହି କାବ୍ୟଟିରେ ନାୟକ ଓ ନାୟିକାର ରତିକ୍ରୀଡ଼ା ଖୋଲାଖୋଲି ଭାବରେ ବର୍ଣ୍ଣିତ । ଏହି କାବ୍ୟର ପ୍ରଧାନ ବିଶେଷତ୍ୱ ଏହି ଯେ ଏଥିରେ ପ୍ରକୃତି ବର୍ଣ୍ଣନା ଓ ଋତୁମାନଙ୍କର ବର୍ଣ୍ଣନା ବେଶ୍ ସାର୍ଥକ ଓ ମନୋଜ୍ଞ । ଯଥା; ଗ୍ରୀଷ୍ମଋତୁ ବର୍ଣ୍ଣନା କରିବାକୁ ଯାଇ କବି ଲେଖିଛନ୍ତି –

"ଯେଥିଦିନ ଅବଶେଷ ଗ୍ରୀଷ୍ମଋତୁ ପରବେଶ
ଧୂସର ଦିଶିଲା ଦିଶ ମହୀ ଆକାଶ ଯେ
ଶିରୀଷ କୁସୁମଫୁଟେ ବାସ ପବନ ପ୍ରକଟେ
ପାଟଳ ସଙ୍ଗତେ ମିଳି ମଧୁପକେଳି ଯେ ।
ଶୁଖିଲା ସରିତ ସର ପ୍ରଚଣ୍ଡ ଚଣ୍ଡ ସମୀର
ଝିଙ୍କାରୀ ଝଙ୍କାରଧ୍ୱନି ପୁରେ ମେଦିନୀ ଯେ
ବିରହିଣୀ ଜନ ବଧ କାରଣେ ମେଦିନୀ କ୍ରୋଧ
ହୋଇଣ କଲା ତା ଜାତ ମଣି ସାକ୍ଷାତ ଯେ ।"

(ଚତୁର୍ଦ୍ଦଶ ଛାନ୍ଦ)

ସେହିପରି ପଞ୍ଚଦଶ ଛାନ୍ଦରେ ବର୍ଷାଋତୁ ବର୍ଣ୍ଣନା, ଷୋଡ଼ଶ ଛାନ୍ଦରେ ଶରତ ବର୍ଣ୍ଣନା ଅତ୍ୟନ୍ତ ବାସ୍ତବ ହୋଇଛି । ସପ୍ତଦଶ ଛାନ୍ଦରେ ହିମଋତୁର ବର୍ଣ୍ଣନା ବେଶ୍ ସରସତା ଲାଭ କରିଛି । କବିଙ୍କ ଭାଷାରେ –

"ପ୍ରବେଶ ହୋଇଲା ଆସି ହିମଋତୁ
ଉତ୍ତରୁ ବହନ ବହେ
ଦିବସ ତୁଟି ନିଶି ଭାଗ ବଢ଼ିଲା
ବିପତ୍ତି ପଦ୍ମ ନିବହେ ।
ଚନ୍ଦନ ଗନ୍ଧକ- ର୍ପୂରପନୀରରୁ
ଆଦର ମାନ ସରିଲା
ଶରଧା ବଳିଲା ବହୁତ ବସନେ
ବନ୍ଧୂଲୀ ରଙ୍ଗ ତୁଟିଲା ।
ଅଗ୍ନିକି ବହୁତ ଆଦର ବଢ଼ିଲା
ଜଳକୁ ଅନଳ ଭୟେ
ଘନ ଜଘନୀତୁ- ଙ୍ଗସ୍ତନୀ ବିନୁ ଯେ
ଶୀତକୁ ନାହିଁ ଉପାୟେ ।" (ସପ୍ତଦଶ ଛାନ୍ଦ)

ଶୀତଋତୁର ବର୍ଣ୍ଣନା କରିବାକୁ ଯାଇ କବି ଲେଖିଛନ୍ତି –

"ଯେମନ୍ତେ ହିମ ବିକାଶ ଶିଶିର ଆସି ପ୍ରବେଶ
ଥୋକାଏ ନିଉନ ଶୀତ, ବୃକ୍ଷେ ଅସିତ ଯେ ।
ଶିଶିର ଅଗ୍ନି ପଡ଼ିଲା ନଳିନ ବନ ପୋଡ଼ିଲା
କୁହୁଡ଼ି ଦିଶ ପୂରିଲା, ମହୀଫାଟିଲା ଯେ ।
ଫୁଟିଲେ କୁସୁମ ମାନେ ନୀରସ ଦିଶିଲେ ବନେ
ରବି ଅଗ୍ନିକୋଣେ ଦିଶି ତୁଟିଲେ ନିଶି ଯେ ।
ଚନ୍ଦ୍ର କିରଣେ ଆଦର ନ କଲେ କେହୁସି ନର
ଲୋକେ ପ୍ରୟାଗେ ପ୍ରବେଶ, ପାଚିଲେ ଶସ୍ୟ ଯେ ।"
(ଅଷ୍ଟାଦଶ ଛାନ୍ଦ)

ବସନ୍ତର ଚାରୁଚିତ୍ର ବର୍ଣ୍ଣନା କବିଙ୍କ ରଚନାରେ ବେଶ୍ ରୁଚିପୂର୍ଣ୍ଣ ଓ ପ୍ରାକୃତିକ ପରିମନେହୁଏ । କବି ଲେଖିଛନ୍ତି –

"ନାନାବିଧ ମତେ ତହୁଁ ତରୁଲତାଗଣେ
କାହିଁ ନବ ପଲ୍ଲବ କାହିଁ କୁସୁମ ଜନ୍ମେ ।
ମୁକୁଳି ଅଛନ୍ତି କାହିଁ ପଲ୍ଲବିତ କାହିଁ
ସୁରଙ୍ଗ ବର୍ଣେ ଦିଶେ ନବ ପଲ୍ଲବେ ତହିଁ ।

ଘନ ହୋଇ ଲାଗିଛି ବିବିଧ ବର୍ଣ୍ଣେ ତରୁ
ଫଳ ଭରେ କେହୁ ପୁଣ ହୋଇଛନ୍ତି ଗରୁ ।
ଫଳ ଭରେ ପୂରିତ ସେ ବୃକ୍ଷଙ୍କର ମେଳ
କୁସୁମର ମଧୁପାନେ ମଧୁକର ମେଳ ।
କୁସୁମ ଖସିପଡ଼ନ୍ତି ପୁଣି ମହୀତଳେ
ବୃକ୍ଷ ବୃଷ୍ଟି କରନ୍ତି ମକରନ୍ଦ ଗହଳେ ।" (ଊନବିଂଶ ଛାନ୍ଦ)

ମନେହୁଏ ପରବର୍ତ୍ତୀକାଳର ରୀତିକବିମାନେ ପ୍ରକୃତିଚିତ୍ରଣ ଓ ଋତୁବର୍ଣ୍ଣନା ପ୍ରସଙ୍ଗରେ ନରସିଂହ ସେଣଙ୍କ ଦ୍ୱାରା ପ୍ରଭାବିତ ହୋଇଛନ୍ତି ନିଶ୍ଚୟ ।

ମଧ୍ୟଯୁଗର ଅନ୍ୟତମ କବି ହେଉଛନ୍ତି ବିଷ୍ଣୁଦାସ । ବିଷ୍ଣୁଦାସ ୧୫୮୦ ଖ୍ରୀ.ରୁ ୧୬୧୦ ଖ୍ରୀ. ମଧ୍ୟରେ ଆବିର୍ଭୂତ ହୋଇଥିଲେ ବୋଲି କେଦାରନାଥ ମହାପାତ୍ର ଉଲ୍ଲେଖ କରିଛନ୍ତି । ବିଷ୍ଣୁଦାସ ପ୍ରଥମେ ରଣପୁରର ରାଜା ପଦନ ନରେନ୍ଦ୍ରଙ୍କ ପୁତ୍ର ପାର୍ଥଶ୍ରୀଚନ୍ଦନଙ୍କ ସଭାକବି ଥିଲେ ଓ ପରେ ବାଣପୁର ଯାଇ ସେଠାରେ ରାଜା ରାଘୁନାଥରାଜହରିଚନ୍ଦନଙ୍କ ରାଜସଭା ମଣ୍ଡନ କରିଥିଲେ । 'ପ୍ରେମଲୋଚନା' କାବ୍ୟଟି ବିଷ୍ଣୁଦାସଙ୍କର ମହାନ୍ କୀର୍ତ୍ତି । ବିଂଶ ଛାନ୍ଦ ବିଶିଷ୍ଟ ଏହି କାବ୍ୟଟି ଏକ ରସାଳ ଓ ଉତ୍କୃଷ୍ଟ କାବ୍ୟକୃତି । କାବ୍ୟର ନାୟକ ମଧୁବତୀପୁରର ରାଜକୁମାର ସୁଧାକର ଓ ନାୟିକା ପଦ୍ମକର ରାଜ୍ୟର ରାଜକୁମାରୀ ପ୍ରେମଲୋଚନା । ଉଭୟଙ୍କ ମଧ୍ୟରେ ଅନୁରାଗ, ମିଳନ, ବିରହ ଓ ପୁନର୍ମିଳନ କାବ୍ୟଟିର ଉପଜୀବ୍ୟ । କାବ୍ୟଟିରେ ହଂସୀକୁ ଦୂତ ଭାବରେ ଗ୍ରହଣ କରାଯାଇଛି । ହଂସୀ ରାଜକୁମାରୀଙ୍କୁ ମୁଦ୍ରିକା ପ୍ରଦାନ କରିବା ଏବଂ ରାଜକୁମାରଙ୍କ ନିକଟରେ ପହଞ୍ଚି ପ୍ରେମଲୋଚନାର ସ୍ୱୟମ୍ବର ସଂବାଦ ଓ ତାଙ୍କୁ ବରରୂପେ ବରଣ କରିବାପାଇଁ ରାଜକୁମାରୀଙ୍କ ପ୍ରତିଜ୍ଞା ବିଷୟ ବର୍ଣ୍ଣିତ ହୋଇଛି । ଉଭୟ ଭାଷା ଓ ଭାବ ଦୃଷ୍ଟିରୁ 'ପ୍ରେମଲୋଚନା' ଏକ ଉତ୍ତୀର୍ଣ୍ଣ କାବ୍ୟ । ଏହି କାବ୍ୟ ସମ୍ପର୍କରେ କେଦାରନାଥ ମହାପାତ୍ର କହିଛନ୍ତି – "ଉତ୍କଳର ସଂସ୍କୃତଜ୍ଞ କବି ପଣ୍ଡିତମାନେ ସ୍ୱୀୟ ମାତୃଭାଷା ଓଡ଼ିଆରେ କାବ୍ୟରଚନା କରିବାପାଇଁ ମନ ବଳାଇବା ଫଳରେ ଓଡ଼ିଆ ରଚନାଶୈଳୀ ଓ କଥାବସ୍ତୁର ଅବତାରଣାରେ କିପରି ସ୍ୱତଃ ପରିବର୍ତ୍ତନ ଘଟିଥିଲା, ବିଷ୍ଣୁଦାସଙ୍କ ଆଲୋଚ୍ୟ ପ୍ରେମଲୋଚନା କାବ୍ୟ ତାହାର ଏକ ପ୍ରକୃଷ୍ଟ ନିଦର୍ଶନ ।"

କାବ୍ୟର ପ୍ରଥମ ଛାନ୍ଦରେ କବି ନୀଳଗିରିପତି ଶ୍ରୀଜଗନ୍ନାଥଙ୍କୁ ବନ୍ଦନା କରି କାବ୍ୟର ସୁପରିସମାପ୍ତି ପାଇଁ ତାଙ୍କଠାରେ ଶରଣାପନ୍ନ ହୋଇଛନ୍ତି । କବି ଗାଇଛନ୍ତି–

"ଜୟତୁ ଜୟ ଜଗନ୍ନାଥ ନୀଳଗିରିବର ସ୍ଥିତି
କରୁଣାସାଗର କମଳାପତି କମଳଦଳଲୋଚନା କୃତି ।
ଅଘ ଅନ୍ଧାର ପୂର୍ଣ୍ଣଚନ୍ଦ୍ର ମୁଖ ଯୋଗୀଜନଙ୍କ ହୃଦୟସୁଖ
ଭକ୍ତ ଜନଙ୍କ ଭଗ୍ନଜନ୍ମରୂପ ଅତିସଙ୍କୁଳ ଅମଳ ତାପ ।
ମାନସ ସରସିଜ ମଧୁକର ମାନସମୁଦ ମୁନିଜନର
ଶରଣ ତାରଣ ବାନା ଉଦେ ଯାର ଶରଣ ପଶିଛି ଆପଦ ହର । xxx
ଶରଣ ପଶି ମୁଁ ବିଷ୍ଣୁଦାସ ପ୍ରେମଲୋଚନା ବିଳାସରସ ।"

ନାୟିକା 'ପ୍ରେମଲୋଚନା'ର ଯୌବନ ବର୍ଣ୍ଣନା କରିବାକୁ ଯାଇ କବି ଲେଖିଛନ୍ତି –

"ଯେଥୁ ଅନନ୍ତରେ ରୀତି ଶୁଣ ସାଧୁଜନ
ପ୍ରେମଲୋଚନାର ଯଉବନର ବିଧାନ ।
ଦଶ ବରଷ ବଳିଲା ଦ୍ୱିରଦଗମନୀ
ପୁଷ୍ପ ସମୟ ଲଭିଲା ପଙ୍କଜ ନୟନୀ ।
ସେଦିନୁ କୁସୁମଧନୁ ବଶ ହୋଇ ବାଳା
କାମ ସାହିତ୍ୟ ପଠନେ ମନ ବଳାଇଲା ।
ସପ୍ରେମ ବଢ଼ଇ ଯେବେ ସାହିତ୍ୟର ରସେ
ପୁଲକ କୁଶଳ ତନୁ ପ୍ରବଳ ଉଲ୍ଲାସେ ।
ପୁଲକଇ ଉଞ୍ଚ ସଞ୍ଚ କୁଚ ମଧ୍ୟ ତାର
ହୁଅଇ ସଧୀର ମନ କି କିସ ପ୍ରକାର ।
ଜାନୁଯେବେ ଉଲ୍ଲସଇ ମାରଇ ଶ୍ରୀକର
ଜାଣନ୍ତି ନିପୁଣ ସଖୀ ବିକାର ବେଭାର । xxx
ବସନ ପିନ୍ଧିଣ ପୁଣ କୁଚକୁ ଦେଖଇ
ସଙ୍ଗ ସଖୀଜନଙ୍କର ଛଟକ ଶିଖଇ ।
ପୁଣି ପାଲଟି ଦେଖଇ ସୁନୀବି ବନ୍ଧନ
ଦର୍ପଣ ଥୋଇ ଛାମୁରେ ରଞ୍ଜଇ ଅଞ୍ଜନ । xxx

ଚୁମ୍ବନ ବିକାରେ ଗୋଜ୍ଞ କରି ଓଷ୍ଠ ବେନି
ସେ ଶୋଭା ଦେଖି ହରଷ ହରିଣଲୋଚନୀ ।
ହୃଦରୁ ବସନ କାଢ଼ି ଦେଖଇ ଉରଜ
ମନରେ ପ୍ରତ୍ୟକ୍ଷ କରି ରଖଇ ମନୋଜ ।" (ତୃତୀୟ ଛାନ୍ଦ)

ସଖୀମାନଙ୍କ ମେଳରେ ପ୍ରେମଲୋଚନାର ସରୋବରରେ ପ୍ରବେଶ ଦୃଶ୍ୟକୁ କବି ନିମ୍ନ ମତେ ବର୍ଣ୍ଣନା କରିଛନ୍ତି –

"ଜଳରେ ପଶିଲା ଯୁବା ଜଳଜଲୋଚନୀ
ସଙ୍ଗତେ ପଶିଲେ ତାର ପ୍ରିୟସଖୀଜନୀ ଯେ ।
ଜଳରେ ଜଳଜ ମୁଖୀ ଦିଶିଲା ଶୋଭନ
ଜଳଜସ୍ଥାନି ହୋଇଣ ମୋହକଲା ମନ ସେ ।
ଅମ୍ବୁଜ ଅମ୍ବୁରୁହରେ ପୂର୍ଣ୍ଣ ପରକାଶି
ଅମର ଅମରବର ଅହିଧର ତୋଷି ଯେ ।
କଳଙ୍କ କସ୍ତୁରୀ ଚିତା ଅଞ୍ଜନ ଶୋଭନ
ହରଷେ ହରଇ ମୁନିଜନଙ୍କର ମନ ଯେ ।
ଜଳ ଜଳ ନିଧିମତ କୁଚ ଗିରିବର
କଉକ୍ଷେୟ ରଜ୍ଜୁକି ମନ୍ଥଇ ପାରାବାର ଯେ ।" (ଚତୁର୍ଥ ଛାନ୍ଦ)

ପୁଷ୍କରିଣୀରେ ସ୍ନାନ ପରେ ନାୟିକା ପ୍ରେମଲୋଚନା କୂଳକୁ ଆସି ତା' ବେଶ ପରିପାଟୀ ଧାରଣ କରିବା ଦୃଶ୍ୟକୁ କବି ନିମ୍ନମତେ ବର୍ଣ୍ଣନା କରିଛନ୍ତି –

"ଚିକୁରରେ ବିନ୍ଦୁ ବିନ୍ଦୁ ହୋଇ ଜଳମାନ
କିବା ନୀଳଚାମରେ ଗୁନ୍ଥିଲାମୋତି ଘନ ଯେ ।
ମୁଖ ଚନ୍ଦ୍ରଶ୍ରୀ ଉଦୟ ଦେଖିକି ତିମିର
ତାପ କରି ନୟନରୁ ବହୁଅଛି ନୀର ଯେ ।
ମାନବତୀ ହୋଇଛି କି ନିଶି ସୁଲକ୍ଷଣୀ
ପୋଛିଲା ବସନେ କେଶ ନବୀନା ତରୁଣୀ ଯେ ।
ରଙ୍ଗପଟନୀ ପିନ୍ଧିଲା ଲୁଚି ଉର ସନ୍ଧି
ମନସିଜ ଗୃହ କି ମଣ୍ଡିଲା କରି ସିନ୍ଧି ଯେ ।

ନୀବି ବନ୍ଧନ ବାନ୍ଧିଲା ପୁଂସ ମନହରି
ଭାଗ୍ୟବନ୍ତ ନାୟକର କରଲକ୍ଷ୍ମୀ ଧରି ଯେ ।
ସ୍ତନବେନି ଉପରେ ଦିଶିଲା ମହାଶୋଭା
ମଦନରାୟେ କି ସାଙ୍ଗୀଘର କଲେ ଉଭା ।" (ଚତୁର୍ଦ୍ଦଶ ଛାନ୍ଦ)

ସେହିପରି ଏହି କାବ୍ୟରେ ବସନ୍ତ ବର୍ଣ୍ଣନା ବେଶ୍ ମଞ୍ଜୁଳ ଓ ରଙ୍ଗୀନ ହୋଇପାରିଛି –

"ଯେମନ୍ତେ ବସନ୍ତ ପ୍ରବେଶେ ରାଜନ ଜଗତୀରେ କରି ବିଜୟେ
ଦରଶେ ଦିଗନ୍ତପୁର ସମନ୍ତତ ମନେ ଆନନ୍ଦ ଜାତ ହୋୟେ
ଦେଖନ୍ତି, ଗୃହ ଗୃହକେ ପୁର ଶୋଭା
ଉତ୍ତମ ଆରାମ ଅତି ମନୋରମ କୁଙ୍ଗୀମ ମୁନିମନ ଲୋଭା ।
ଦିଶେ ଦିଶେ ଦିଶେ ଦିବ୍ୟ କିଂଶୁକାଦି ଅରୁଣମୟ ବିରାଜଇ
ପୃଥିବୀ ଦେବୀର ଅନୁରାଗ କିସେ ଦଶଦିଗରେ ପ୍ରକାଶଇ
ଶୋଭିତ, ଶାଲ୍ମଳୀ ତୁଙ୍ଗ ମହୀରୁହ
ନାଗେଶ୍ୱର କାମ କନକ କୋଦଣ୍ଡ ବିରହୀଜନ ଅଙ୍ଗଦାହ ।
କେତକୀ ନିକଟେ ଛୁରିଅନା ତରୁ କୁସୁମେ ପାଉଛି ଶୋଭନ
ଛୁରିଅନା ବୋଲି କେତକୀ କତି କି ଦେଖାଉଛି ମୀନକେତନ
ମଲ୍ଲିକା, ମନୋରମ ଫୁଟି ଲୋଟନ୍ତି
ମନସିଜ ମନସିଜ ଯଶ ପ୍ରକାଶ ମଧୁଲିଟମାନେ କହନ୍ତି ।
ବାସନ୍ତୀ ବାସନ୍ତି ମନ୍ଦ ମନ୍ଦ ବାତେ ମୋହ କରନ୍ତି ମୁନିଜନ
ନବମାଳିକା ଜାଳିକା କଢ଼ିକୁନ୍ଦ ରସବତୀ ନିତ୍ୟବିଧାନ
ପୁରରେ, ବସନ୍ତ ଉତ୍ସବ ହୋଇଛି
ପଟ୍ଟ ପଟବାସ ପଟଳ ପ୍ରକାଶ ପଦ୍ମାବତୀ ପଥପୂରିଛି ।"

(ଦଶମଛାନ୍ଦ)

'ପ୍ରେମଲୋଚନା' ବ୍ୟତୀତ କବି ବିଷ୍ଣୁଦାସ 'ସୁମୁଖୀ ଚଉତିଶା', 'ବର୍ଷାଭାବନା ଚଉତିଶା' 'ମନ୍ଦାକିନୀ ଚଉତିଶା', 'ମାଲ୍ୟବନ୍ତ ଚଉତିଶା' ପ୍ରଭୃତି ରଚନା କରିଥିଲେ ।

'ଚାଟଇଚ୍ଛାବତୀ'ର କବି ବନମାଳୀଦାସ ଷୋଡ଼ଶ ଶତାବ୍ଦୀର ଶେଷଭାଗରେ ଜୀବିତ ଥିଲେ । ସେ ରଣପୁର ମଝିଆଁଖଣ୍ଡ ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । କବି ବନମାଳୀ ରଣପୁରର ରାଜା ପଦ୍ମନାଭ ନରେନ୍ଦ୍ର ଓ ତାଙ୍କ ସାନଭାଇ ପୁରୁଷୋତ୍ତମ ମଙ୍ଗରାଜଙ୍କ ସମସାମୟିକ ଥିଲେ । 'ଚାଟଇଚ୍ଛାବତୀ' ଏକ କାଳ୍ପନିକ କାବ୍ୟ । ଦର୍ପକଦେଶର ରାଜକୁମାର ଚାରୁବ୍ରହ୍ମ ଓ ଭୋଜରାଜାଙ୍କ କାନ୍ୟା ଇଚ୍ଛାବତୀ ଉଭୟଙ୍କ ପରିଚୟ ଚାଟଶାଳୀରେ ହୁଏ । କ୍ରମେ ସେହି ପରିଚୟ ଆହୁରି ନିବିଡ଼ ହୋଇଛି ଏବଂ ଉଭୟେ ପରସ୍ପର ପ୍ରଣୟ ପାଶରେ ଆବଦ୍ଧ ହୋଇଛନ୍ତି । ଶେଷରେ ଭୋଜରାଜଙ୍କ ସମ୍ମତିକ୍ରମେ ଚାରୁବ୍ରହ୍ମ ଓ ଇଚ୍ଛାବତୀର ବିବାହ ସମ୍ପନ୍ନ ହୋଇଛି । ଏଥିରେ ଛଅଟି ଛାନ୍ଦ ରହିଛି । କାବ୍ୟଟିରେ ସମ୍ଭୋଗ ଶୃଙ୍ଗାରର ଚିତ୍ର ନାହିଁ । କାବ୍ୟଟିର ପ୍ରାରମ୍ଭରେ କବି ବନମାଳୀ ଦାସ ଗଣେଶଙ୍କୁ ବନ୍ଦନା କରିଛନ୍ତି –

"ବନ୍ଦଇ ଯେ ଗଣପତି ଗଉରୀ ନନ୍ଦନ
କପୋଳେ ଶୋଭଇ ତୋର ଶ୍ରୀଖଣ୍ଡ ଚନ୍ଦନ ।
ଦକ୍ଷିଣ ଦ୍ୱାରେଣ ତୁ ସର୍ବଦାଂ ଅଧିପତି
ସୁମରନ୍ତେ ବିଘ୍ନ ତୁ ନିବାରୁ ଗଣପତି ।
ସଦାଶିବ ତାତ ତୁମ୍ଭ ପାର୍ବତୀ ନନ୍ଦନ
ମୋତେ ତୁ ପ୍ରସନ୍ନ ହୁଅ ବିଘ୍ନେଶ୍ୱର ପୁଣ ।
ଚାଟଇଚ୍ଛାବତୀ କଥା କହିବାକୁ ଇଚ୍ଛାଂ
ପ୍ରସନ୍ନେ ସାରଳା ତୁ ପୁରାଅ ମନବାଞ୍ଛା ।"

କାବ୍ୟଟିର ଛଅଟି ଛାନ୍ଦରେ ଯଥାକ୍ରମେ ମଙ୍ଗଳଗୁଜ୍ଜରୀ, ବରାଡ଼ୀ, ଆଷାଢ଼ଶୁକ୍ଳ, କେଦାର, ମଙ୍ଗଳଗୁଜ୍ଜରୀ ଓ ଚିନ୍ତାଦେଶାକ୍ଷ ରାଗ ବ୍ୟବହୃତ । କାବ୍ୟଟିର ଭାଷା ସରଳ, ସହଜ ଓ ଚିତ୍ତାକର୍ଷକ । ସ୍ଥାନେ ସ୍ଥାନେ ପ୍ରାଚୀନଶବ୍ଦର ପ୍ରୟୋଗ ଦେଖିବାକୁ ମିଳେ । ଏହି କାବ୍ୟର ପ୍ରଭାବ ପରବର୍ତ୍ତୀକାଳରେ କବି ଧନଞ୍ଜୟ ଓ ପଦ୍ମନାଭ ହରିଚନ୍ଦନଙ୍କୁ ପ୍ରଭାବିତ କରିଛି ।

ଏହି ସମୟରେ ରଣପୁରର ରାଜା ପଦ୍ମନାଭ ନରେନ୍ଦ୍ରଙ୍କ ପୁତ୍ର ପାର୍ଥ ଶ୍ରୀଚନ୍ଦନ ପିତାଙ୍କପରି ସାହିତ୍ୟାନୁରାଗୀ ଓ କବି ଥିଲେ । ପଦ୍ମନାଭ ନରେନ୍ଦ୍ର 'ପ୍ରଭାବତୀ' ନାମକ ଏକ କାଳ୍ପନିକ କାବ୍ୟ ଓ ଅନେକ ରାଧାକୃଷ୍ଣ ବିଷୟକ

ସଙ୍ଗୀତ ରଚନା କରିଥିଲେ । ପାର୍ଥ ଶ୍ରୀଚନ୍ଦନ 'କଳାବତୀ' ନାମରେ କ୍ଷୁଦ୍ର କାବ୍ୟ ରଚନା କରିଛନ୍ତି । ଏହା ସାତ ଛାନ୍ଦ ବିଶିଷ୍ଟ କାବ୍ୟ । ଏହି କାବ୍ୟରେ ଅଙ୍ଗଦେଶର ରାଜକୁମାରୀ 'କଳାବତୀ' ଓ ମଧୁବନ ନଗରର ରାଜକୁମାରଙ୍କ ପ୍ରଣୟ ଓ ବିବାହ ଅତ୍ୟନ୍ତ ଚମତ୍କାର ରୀତିରେ ବର୍ଣ୍ଣିତ । କବି କାବ୍ୟର ପ୍ରଥମ ଛାନ୍ଦରେ ପ୍ରଭୁ ଶ୍ରୀରାମଚନ୍ଦ୍ରଙ୍କ ସ୍ତୁତିଗାନ କରିଛନ୍ତି । ମୈନାକଶିଖର ବାସିନୀ ମଣିନାଗ ଦୁର୍ଗା ରଣପୁର ରାଜବଂଶର ଇଷ୍ଟଦେବୀ ଥିବାରୁ କାବ୍ୟରେ ପାର୍ଥଶ୍ରୀଚନ୍ଦନ ତାଙ୍କର ମଧ ସ୍ତୁତିଗାନ କରିଛନ୍ତି । ଏହି କାବ୍ୟର ଭାଷା ସରଳ, ସଂସ୍କୃତ ଭାଷା ପ୍ରଭାବରୁ ଅଧିକ ମୁକ୍ତ ।

ପ୍ରତାପ ରାୟ ସପ୍ତଦଶ ଶତାବ୍ଦୀ ପ୍ରଥମାର୍ଦ୍ଧର କବି । ତାଙ୍କ ଦ୍ୱାରା ରଚିତ 'ଶଶିସେଣା' କାବ୍ୟଟି ଚଉଦ ଛାନ୍ଦ ବିଶିଷ୍ଟ ରଚନା । ଅମରାବତୀ ରାଜ୍ୟର ରାଜା ବିକ୍ରମକେଶରୀଙ୍କ କନ୍ୟା ଶଶିସେଣା ଓ ମନ୍ତ୍ରୀ କୁଶଳରମଣଙ୍କ ପୁତ୍ର ଅହିମାଣିକ୍ୟଙ୍କ ମଧରେ ଅନୁରାଗ, ପ୍ରଣୟ, ବିଚ୍ଛେଦ ଓ ମିଳନ ଏହି କାବ୍ୟଟିର ମୁଖ୍ୟ ପ୍ରସଙ୍ଗ । କବି ହରିହର ନରେନ୍ଦ୍ର 'ମଦାଳସା' ନାମକ କାଳ୍ପନିକ ପ୍ରେମାଖ୍ୟାନମୂଳକ କାବ୍ୟର ସ୍ରଷ୍ଟା । ମାର୍କଣ୍ଡେୟ ପୁରାଣ ଅନ୍ତର୍ଗତ ମଦାଳସା ଉପାଖ୍ୟାନ ବା କୁବଳୀୟାଶ୍ୱ ଚରିତ ଅବଲମ୍ବନରେ କବି ହରିହର ନରେନ୍ଦ୍ର ଏହି କାବ୍ୟଟି ରଚନା କରିଥିଲେ । ଏହି କାବ୍ୟଟି ତ୍ରୟୋଦଶ ଛାନ୍ଦ ବିଶିଷ୍ଟ ରଚନା । ଏହି କାବ୍ୟର ନବମ ଛାନ୍ଦକୁ 'ରାମବିଭା'ର ଦଶମ ଛାନ୍ଦ ବାଣୀରେ ଗାଇବାକୁ ନିର୍ଦ୍ଦେଶ ଦିଆଯାଇଛି । କାବ୍ୟଟିରେ ସନ୍ଧ୍ୟାବର୍ଣ୍ଣନା ବେଶ୍ ରମଣୀୟ । ଯେପରି –

"ଏମନ୍ତେ ସମୟେ ରବି ଅସ୍ତକୁ ଗଲା
ଦଶଦିଶ ଅରୁଣିତବନ୍ତୀ ଦିଶିଲା ।
ମଧୁଲୋଭେ ମଧୁକର କମଳେ ଥିଲା
ମୁଦ୍ରିତ ହୋଇଲେ ତହିଁ ବନ୍ଦୀ ହୋଇଗଲା ।
ତରୁକୋଟରେ ରହିଲେ ଖଗ ନିକର
ପ୍ରଦୀପ ଅନଳେ ଦିଶେ ଅତି ରୁଚିର ।
ଯୁବତୀ ଜନକ ସଙ୍ଗେ ଅନଙ୍ଗ ଶର
ପ୍ରବେଶ ହୋଇଲା ସେ ସଧୀର ସଧୀର ।

ଦୂତୀକୁ ଘେନି ଭାଳନ୍ତି ଶଠ ପୁରୁଷ
ଅଭିସାରୀଙ୍କର ମନ ହୁଏ ଉଲ୍ଲାସ ।
ଏମନ୍ତେ ପ୍ରକାଶ ହେଲା ଇନ୍ଦୁ କିରଣ
ବିକାଶ ହୋଇବେ ବେଗେ କୁମୁଦଗଣ
ଚକୋରେ ଆନନ୍ଦେ କଲେ ଚନ୍ଦ୍ରିକା ପାନ
କାନ୍ତେ ସ୍ନେହ ବଳାଇଲେ ମାନିନୀ ମାନ ।" (ଦ୍ୱିତୀୟ ଛାନ୍ଦ)

ମଧ୍ୟଯୁଗୀୟ କବିମାନଙ୍କ ମଧ୍ୟରେ ଦେବଦୁର୍ଲ୍ଲଭ ଦାସ ଅନ୍ୟତମ ସ୍ମରଣୀୟ ପ୍ରତିଭା । ତାଙ୍କ ପ୍ରଣୀତ 'ରହସ୍ୟମଞ୍ଜରୀ' କାବ୍ୟରେ ଗୋପୀ – କୃଷ୍ଣପ୍ରେମର ଅଲୌକିକ ଚିତ୍ରଣ ରହିଛି । କବି ଏଥିରେ ଗୋପୀପ୍ରେମର ଶ୍ରେଷ୍ଠତା ପ୍ରତିପାଦନ କରିଛନ୍ତି । ଯଥା –

"ଚାରିଭକ୍ତି ମଧ୍ୟେ ପ୍ରେମ ଭକ୍ତି ଅଟେ ସାର
ସେ ଭକ୍ତି ଅଟଇ କୋଠ ଗୋପୀମାନଙ୍କର ଗୋ ।
ଗୋପୀଙ୍କି ଭଜିଲା ଭକ୍ତ ପ୍ରେମଭକ୍ତି ପାଇ
ବିନାପ୍ରେମ ଭକ୍ତିରେ ଦର୍ଶନମୋତେ ନାହିଁ ଗୋ ।"

ଚବିଶ ଛାନ୍ଦ ବିଶିଷ୍ଟ ଏହି କାବ୍ୟଟି ଏକ ମନୋଜ୍ଞ କୃତି । ଏଥିରେ ଐଶ୍ୱର୍ଯ୍ୟଲୀଳା ଅପେକ୍ଷା ମାଧୁର୍ଯ୍ୟ ଲୀଳାର ଶ୍ରେଷ୍ଠତା ପ୍ରତିପାଦିତ । ଏଥିରେ କବିଙ୍କ ବର୍ଣ୍ଣନାପାଟବ ବେଶ୍ ଉଚ୍ଚକୋଟୀର । ଦୃଷ୍ଟାନ୍ତସ୍ୱରୂପ, ନର୍ତ୍ତକୀମାନଙ୍କ ନୃତ୍ୟ ପ୍ରଦର୍ଶନ କବିଙ୍କ ଲେଖନୀରେ ନିମ୍ନ ଭାବରେ ବର୍ଣ୍ଣିତ –

(କ) "ହେଉ ଦେଖିବା ବୋଲି ପ୍ରଭୁବୋଇଲେ
ଅର୍ଦ୍ଧନୀ ରଞ୍ଜିଲା ନୃତ୍ୟ
ଚିବୁକେ ତର୍ଜନୀ କଟି କରେ ଦେଇ
ଭ୍ରମିଲା ଚକ୍ରେ ଯେମନ୍ତ ।
ବିଚିତ୍ର ଗତି ଆଡ଼ ଚିତି ମାରିଣ
ଗଗନେ ପଶିଲା ଯାଇଁ
ବିଜୁଳି ବେଗେ ଆକାଶୁଁ ଖସି ଖସି
ପାଦ ଝମକିଲା ଭୂଇଁ ।" (ନବମ ଛାନ୍ଦ)

କବି ଦେବଦୁର୍ଲ୍ଲଭ ବର୍ଷାଋତୁ ବର୍ଣ୍ଣନା ପ୍ରସଙ୍ଗରେ ଲେଖିଛନ୍ତି–

(ଖ) "ଘଡ଼ଘଡ଼ି ଉପରେ ପଡ଼ଇ ଚଡ଼ଚଡ଼ି
ଚଡ଼ଚଡ଼ି ଉପରେ ନିର୍ଘାତ ପଡ଼େ ମାଡ଼ି ।
ବିଜୁଳି ଝମକେ ଗୋ ଚମକି ଉଠେ ହିଆ
କେସନେ ବଞ୍ଚିବି ମୋର କୋଳେ ନାହିଁ ନାହା ।
କମଳିନୀ ବିଘଂସିଲେ ଅବନୀ ଉଲ୍ଲସି
ମାତିଲେ ମଣ୍ଡୂକେ ଯେ ଡାହୁକ ଡାକେ ମିଶି ।
ନଦୀ ଯୋଡ଼ ବଢ଼ିଲେ ଜଡ଼ିଲେ ସୁନାଗରୀ
ସୁବେଶ ଯୁବତୀ କାନ୍ତ ପଥ ଅନୁସରି ।" (ଦ୍ୱାଦଶଛାନ୍ଦ)

କବି ନିଜର କାବ୍ୟ ସଂପର୍କରେ ଲେଖିଛନ୍ତି–

"ରହସ୍ୟ ମଞ୍ଜରୀ ଏ ବିଚିତ୍ରମୟ ରସ
ଏ ସୁଖ ଜାଣିମ ଯେହୁ ବିବେକୀପୁରୁଷ
ଅବିବେକ ବୋଲିବ ଏ କେଉଁ ପାଠେ ଥିଲା
ଥିଲା ଯେବେ କବି କିମ୍ପା ଆଗହୁଁ ନ କଲା ।
ବିବେକୀ ବୋଲିବ ଏ ଗୁପତେ ଥିଲା ରହି
ସରସ୍ୱତୀଭଣ୍ଡାରେ ଗୁପତେ ଥିଲା ଥୋଇ ।"

ଏହି ସମୟରେ କବି ଦାଶରଥି ଦାସ 'ବ୍ରଜବିହାର' କାବ୍ୟ ରଚନା କରିଥିଲେ । ବ୍ରଜବିହାର କାବ୍ୟଟି ଦଶଗୋଟି ବୋଲୀରେ ବିଭକ୍ତ । କବି ଦାଶରଥି ଦାସ ଏହି କାବ୍ୟରେ ଗଦାଧର ସ୍ୱାମୀ, ଦାମୋଦର, ରାୟରାମାନନ୍ଦ, ନିତ୍ୟାନନ୍ଦ, ବକ୍ରେଶ୍ୱର ପଣ୍ଡିତ, ହରିଦାସ ପ୍ରଭୃତି ଗୌଡ଼ୀୟସନ୍ଥମାନଙ୍କ ପ୍ରତି ନମସ୍କାର ଜଣାଇଛନ୍ତି । 'ବ୍ରଜବିହାର' କାବ୍ୟରୁ ଜଣାଯାଏ ଯେ କବି ଜଣେ ଆଦର୍ଶ କୃଷ୍ଣ ଭକ୍ତଥିଲେ । କବି ଶ୍ରୀକୃଷ୍ଣଙ୍କ ବିବିଧ ଲୀଳାମଧ୍ୟରେ ନରଲୀଳାକୁ ଶ୍ରେଷ୍ଠ ବୋଲି ବିବେଚନା କରିଛନ୍ତି–

"ଶ୍ରୀକୃଷ୍ଣ ସଚ୍ଚିଦାନନ୍ଦ କାରଣ
ଗଜ ନିସ୍ତାରଣ ଭବ ତାରଣ
ତିନି ଶକ୍ତି ହେତୁ ଲୀଳା ବିଧାନ
ତଥି ମଧ୍ୟେ ନରଲୀଳା ପ୍ରଧାନ ।

ବ୍ରଜବିହାରେ ଗୋବିନ୍ଦ ଚରିତ
ବିଷ୍ଣୁପଦ ସଙ୍ଗୀ ଗଙ୍ଗା ସରିତ ।
ସ୍ନାନେ ପାନେ ଦରଶନେ ପବିତ୍ର
କର୍ଣ୍ଣେ ଆସ୍ୱାଦେ ନିସ୍ତାରେ ଜଗତ ।" (ପ୍ରଥମ ବୋଲୀ)

କବି ଧରଣୀଧର ମିଶ୍ର ଜୟଦେବଙ୍କ କୃତ 'ଗୀତଗୋବିନ୍ଦ'କୁ ଓଡ଼ିଆ ପଦ୍ୟାକାରରେ ରଚନା କରିଥିଲେ । କବି ଦାମୋଦର ଦାସ ରାଧା-କୃଷ୍ଣଙ୍କ ପ୍ରେମଲୀଳାକୁ ଉପଜୀବ୍ୟ କରି 'ରସକୁଲ୍ୟା ଚଉତିଶା' ରଚନା କରିଥିଲେ । କବି ଚାନ୍ଦ ଦାସ 'ଗୋପୀଚନ୍ଦନ' କାବ୍ୟ ସର୍ଜନା କରି ତହିଁରେ ଗୋପୀପ୍ରେମର ପରାକାଷ୍ଠା ପ୍ରତିପାଦନ କରିଛନ୍ତି । କବି ପୁରୁଷୋତ୍ତମ ଦାସ 'କାଞ୍ଚିକାବେରୀ' କାବ୍ୟ ରଚନା କରି ସେଥିରେ ପୁରୁଷୋତ୍ତମଦେବଙ୍କ କାଞ୍ଚି ଅଭିଯାନ, ମାଣିକ ଗଉଡୁଣୀ ପ୍ରସଙ୍ଗ ଏବଂ ଶ୍ରୀଜଗନ୍ନାଥଙ୍କ ଶ୍ରେଷ୍ଠତା ପ୍ରତିପାଦନ କରିଛନ୍ତି । କବି କପିଳେଶ୍ୱର ଦାସ 'କପଟକେଳି' କାବ୍ୟ ସଂରଚନା କରି ତହିଁରେ ରାଧାକୃଷ୍ଣଙ୍କ ଦିବ୍ୟ ପ୍ରେମଲୀଳା ବର୍ଣ୍ଣନା କରିଛନ୍ତି । କବି କାର୍ତ୍ତିକ ଦାସ ଦଶଛାନ୍ଦ ବିଶିଷ୍ଟ 'ରୁକ୍ମିଣୀ ବିଭା' ନାମକ ପୌରାଣିକ କାବ୍ୟ ରଚନା କରି ସେଥିରେ ରୁକ୍ମିଣୀଙ୍କ ସହିତ ଶ୍ରୀକୃଷ୍ଣଙ୍କର ବିବାହ ପ୍ରସଙ୍ଗ ବର୍ଣ୍ଣନା କରିଛନ୍ତି । କବି ଦନାଇ ଦାସଙ୍କ 'ଗୋପୀଭାଷା' ଏହି ସମୟର ଅନ୍ୟ ଏକ ସ୍ମରଣୀୟ ରଚନା ।

ରାଜକବି ଧନଞ୍ଜୟ ଭଞ୍ଜ କବି ସମ୍ରାଟ୍ ଉପେନ୍ଦ୍ର ଭଞ୍ଜଙ୍କ ପିତାମହ । ତାଙ୍କ ବିଷୟରେ ଉପେନ୍ଦ୍ର ବର୍ଣ୍ଣନା କରି କହିଛନ୍ତି – "ଯେ ବଂଶେ ରାଜା ଧନଞ୍ଜୟ, ସମସ୍ତ ଗୁଣର ନିଳୟ ।" ଧନଞ୍ଜୟ ଭଞ୍ଜ ଥିଲେ ଉଭୟ କବି ଓ କବିମାନଙ୍କର ପୃଷ୍ଠପୋଷକ । ତାଙ୍କ ଯୋଗୁଁ ଘୁମୁସର ରାଜଦରବାର ସାହିତ୍ୟ ଓ ସଙ୍ଗୀତ ଚର୍ଚ୍ଚାର ପ୍ରଧାନ କେନ୍ଦ୍ର ଥିଲା । ଧନଞ୍ଜୟ ଭଞ୍ଜ ପାଞ୍ଚ ଗୋଟି କାବ୍ୟର ସ୍ରଷ୍ଟା । କାବ୍ୟଗୁଡ଼ିକ ହେଉଛି – ଇଚ୍ଛାବତୀ, ଅନଙ୍ଗରେଖା, ମଦନମଞ୍ଜରୀ, ତ୍ରିପୁର ମୋହିନୀ ଓ ଶ୍ରୀରାମ ବିଳାସ । 'ଇଚ୍ଛାବତୀ' ଧନଞ୍ଜୟ ଭଞ୍ଜଙ୍କର ଦଶ ଛାନ୍ଦ ବିଶିଷ୍ଟ ଗୋଟିଏ କାଳ୍ପନିକ କାବ୍ୟ । 'ଇଚ୍ଛାବତୀ'ର ପରିକଳ୍ପନା ଦୁଇଗୋଟି ସଂସ୍କୃତ ଗ୍ରନ୍ଥ ଉପରେ ପର୍ଯ୍ୟବେସିତ । ପ୍ରଥମଟି ହେଉଛି 'ପୂର୍ବ ପଞ୍ଚାଶିକା' ଏବଂ ଅପରଟି ହେଉଛି କବି ବିହ୍ଲଣ ବିରଚିତ 'ଚୌର ପଞ୍ଚାଶିକା ।' କାବ୍ୟଟିର ନାୟକ ମଧୁକର ଓ ଇଚ୍ଛାବତୀ । ପୂର୍ବଜନ୍ମରେ ଏମାନେ ଥିଲେ ଗନ୍ଧର୍ବ କଳାକାନ୍ତ ଓ

ଅପସରୀ କଳାବତୀ । କାବ୍ୟଟି ଶୃଙ୍ଗାର ରସାତ୍ମକ । ଉଭୟଙ୍କର ଗୁପ୍ତପ୍ରଣୟ, ବିବାହ ଓ ଦାମ୍ପତ୍ୟଜୀବନ ଏହି କାବ୍ୟରେ ବର୍ଣ୍ଣିତ ।

ଏହି କାବ୍ୟଟିର ପ୍ରଥମ ପାଞ୍ଚଟି ଛାନ୍ଦ କବିଙ୍କ ନିଜସ୍ୱରଚନା । ଶେଷ ପାଞ୍ଚଗୋଟି ଛାନ୍ଦ ପଞ୍ଚାଶିକା ଓ ଚୌରପଞ୍ଚାଶିକାର ଶ୍ଳୋକମାନଙ୍କର ଅନୁବାଦ ମାତ୍ର ।

ପ୍ରଥମଛାନ୍ଦରେ କବି 'ମଙ୍ଗଳଗୁଜ୍ଜରୀ' ରାଗରେ ଶ୍ରୀଜଗନ୍ନାଥଙ୍କ ବନ୍ଦନା କରିଛନ୍ତି –

"ଜୟ ଜୟ ନୀଳାଦ୍ରିମଣ୍ଡନ ଗୋବିନ୍ଦ
ଯୋଗୀନ୍ଦ୍ର ମାନସ ହଂସ ପରମାନନ୍ଦ ।
ସାରଦା ସିନ୍ଧୁଜା ବେନି ପାଶେ ଖଟନ୍ତି
କରପତ୍ର ଯୋଡ଼ି ଉଭା ପତଙ୍ଗ ପତି ।
ଜାତୀ, ଯୂଥୀ, ମଲ୍ଲୀଯେ ବିବିଧ କୁସୁମ
ପ୍ରତି ପ୍ରତି ଉରେ ଦିଶେ ସୁଅଭିରାମ ।
ତ୍ରିମୁଣ୍ଡି ଉପରେ ଶୋଭା ଦୟଣା ଚୂଳ
ନବଘନ ନିନ୍ଦଇ ଶ୍ରୀମୁଖ ମଣ୍ଡଳ । ×××
ସୁମନା ମଣ୍ଡନ ରମାହୃଦ ଚନ୍ଦନ
ଆଜ୍ଞା ହେଉ ମୋତେ ପ୍ରଭୁ ଜଗମୋହନ ।
ରଞ୍ଜିବଇ ଇଚ୍ଛାବତୀ ନାମେଣ ଛାନ୍ଦ
ରସିକ ଜନଙ୍କ ଏଥେ ବଢୁ ଆନନ୍ଦ ।" (ପ୍ରଥମ ଛାନ୍ଦ)

ପୁନଶ୍ଚ କବି ନିମ୍ନ ପଂକ୍ତିରେ ଯେଉଁ 'ବାଳା ବିବସନା' କଥା କହିଛନ୍ତି, ତାହା ଉପେନ୍ଦ୍ର ଭଞ୍ଜ 'ଲାବଣ୍ୟବତୀ' କାବ୍ୟରେ ଗ୍ରହଣ କରିଥିବା ପରି ମନେ ହୁଏ ।

ରାଜକବି ଧନଞ୍ଜୟ ଭଞ୍ଜଙ୍କ ଭାଷାରେ –

"ତୁଗୋ ନୃପତିସୁତା ଶୁଣମୋର ବିନୟ
ସଂସାରେ ସେହି ସୁଖ ଧନ୍ୟ
ଯେ ତୋ ଅଧରୁ ମଧୁ ପାନ କରିଛି ପ୍ରିୟା
କହି ନୁହଇ ତାର ପୁଣ୍ୟରେ
କୁନ୍ଦଦନ୍ତୀ !

ସେହି ନୟନେ ସେ ନୟନ
ବାସ ନଥିଲା କାଳେ ଯେ ତୋ ସର୍ବ ଅଙ୍ଗକୁ
କରିଣ ଅଛି ବିଲୋକନରେ ।"(ସପ୍ତମ ଛାନ୍ଦ)

ଉପେନ୍ଦ୍ରଙ୍କ ଭାଷାରେ –

"କରି ନାହିଁ ଯେ ଦର୍ଶନ ବାଳା ବିବସନ
ଅନ୍ଧ ସେହୁ ଜନ ଥାଇ ନିର୍ମଳ ନୟନ ଯେ ।
ଯୋଷା ପରିହାସ ଭାଷା ଯେହୁ ନଶୁଣିଛି
କର୍ଣ୍ଣନୋହେ କୁହର ଯୁଗଳ ସେ ବହିଛି ଯେ ।
ଯେ କରି ନାହିଁ ସୁନ୍ଦରୀ ବିମ୍ବାଧରୀ ପାନ
କି ସ୍ୱାଦୁ ଜାଣିଛି ଧିକ ତାହାର ଜୀବନ ଯେ ।" (ଅଷ୍ଟାବିଂଶ ଛାନ୍ଦ)

କବିଙ୍କର 'ଅନଙ୍ଗରେଖା' କାବ୍ୟଟି ପଚିଶ ଛାନ୍ଦ ବିଶିଷ୍ଟ କାଳ୍ପନିକ କାବ୍ୟକୃତି । କାବ୍ୟର ନାୟିକା ଅନଙ୍ଗରେଖା । ପୂର୍ବଜନ୍ମରେ ସେ ଥିଲା ଇନ୍ଦ୍ରଙ୍କ ରାଜସଭାର ଅପ୍‌ସରା ମଦାଳସା । ରାଜସଭାରେ ଇନ୍ଦ୍ରଙ୍କ ପୁତ୍ର ପୁଷ୍ପଦନ୍ତକୁ ଦେଖି ଅପ୍‌ସରା ମଦାଳସାର ମନରେ ଚିତ୍ତଚାଞ୍ଚଲ୍ୟ ଦେଖାଦେଇଛି । ତେଣୁ ସେ ଆନମନା ହେବାରୁ ଇନ୍ଦ୍ର ତାଙ୍କୁ ଅଭିଶାପ ଦେଇଛନ୍ତି । ଅଭିଶାପଗ୍ରସ୍ତ ମଦାଳସା କର୍ଣ୍ଣାଟ ଦେଶର ରାଜକନ୍ୟା ଅନଙ୍ଗରେଖା ନାମରେ ଜନ୍ମନେଇଛି । କାବ୍ୟ ନାୟକ କାଶୀନଗର ରାଜକୁମାର କୁସୁମକେତୁ । ଅନଙ୍ଗରେଖା କୁସୁମକେତୁକୁ ବିବାହ କରିବାର ସିଦ୍ଧାନ୍ତ ନେଇଛି । ଏଣେ ପୁଷ୍ପଦନ୍ତ ଅନଙ୍ଗରେଖାକୁ ବିବାହ କରିବାପାଇଁ ତା' ନିକଟକୁ ବାର୍ତ୍ତାପ୍ରେରଣ କରିଛି, କିନ୍ତୁ ଅନଙ୍ଗରେଖା ଏଥିରେ ସମ୍ମତି ପ୍ରକାଶ ନ କରିବାରୁ ପୁଷ୍ପଦନ୍ତ ଚାରିମେଘକୁ ନିର୍ଦ୍ଦେଶ ଦେଇ ପ୍ରବଳ ବର୍ଷା ଓ ବତାସ ସୃଷ୍ଟି କରି ସ୍ୱୟଂବର ସଭାକୁ ଭଣ୍ଡୁର କରିଛି । କାବ୍ୟର ନାୟକ କୁସୁମକେତୁ ଓ ନାୟିକା ଅନଙ୍ଗରେଖାର ମିଳନ ଘଟିଛି । ଏହି କାବ୍ୟଟି ରସିକଜନଙ୍କ ବିନୋଦ ନିମନ୍ତେ କବି ରଚନା କରିଛନ୍ତି । ତେଣୁ ସେ କହିଛନ୍ତି –

"ରସିକ ଜନଙ୍କ ବିନୋଦନିମନ୍ତେ ଗୀତରେ ଏହା ବର୍ଣ୍ଣିଲି ।"

ସେହିପରି କବିଙ୍କର ଚଉଦଛାନ୍ଦ ବିଶିଷ୍ଟ 'ମଦନମଞ୍ଜରୀ' କାବ୍ୟଟି ଏକ କାଳ୍ପନିକ ପ୍ରେମୋପାଖ୍ୟାନ କାବ୍ୟ । କୁନ୍ତଳଦେଶ ରାଜକନ୍ୟା ମଦନମଞ୍ଜରୀ ଏବଂ ମାଳବ ରାଜକୁମାର ଅନଙ୍ଗକେତନର ପରିଣୟକୁ ଉପଜୀବ୍ୟ କରି ଏହା ରଚିତ

ହୋଇଛି । କବି ଧନଞ୍ଜୟ ଭଞ୍ଜଙ୍କର ଅନ୍ୟତମ ମହାନ୍‌କୃତି ହେଉଛି 'ଶ୍ରୀରାମ ବିଳାସ' କାବ୍ୟ । ଅଣଚାଶ ଛାନ୍ଦ ବିଶିଷ୍ଟ ଏହି କାବ୍ୟରେ ଶ୍ରୀରାମଙ୍କ ଜନ୍ମ ଠାରୁ ବନବାସ, ଲଙ୍କାପୁରୀ ଦହନ, ରାବଣବଧ, ଶ୍ରୀରାମଙ୍କ ଅଯୋଧ୍ୟା ପ୍ରତ୍ୟାବର୍ତ୍ତନ ଓ ରାଜାଭିଷେକ ପର୍ଯ୍ୟନ୍ତ ସମସ୍ତ ଶ୍ରୀରାମ ଚରିତ ବର୍ଣ୍ଣିତ । କାବ୍ୟଟିରେ କିଛିଟା ଆଳଙ୍କାରିକତା ଓ ବର୍ଣ୍ଣନାକୁଶଳତା ଲକ୍ଷ୍ୟଣୀୟ । ନିମ୍ନ ପଂକ୍ତିରୁ କବିଙ୍କର ଆଳଙ୍କାରିକ ଆଭିମୁଖ୍ୟ ଅବଧାରଣା କରିହୁଏ –

"ବନ୍ଦଇ ଜଗତନାଥ ଅନାଦି କାରଣ
ସୃଷ୍ଟି ସ୍ଥିତି ପ୍ରଳୟର ଭୟ ନିବାରଣ ହେ ।
ଯୋଗୀହୃଦ କମଳ ପ୍ରକାଶି ଦିନକର
ଇନ୍ଦ୍ରନୀଳମଣି ରୁଚି ରୁଚିର ଆକାର ହେ ।
ରବି ବଂଶ ଅବତଂଶ ସୁମନା ମଣ୍ଡନ
ଖର ଖର ଆଦି ଦୈତ୍ୟ ସମୂହ ଖଣ୍ଡନ ହେ ।
ଦଶଶିର ବଂଶ ବଂଶ ଗହନ ଦହନ
ମହୀ ମହୀ ପରି ଶୋକ ଭାର ନିବାରଣ ହେ ।
ମୁକୁନ୍ଦ ମୁକୁନ୍ଦ ମୋଦକାରୀ ନାମ ମୂର୍ତ୍ତି
ସୁଗ୍ରୀବ ସୁଗ୍ରୀବ ଠାରେ ବିଦିତ ଯା କୀର୍ତ୍ତି ହେ ।
ସୁଲକ୍ଷଣ ଲକ୍ଷ୍ମଣ ଯାହାର ଅନୁଚର
ଶୁଭରତ ଭରତ ଯାହାର ପ୍ରୀତିକର ହେ ।
ଶତ୍ରୁଘନ ଶତ୍ରୁଘନ ଯାର ଆଜ୍ଞାକାରୀ
ଅସୁର ଅସୁରହାରୀ ଅଯୋଧ୍ୟାବିହାରୀ ହେ ।

× × ×

ତୁମେ ନୀଳାଚଳବାସୀ ଗୋକୁଳ ବିଳାସୀ
ଏବେ ଦଶରଥ ସୁତ ନାମ ପରକାଶି ହେ ।
ତୁମର ଲୀଳା ଚରିତ କହିବ ମୋ ମନ
ଆଜ୍ଞାଦିଅ ମୋତେ ତୁମ୍ଭେ ଜାନକୀ ରମଣ ହେ ।

× × ×

ନୀଳାଚଳପତି ରାମଚନ୍ଦ୍ର ପାଦଧ୍ୟାୟୀ
ନୃପ ଧନଞ୍ଜୟ ଭଞ୍ଜ ଏହୁରସ କହି ହେ ।

ଶ୍ରୀରାମ ବିଳାସ ଯେ ପ୍ରଥମ ଛାନ୍ଦ ଶେଷ
ଶୁଣିଣ ସୁଜନମାନେ ହୋଇବ ସନ୍ତୋଷ ହେ । (ପ୍ରଥମ ଛାନ୍ଦ)

ସେହିପରି କବି ଲେଖିଛନ୍ତି–

ଶ୍ରୀରାମ ଚରଣ ବେନି ଚିନ୍ତି ନିରନ୍ତର
ଭଣେ ନୃପ ଧନଞ୍ଜୟ ଶୁଣ ସାଧୁନର
ଶ୍ରୀରାମ ବିଳାସ ଏହୁ ଛାନ୍ଦଯେ ଦ୍ବିତୀୟ
ଅତି ହି ରହସ୍ୟ ଏହୁ ହୃଦ ରମଣୀୟ ।

ଧନଞ୍ଜୟ ଭଞ୍ଜଙ୍କୁ ରୀତିଯୁଗର ପ୍ରଥମ କବିଭାବରେ ସ୍ୱୀକାର କରାଯାଇଛି । ରୀତିଯୁଗର ପରବର୍ତ୍ତୀ କବିଗଣ ଧନଞ୍ଜୟଙ୍କ କାବ୍ୟ ମାର୍ଗ ଦ୍ୱାରା ପ୍ରଭାବିତ ହୋଇଛନ୍ତି । ଉପେନ୍ଦ୍ର ଭଞ୍ଜ ମଧ୍ୟ ପିତାମହଙ୍କ ଦ୍ୱାରା ବିଶେଷ ଭାବରେ ପ୍ରଭାବିତ ହୋଇ 'ବୈଦେହୀଶ ବିଳାସ' ପରି ଶ୍ରେଷ୍ଠ ଗ୍ରନ୍ଥ ରଚନା କରିଛନ୍ତି । ଧନଞ୍ଜୟ ଭଞ୍ଜଙ୍କ 'ଶ୍ରୀରାମ ବିଳାସ' କାବ୍ୟ ହିଁ ଉପେନ୍ଦ୍ରଙ୍କ 'ବୈଦେହୀଶ ବିଳାସ' କାବ୍ୟ ରଚନାର ମୂଳପ୍ରେରଣା । ତେବେ 'ଶ୍ରୀରାମ ବିଳାସ' କାବ୍ୟର କିଛି ପଂକ୍ତି ମଧ୍ୟ ଉପେନ୍ଦ୍ରଙ୍କ ସୃଜନମାନସକୁ ପ୍ରଭାବିତ କରିଛି । ଯେପରି –

"ଦେଖ ଦେଖ କୋମଳାଙ୍ଗୀ ଏ ବନ ଶୋଭନ
ଚିତ୍ର ଚିତ୍ରକୂଟେ ଏହୁ ହୋଇଛି ରଞ୍ଜନ ।
ଧବ ଧବ ଆଲିଙ୍ଗନ କରିଛି ବଲ୍ଲରୀ
କୂଟ କୁଟଜରେ ଏହୁ ଅଛି ଶୋଭା ଧରି ।" (ଶ୍ରୀରାମ ବିଳାସ)

ସେହିପରି ଉପେନ୍ଦ୍ର ଲେଖିଛନ୍ତି –

"ବୋଧେ ଶୃଙ୍ଖଳାରେ ରଘୁନାଥ ସୀତାମତି
ବିଚିତ୍ର ଚିତ୍ରକୂଟ ଯେ କୁଟଜେ ବ୍ରତତିଯେ ।
ବ୍ରତତୀ ତତି ଜୟନ୍ତୀ ଅତିଭା ବାସନ୍ତି
ବାସନ୍ତି ସତୀରେ ! ଫୁଲ୍ଲ ଫୁଲ୍ଲରେ ପ୍ରବର୍ତ୍ତି ଯେ ।
ବୋଲନ୍ତି ରାମ ସିଂହାବଲୋକନେ ଅବଳା
ବଳାକାପନ୍ତି କରିଛି ଧ୍ରୁବକୁ ଧବଳା ଯେ ।
ବଳାଇ ମାନସ ମାନ ଅନା ପ୍ରାଣବନ୍ଧୁ
ବନ୍ଧୂକ ରଞ୍ଜନ ଅତି ରଙ୍ଗ ନିରବନ୍ଧୁ ଯେ ।

ବତୀର୍ଣ୍ଣ ଅପୂର୍ବ ହୋଇ କେତେ ନାଗବଲ୍ଲୀ
ବଲ୍ଲିକା ତଳେ ଶୟନ ଚାମରୀ ଆବଳି ଯେ ।
ବଳିବ ଚଇତ୍ର ରଥୁ ଏମନ୍ତ ଭାବନା
ବନାଳୀ ପ୍ରଭୁକରିଣ କର ସମ୍ଭାବନା ଯେ ।" (ବୈ.ବି.)

'ଶ୍ରୀରାମ ବିଳାସ'ରେ ଧୀବର ପ୍ରସଙ୍ଗ ନିମ୍ନଭାବରେ ବର୍ଣ୍ଣିତ –

"ଶୁଣି ଶ୍ରୀରାମ ଉତ୍ତର, ବୋଇଲା ସେହୁ ଧୀବର
ଶୁଣ ତୁମ୍ଭେ ରଘୁବୀର, ଧୋଇବି ତୋର ପୟର ।
ଏ ନାବ ମୋର ଜୀବିକା, ଏ ପୁଣି ହେଲେ ନାୟିକା
ମୁଁ ପୁଣି କରିବି କିସ, ମୋ କୁଟୁମ୍ବ ଯିବେ ନାଶ ।
ତୋର ଏ ଚରଣ ରେଣୁ, ପାଷାଣେ ଲାଗିଲା ଯେଣୁ ।
ହୋଇଲା ସେ ଦିବ୍ୟନାରୀ, ଗଲା ଗଉତମ ପୁରୀ ।
ଦାରୁପାଷାଣ ଅନ୍ତର, ନାହିଁ ଯେଣୁ ରଘୁବୀର ।
ଏଣୁ ମୋର ମନେଭୟେ, ହେଉଛି ଶୁଣିବା ରାୟେ ।"

'ବୈଦେହୀଶ ବିଳାସ'ରେ ଉପେନ୍ଦ୍ରଙ୍କ ବର୍ଣ୍ଣନା ଏହିପରି –

"ବଧିର ନୁହଇ ବୀର        ବୋଇଲା ତହୁଁଧୀବର
ଶୁଣିଲିଣି ପଥରେ ପଥର ଅବଳା
ବାଳିପଡ଼ି ତୋ ଚରଣୁ        ଆଶଙ୍କା ଉପୁଜେ ଏଣୁ
ନଉକା ନାୟିକା ହେଲେ ବୁଡ଼ିବ ଭେଳା
ବୃତ୍ତି ଏମୋ ପୋଷେ କୁଟୁମ୍ବ
ବସାଇ ନଦେବି ପାଦ ନ ଧୋଇ ନାବ ।" (୯ମ ଛାନ୍ଦ)

କବି ଧନଞ୍ଜୟ ଭଞ୍ଜ ଶେଷ ଛାନ୍ଦରେ ଲେଖିଛନ୍ତି–

ଏଥୁ ଅନନ୍ତରେ ଶୁଣ ସୁଜନ
ଶ୍ରୀରାମ କଥା ଏ ଅତି ରଞ୍ଜନ ।
ଭକ୍ତି ମୁକ୍ତି ଦୁଇ ଅଛି ଏଥିର
ଶ୍ରବଣ କର ପୁଣ୍ୟବନ୍ତ ନର ।
ହେ ସୁଜନେ ! ଅଛି ଶୃଙ୍ଗାରରସ
ହୋଇଛି ସର୍ବ ରସରେ ସୁରସ ।

× × ×

ଶ୍ରୀରାମ ଅଭିଳାଷ ଗୀତ ଏହୁ
ମହା ରସିକଙ୍କ ହୃଦରେ ରହୁ
ଶେଷ ହୋଇଲା ଅଣଚାଶ ଛାନ୍ଦ
ବନ ବିହାର ନାମରେ ଆନନ୍ଦ ।
ହେ ସୁଜନେ ! ଲଭି ସେ ରାମପାଦ
ହରେ ଧନଞ୍ଜୟ ଭଞ୍ଜ ଆପଦ ।” (୪୯ଶ ଛାନ୍ଦ)

କବି ଲୋକନାଥ ବିଦ୍ୟାଧର ରୀତିଯୁଗର ଅନ୍ୟତମ ଶକ୍ତିଶାଳୀ କବି । ସେ ଭୋଇ ବଂଶର ରାଜା ଦିବ୍ୟସିଂହଦେବ (୧୬୮୮ଖ୍ରୀ - ୧୭୨୫ ଖ୍ରୀ)ଙ୍କ ରାଜତ୍ୱକାଳରେ ସାହିତ୍ୟସାଧନା କରୁଥିବାର ପ୍ରମାଣିତ ହୋଇଛି । ସେ ଗଜପତି ଦିବ୍ୟସିଂହ ଦେବଙ୍କ ପାତ୍ର ଜଗନ୍ନାଥ ବିଦ୍ୟାଧର ମହାପାତ୍ରଙ୍କ ପୁତ୍ର ବୋଲି ତାଙ୍କ କୃତ ‘ନୀଳାଦ୍ରିମହୋତ୍ସବ’ ଗ୍ରନ୍ଥରେ ଉଲ୍ଲେଖ କରିଛନ୍ତି । ତାଙ୍କ ଦ୍ୱାରା ଲିଖିତ କାବ୍ୟଗୁଡ଼ିକ ମଧ୍ୟରେ ‘ସର୍ବାଙ୍ଗସୁନ୍ଦରୀ’, ‘ଚିତ୍ରକଳା’, ‘ପଦ୍ମାବତୀପରିଣୟ’, ‘ରସକଳା ବୃନ୍ଦାବନବିହାର’, ‘ନୀଳାଦ୍ରିମହୋତ୍ସବ’ ପ୍ରଭୃତି ଉଲ୍ଲେଖଯୋଗ୍ୟ । ‘ସର୍ବାଙ୍ଗସୁନ୍ଦରୀ’ କାବ୍ୟର ନାୟକ ଅବନୀତିଳକ ଓ ନାୟିକା ସର୍ବାଙ୍ଗସୁନ୍ଦରୀ । ‘ଚିତ୍ରକଳା’ କାବ୍ୟର ନାୟକ କୃଷ୍ଣବେଣୀର ରାଜା ସୁଦର୍ଶନ ଓ ନାୟିକା ଅଶୋକବତୀର ରାଜକୁମାରୀ ଚିତ୍ରକଳା। କବିଙ୍କର କାବ୍ୟକୃତିରେ ଆଳଙ୍କାରିକତା, ପ୍ରକୃତିବର୍ଣ୍ଣନା ଓ କବିଚାତୁର୍ଯ୍ୟ ରହିଛି ।

ଉପେନ୍ଦ୍ର ଭଞ୍ଜଙ୍କ ପିତା ନୀଳକଣ୍ଠ ଭଞ୍ଜ ମଧ୍ୟ କବିସ୍ୱଭାବର ଥିଲେ । ନୀଳକଣ୍ଠ ଭଞ୍ଜଙ୍କ ନାମରେ ଏ ଯାବତ୍ କୌଣସି କାବ୍ୟଗ୍ରନ୍ଥ ମିଳିନାହିଁ । ତେବେ ସେ ଦୁଇଗୋଟି ଶୃଙ୍ଗାରଭିତ୍ତିକ କବିତା ରଚନା କରିଥିବାର ପ୍ରମାଣ ମିଳୁଅଛି । ତାହା ହେଉଛି ‘ପରକୀୟା ନାୟିକା ଦର୍ଶନେ ନାୟକ’ ୧ମ ଓ ୨ୟ ଶୀର୍ଷକ ଦୁଇଗୋଟି ମାନବୀୟ ପ୍ରେମମୂଳକ ରଚନା । ଦୃଷ୍ଟାନ୍ତସ୍ୱରୂପ, ଗୋଟିଏ କବିତାକୁ ଏଠାରେ ଉଲ୍ଲେଖ କରାଯାଇଛି –

“ପ୍ରାଣ ବାନ୍ଧବୀ ଦିନେ ପ୍ରାଙ୍ଗଣ ପରେ
କର ଦେଇଣ ଥିଲା ଥୋର ହସ୍ତରେ
ସେ ମୋ ଚମ୍ପକ ଗୋରୀ
ଧନ୍ୟ ଧନ୍ୟ ତାହାର ଶୋଭା ଚାତୁରୀ ।୧।

ଜୁଡ଼ାରେ ଥିଲା ତା'ର କିଆ ପାଖୁଡ଼ା
ତା' ଦେଖି ଅଙ୍ଗେ ହେଲା ମଦନ ପୀଡ଼ା ।୨।
ଲଲାଟେ ଥିଲା ତା'ର ସିନ୍ଦୂର ବିନ୍ଦୁ
ତା ଦେଖି ବଢ଼ିଲା ଯେ ଆନନ୍ଦ ସିନ୍ଧୁ ।୩।
ଗଇରିକର ଚିତା ଅଙ୍ଗେ ଶୋଭିତ
ତା ଦେଖି ଧୈର୍ଯ୍ୟ ମୋର ହୋଇଲା ହତ ।୪।
ପିନ୍ଧିଣ ଥିଲା ନୀଳ ଝୀନ ବସନ
ଫୁଟିଣ ଦିଶୁଥିଲା ଘନ ଜଘନ ।୫।
ଭଲ ଭାଗ୍ୟରେ ଶୋଭା ଦେଖିଲି ମୁହିଁ
ଦେଖି ମୋତେ ଲୁଚିଲା ବନଙ୍କ ମୁହିଁ ।୬।
ଭଣିଲେ ନୀଳକଣ୍ଠ ନୃପତି ବର
ରମଣୀଙ୍କି ପାଇଲେ କରନ୍ତି ହାର ।୭।"

ମଧ୍ୟଯୁଗୀୟ କବିମାନଙ୍କ ମଧ୍ୟରେ ଅନ୍ୟତମ ପ୍ରତିଭାଶାଳୀ ଓ ସିଦ୍ଧିବାନ ସାରସ୍ୱତ ସ୍ରଷ୍ଟା ହେଉଛନ୍ତି ଦୀନକୃଷ୍ଣଦାସ । 'ରସକଲ୍ଲୋଳ' କାବ୍ୟର କାଳଜୟୀ ସ୍ରଷ୍ଟା ଭାବରେ ସେ ଅସାମାନ୍ୟ ଗୌରବର ଅଧିକାରୀ । ମଧ୍ୟଯୁଗୀୟ ଓଡ଼ିଆ ସାହିତ୍ୟର ମହାନ୍ କବିତ୍ରୟଙ୍କ ମଧ୍ୟରେ ସେ ଅନ୍ୟତମ । ଏହି ପ୍ରତିଭାଧର କବିତ୍ରୟଙ୍କର କାବ୍ୟ ବୈଶିଷ୍ଟ୍ୟ ସମ୍ପର୍କରେ ପଣ୍ଡିତ ମୃତ୍ୟୁଞ୍ଜୟ ରଥ ଲେଖିଥିଲେ –

"ଉପମା ଭଞ୍ଜବୀରସ୍ୟ ତସ୍ୟୈ ବଚାର୍ଥ ଗୌରବମ
କଲ୍ଲୋଳେ ପଦଲାଳିତ୍ୟମ୍ ସନ୍ତି ଚିନ୍ତାମଣୌତ୍ରୟଃ ।"

ପଣ୍ଡିତ ରଥ ମହାଶୟଙ୍କର ଏହି ଉକ୍ତିଟି ବାସ୍ତବିକ ଯଥାର୍ଥ । ବସ୍ତୁତଃ 'ରସକଲ୍ଲୋଳ' କାବ୍ୟ ପଦଲାଳିତ୍ୟ ଓ ସୁକୁମାର ପଦଯୋଜନା ପାଇଁ ଓଡ଼ିଆ ସାହିତ୍ୟରେ ସ୍ୱତନ୍ତ୍ର ସ୍ଥାନ ଦାବୀକରେ । ସୁତରାଂ ଚିନ୍ତାନାୟକ ଚିତ୍ତରଞ୍ଜନ ଦାସ ଯଥାର୍ଥରେ ଲେଖିଛନ୍ତି – "Dinakrushna Dasa is a major poet of the age, with Rasakallola as his most celebrated Creation. It is an ornamental kavya every line of which starts with the lettter "Ka" and thus must have meant great labour for its architect - poet."

କବି ଦୀନକୃଷ୍ଣ ଥିଲେ ଅସାଧାରଣ ପ୍ରତିଭା ସମ୍ପନ୍ନ କବି । ଦିବ୍ୟ କବିତ୍ୱ, ପାଣ୍ଡିତ୍ୟ, ଭକ୍ତିମତ୍ତା ତାଙ୍କର ସ୍ରଷ୍ଟାମାନସର ବିଶିଷ୍ଟ ଦିଗ । ନିର୍ମଳ କବିତ୍ୱରେ ସେ ବିଶ୍ୱାସ ରଖନ୍ତି । ତେଣୁ ସେ କହିଛନ୍ତି –

"କବି ହୋଇ କରୁଥିବ ନିର୍ମଳ କବିତ୍ୱ
କର୍ଣ୍ଣଦେଇ ଶୁଣୁଥିବ ରସିକ ପଣ୍ଡିତ ।
କିଞ୍ଚିତ କରି ଆସ୍ୱାଦ କରୁଥିବ ତାହା
କହେ କୃଷ୍ଣ କି ମଧୁରେ ଲେଖିବି ମୁଁ ଏହା ।"

'ରସକଲ୍ଲୋଳ' କାବ୍ୟଟି ଓଡ଼ିଆ ବାଣୀଭଣ୍ଡାରରେ ଏକ ସମୁଜ୍ଜ୍ୱଳ କୃତି । ଏତଦ୍ ବ୍ୟତୀତ କବି ଦୀନକୃଷ୍ଣ ଗୁଣସାଗର, ରସସମୁଦ୍ର, ଅମୃତସାଗର, ମୁକ୍ତିସାଗର, ପ୍ରସ୍ତାବସିନ୍ଧୁ, ଜଗମୋହନଛାନ୍ଦ, ଭୂତକେଳି, ଜ୍ଞାନସାଗର, ନାମରତ୍ନଗୀତା, ରସବିନୋଦ, ନରକାସୁରବଧ, ଜ୍ଞାନଚୂଡ଼ାମଣି, ନାବକେଳି, ଅଳଙ୍କାର ବୋଲି, କମଳାକାନ୍ତଚଉତିଶା, ପ୍ରାଣସଖୀ ଚଉତିଶା, ରାଧାକୃଷ୍ଣ ଚଉତିଶା, ଆର୍ତ୍ତତ୍ରାଣ ଚଉତିଶା, ସ୍ନାନୋତ୍ସବ ଚଉତିଶା ଏବଂ ବିବିଧ ଭକ୍ତିଗୀତିକା, ଯଥା; ଭଜନ 'କଳା କହ୍ନାଇ', 'ଜଗବନ୍ଧୁ ପରି ଜଣେ ସାମନ୍ତ', 'ଜୟଜଗ ବନ୍ଧୁହେ ଯଦୁନନ୍ଦନ', 'କରୀନ୍ଦ୍ରଦନ୍ତ ପଲଙ୍କ ତେଜି ପ୍ରଭୁ', 'ସତ୍ୟବାଦୀ ଗୋବିନ୍ଦ ରାଧାମୋହନ', 'ତୋର ଶରଣଗଲିରେ ମୂରଲୀ', 'ଆରେ କଳାମଲ୍ଲୀ' ଇତ୍ୟାଦି ରଚନା କରିଛନ୍ତି ।

'ରସକଲ୍ଲୋଳ' କାବ୍ୟଟି କବି ଦୀନକୃଷ୍ଣଙ୍କ ସର୍ଜନଶୀଳ ମାନସର ମହିମ୍ନ ସୃଷ୍ଟି । ବାସ୍ତବିକ ମଧ୍ୟଯୁଗୀୟ ଓଡ଼ିଆ କାବ୍ୟଧାରାରେ ଏହା ଏକ ସୁମଧୁର ଝରଣା । ଚଉତ୍ରିଂଶ ଛାନ୍ଦ ବିଶିଷ୍ଟ ଏହି କାବ୍ୟଟି 'କ' ଆଦ୍ୟ ନିୟମରେ ରଚିତ । କବି ଦୀନକୃଷ୍ଣ ଥିଲେ ଉତ୍କଳୀୟ ବୈଷ୍ଣବ । ତେଣୁ ସେ ଯୁଗର ଆହ୍ୱାନକ୍ରମେ ଶ୍ରୀଜଗନ୍ନାଥ ଓ ଶ୍ରୀକୃଷ୍ଣଙ୍କ ମଧ୍ୟରେ ଅଭେଦତ୍ୱ ପ୍ରତିପାଦନ କରିଛନ୍ତି । ଉତ୍କଳୀୟ ବୈଷ୍ଣବ ଓ ଗୌଡ଼ୀୟ ବୈଷ୍ଣବ ଧର୍ମ ମଧ୍ୟରେ ସମନ୍ୱୟ ପ୍ରତିଷ୍ଠା କରିଥିବାରୁ କବି ଦୀନକୃଷ୍ଣଙ୍କୁ 'ସମନ୍ୱୟବାଦୀ' କବି ଭାବରେ ଅଭିହିତ କରାଯାଇଛି । କବି ଉତ୍କଳୀୟ ବୈଷ୍ଣବଥିବାରୁ ଗ୍ରନ୍ଥର ପ୍ରଥମ ଛାନ୍ଦରେ ଶ୍ରୀଜଗନ୍ନାଥଙ୍କୁ ବନ୍ଦନା କରିବା ସହିତ ତାଙ୍କୁ ଅବତାରୀ ପୁରୁଷ ଭାବରେ ବର୍ଣ୍ଣନା କରିଛନ୍ତି । କବିଙ୍କ ଭାଷାରେ –

"କର ସାଧୁଜନ ମାନେ ମନକୁ ଏକ
କରଧୀରେ ଧ୍ୟାନ ନୀଳାଚଳ ନାୟକ ।
କମନୀୟ ଶ୍ରୀମୁଖ ଚନ୍ଦ୍ରରୁ ଅଧିକ
କଲେ ଦର୍ଶନ ନ ରହେ ସଂସାର ଶୋକ
କମଳ ନୟନ କୋଟି ସୁଖ ଦାୟକ । ×××
କମଳନେତ୍ରୀ କମଳା ପ୍ରାଣନାୟକ
କଳା ପର୍ବତରେ ଲୀଳା କରି ଅନେକ ।
କଲେ ଇଚ୍ଛା ମନେ ହେବା କଂସ ଅନ୍ତକ
କରିବା ଉଶ୍ୱାସ ମହୀଭାର ଯେତେକ
କପଟେ ହୋଇବା ବ୍ରଜେ ନନ୍ଦ ବାଳକ ।
କରି ଏ ବିଚାର କଇବଲ୍ୟ ଦାୟକ
କଂସ ଆଦି ମାରିବାକୁ ହେଲେ ଉତ୍ସୁକ ।
କଚ୍ଛପ ମତ୍ସ୍ୟାଦି ଅବତାର ଯେତେକ
କରିବାକୁ ଜାତ ଜଗନ୍ନାଥ ଜନକ ।" (ପ୍ରଥମ ଛାନ୍ଦ)

'ରସକଲ୍ଲୋଳ' କାବ୍ୟଟିରେ ଗୋପୀ - କୃଷ୍ଣ ପ୍ରେମର ମଧୁର କଲ୍ଲୋଳ ରହିଛି । କବି ପ୍ରସଙ୍ଗକ୍ରମେ ଏଥିରେ ରାଧା- କୃଷ୍ଣ ପ୍ରେମଲୀଳାକୁ ବର୍ଣ୍ଣନା କରିଛନ୍ତି । ଏହି କାବ୍ୟରେ ଗୋପୀଭକ୍ତିର ଶ୍ରେଷ୍ଠତା ପ୍ରତିପାଦିତ ହୋଇଛି । 'ରସକଲ୍ଲୋଳ' କାବ୍ୟ ସମ୍ପର୍କରେ କବି ସୂଚାଇଛନ୍ତି –

"'କ' ଅକ୍ଷରେ ହୋଇଛି ନିୟମ । କଥା ନୋହେ ଦିବ୍ୟ ଅଦିବ୍ୟସମ ।।
କେତେ କଉତୁକ ଅଛନ୍ତି ଏଥି । କେବଳ କ୍ଷୀର ସିନ୍ଧୁ ପ୍ରାୟେ ମନ୍ଥି ।।
କର ରସଜାତ । କରି ଧୀଷଣା ମନ୍ଦର ପର୍ବତ ।।
କୋବିଦ ଦେବମାନେ ଲଭ ସୁଖ । କରନ୍ତୁ ବାଳିଶ ଅସୁରେ ଦୁଃଖ ।।
କୃଷ୍ଣ ସେବକ ଗୋପୀ ଭକ୍ତି ଯାର । କରନ୍ତୁ ସେମାନେ କଣ୍ଠରେ ହାର ।।
କଠୋର କୁଟିଳ । କପଟି ଲୋକଙ୍କୁ ଏ ଅମଙ୍ଗଳ ।।"

ଏହି କାବ୍ୟରେ କୃଷ୍ଣ-ଗୋପୀପ୍ରେମରେ ମାଧୁର୍ଯ୍ୟଲୀଳା ବର୍ଣ୍ଣିତ । ସେଥିପାଇଁ କବି କହିଛନ୍ତି – "କୃଷ୍ଣସେବକ ଗୋପୀଭକ୍ତି ଯାର । କରନ୍ତୁ ସେମାନେ କଣ୍ଠରେ

ହାର ।" ଏହି କାବ୍ୟରେ ଶୃଙ୍ଗାର ରସର ଶ୍ରେଷ୍ଠତା ପ୍ରତିପାଦିତ ହୋଇଛି । ତେଣୁ କବିଙ୍କର ଆଭିମୁଖ୍ୟ ହେଉଛି –

"କହଇ ଦୀନକୃଷ୍ଣ କନ୍ଦର୍ପରସ ।
କରି ପାରଇ ସେକି ଏମନ୍ତ ବଶ ହେ ।
କର ହେ ସାଧୁଜନେ ମନେ ବିଚାର
କାମବ୍ରହ୍ମ ସଂସାରେ କେମନ୍ତ ସାର ହେ ।"

କାବ୍ୟର ଅଷ୍ଟମ ଛାନ୍ଦରେ ଦୀନକୃଷ୍ଣ ଶ୍ରୀକୃଷ୍ଣ ଓ ଗୋପୀଙ୍କ ମଧ୍ୟରେ ଯେଉଁ କୌତୁକ ପୂର୍ଣ୍ଣ ପ୍ରଶ୍ନୋତ୍ତର ବର୍ଣ୍ଣନା କରିଛନ୍ତି, ତାହା ଏକାନ୍ତ ଉପଭୋଗ୍ୟ । କବିଙ୍କ ଭାଷାରେ –

"କଉଁ ସୁଶ୍ରେଣୀକି ବୋଲନ୍ତି ଏଣିକି ଚାହାଁରେ କଳକଣ୍ଠ ବାଣି
କାମ ତରଙ୍ଗିଣୀ ମଧ୍ୟେ ମୋ କରଣି ଭାସିଲାଟି ପ୍ରାଣ ମିତଣି ।
କିଶୋରୀ, ରତନ କର୍ଣ୍ଣଧାର ହୋଇ
କରୁ କିନା ପାରି ପରମ ସୁନ୍ଦରୀ ଜାନୁ ଉଡୁପରେ ବସାଇ ।"

କବି ଦୀନକୃଷ୍ଣ ପ୍ରତିପାଦନ କରିଛନ୍ତି ଯେ କୃଷ୍ଣ-ଗୋପୀଙ୍କର ଏହି ମନୋହର ଚରିତକୁ କବିମାନେ କାବ୍ୟରେ ବର୍ଣ୍ଣନା କରି ଭବସିନ୍ଧୁକୁ ପାରିହୋଇଥାନ୍ତି । ତେଣୁ ଏହି ପବିତ୍ର ଓ କଲ୍ମଷନାଶନ ଗୋପୀକୃଷ୍ଣ ଚରିତକୁ ଶ୍ରବଣ କରି ବିଷୟ ଜଞ୍ଜାଳରୁ ମୁକ୍ତ ହେବା ପାଇଁ କବି ଦୀନକୃଷ୍ଣ ଦେଇଛନ୍ତି ଆଧ୍ୟାତ୍ମିକ ପ୍ରେରଣା । କବିଙ୍କ ଭାଷାରେ –

"କେତେ ହେଁ କହିବି ହୃଦୟରେ ଭାବି କୃଷ୍ଣଗୋପୀ ସ୍ନେହ ଉତ୍ତର
କଳା ଜଳଧର ବୃଷ୍ଟି ନଭ ତାର ପରାୟେ ନୋହେ ସେ ଗୋଚର ।
କନ୍ଦର୍ପ, କଉତୁକେ ଦିନ ହରନ୍ତି ।
କବି ସେ ଚରିତ ମନୋହର ଗୀତ କରି ଭବସିନ୍ଧୁ ତରନ୍ତି ।
କମଳ କୁମୁଦ ବନକୁ ପ୍ରମୋଦ କରେ ପୁଷ୍ପବନ୍ତ ଯେମନ୍ତ
କୈବଲ୍ୟଦାୟକ ଦକ୍ଷିଣନାୟକ କୃଷ୍ଣଗୋପୀଙ୍କର ତେମନ୍ତ
କହଇ, ଦୀନକୃଷ୍ଣ ରସ କଲ୍ଲୋଳ ।
କର୍ଣ୍ଣଦେଇ ଶୁଣ ରସିକସିଂହାଣ ବିଷୟରେ ନୋହି ଚଞ୍ଚଳ ।" (୮ମ ଛାନ୍ଦ)

କବି ଦୀନକୃଷ୍ଣ ଶ୍ରୀକୃଷ୍ଣଙ୍କଠାରେ ସମ୍ପୂର୍ଣ୍ଣ ଭାବରେ ନିଜକୁ ସମର୍ପଣ କରିଛନ୍ତି । ଶ୍ରୀକୃଷ୍ଣଙ୍କର କମନୀୟ ରୂପଶ୍ରୀକୁ ସେ ହିଁ ପରମ ଶ୍ରେୟ ବୋଲି ବିଚାର କରିଛନ୍ତି । ତେଣୁ ସେ ଗାଇଛନ୍ତି –

"କାଳିନ୍ଦୀ କୂଳୀୟା କଦମ୍ବମୂଳୀୟା କେକୀପୁଚ୍ଛ ଚାରୁଚୂଳୀୟା
କଜ୍ଜ୍ୱଳ କାଳୀୟା କାଇଁଚମାଳୀୟା ମଣିମକର କୁଣ୍ଡଳୀୟା
କଳିତ, ଲଳିତ ପୀତଦୁକୂଳୀୟା
କଳଙ୍କ ରହିତ କଳାକରଜିତ ସୁନ୍ଦର ମୁଖ ମଣ୍ଡଳୀୟା ।
କୁଟିଳ ନୀଳ ଅଳକା ଆବଳୀୟା ନବଲବଣୀ କବଳୀୟା
କେତେକେତେ କଉତୁକ କରୁଥାନ୍ତି ବ୍ରଜସୁତସଙ୍ଗ ମେଳୀୟା
କଦମ୍ବ, ବୃକ୍ଷରୁ ଓହ୍ଲାଇ ବିଜୟେ ।
କୃଷ୍ଣଦାସ ମନ ପଛେ ଗୋଡ଼ାଇଛି ସେହି ରୂପକୁ କରିଲୟେ ।"
(ପଞ୍ଚଦଶ ଛାନ୍ଦ)

'ରସକଲ୍ଲୋଳ' କାବ୍ୟରେ ପ୍ରକୃତି ବର୍ଣ୍ଣନା, ଷଡ଼ଋତୁ ବର୍ଣ୍ଣନା ବେଶ୍ ମନୋଜ୍ଞ । 'ରସକଲ୍ଲୋଳ' କାବ୍ୟର ଷୋଡ଼ଶ ଛାନ୍ଦ ଏକ ମହତ୍ତ୍ୱପୂର୍ଣ୍ଣ ଛାନ୍ଦ । ଏହି ଛାନ୍ଦରେ ବର୍ଷାକଳୀନ ଦୃଶ୍ୟ ଅତୀବ ଜୀବନ୍ତ । କବିଙ୍କ ଭାଷାରେ –

"କ୍ରମେ ଗ୍ରୀଷମ ହୋଇଲା ଶେଷ
ପ୍ରବେଶ ହେଲା ଆଷାଢ଼ ମାସ
କାଳକରାଳ କାଳିକା ଉଦେ ହେଲେ ଆକାଶ ହେ ।
କଲା ନିବିଡ଼ କରି ନିର୍ଘୋଷ
ଗିଳିଲା ଗିରିବର ଶିରୀଷ
ମହାପ୍ରବଳ ଅନ୍ଧାରେ ନ ଦେଖାଇଲା ଦିଶ ସେ ।
କରାଇଲା ଆପଣା ବଲ୍ଲୀପ୍ରକାଶ ସେ
କ୍ରମେ ସଜଳ କଲା ଅବନୀ ଦେଶ ସେ
କୃଷିକାରକେ ହୋଇ ହରଷ, କଲେ ଯେ ଯାହା ଇଚ୍ଛାୟେ ଚାଷ
କେଦାରମାନଙ୍କରେ ପୂରିଲା ଗୀତ ଅଶେଷ ଯେ ।"
(ଷୋଡ଼ଶ ଛାନ୍ଦ)

ଏହି ଛାନ୍ଦରେ ବର୍ଷାଋତୁର ବର୍ଣ୍ଣନା ଯେପରି ସଜଳ, ବିରହ ନାୟକନାୟିକାର ମନୋଭାବ ସେହିପରି ପ୍ରକଟିତ; ସର୍ବୋପରି କବିଙ୍କର ମର୍ମବେଦନା ଓ ବ୍ୟଥା ବେଶ୍ ମର୍ମରିତ । କବି ଦୀନକୃଷ୍ଣଙ୍କ ବର୍ଣ୍ଣିତ ଏହି ଷଡ଼ଋତୁ ବର୍ଣ୍ଣନା ଦ୍ୱାରା ଉପେନ୍ଦ୍ର ଭଞ୍ଜ କିଛି ପରିମାଣରେ ପ୍ରଭାବିତ ହେଲାପରି ମନେ ହୁଅନ୍ତି ।

କବି ଦୀନକୃଷ୍ଣ ବର୍ଷାଋତୁ ବର୍ଣ୍ଣନା ପ୍ରସଙ୍ଗରେ ଲେଖିଛନ୍ତି –

"କୁଳଟା ପ୍ରାଏ କୂଳ ବୁଡ଼ାଇ ବଢ଼ିଲେ ନଦୀପ୍ରବଳ ହୋଇ
ପାଶେ କାହାକୁ ନ ଦେଲେ ଥୋଇ ଚଞ୍ଚଳହୋଇ ସେ ।
କୁଳପାଳିକା ପ୍ରାୟେ ଦୀର୍ଘିକା କୂଳକୁ ରଖି ରହିଲେ ଏକା
କୋକମିଥୁନ ଉରଜ ଘନ ରସକୁ ପାଇ ସେ
କମଳରେ ବୁଡ଼ିଲେ କମଳବଂଶ ଯେ
କଲେ ଗମନ ମାନସରକୁ ହଂସ ଯେ
କଚ୍ଛପ, ମତ୍ସ୍ୟ, ମଣ୍ଡୂକ, ମତ୍ତ ହୋଇ ରଚିଲେ ସୁଖରେ ରତ
କ୍ରୌଞ୍ଚସାରସ ବଳାକାବଂଶ ହେଲେ ଉଲ୍ଲାସ ସେ ।
କଲେ ତାଣ୍ଡବ ମଧ୍ୟ ପାଣ୍ଡବ ବିଟପୀଶିରେ ମାର୍ଜାର ରବ
କାଳକଣ୍ଠକ ଡାକ ବଢ଼ିଲା କାମ ଉତ୍ସବ ଯେ

× × ×

କେ କେକୀ କେକା ଶୁଣି ତାଟକା ହୋଇ ପଥରେ ଗମନ୍ତେ ଏକା
ବୋଲଇ ଡକା ଉପରେ ମୋତେ ହୋଇଲା ଡକାରେ ।"

ଉପେନ୍ଦ୍ର ଲେଖିଛନ୍ତି –

(କ) "ଦେଖି କେକୀ କଳାପ ନାଚେଟେକି କଳାପ
ବିପ୍ରଳାପ କରୁଛି କେତେ
ଏହାର କି ଲବଧ କରି ଅବଧ ବଧ
ବ୍ୟାଧକୁ କହି ବାକି ହତେ ରେ, ସହଚରି ।
ମରାଳ ମାନସକୁ ଯାଉଛି ମାନସକୁ
ଏକଥା କେବେ ନ ଆଣିବ
ଯାଉ ନାହିଁ ଜୀବେଶ ତାର ଜୀବ ଜୀବେଶ
ପାଶରେ ପ୍ରବେଶ କରିବ ରେ । ସହଚରି ।"

(ଲା.ବ.–୨୨ଶ ଛାନ୍ଦ)

(ଖ) "ପ୍ରବେଶ ହୋଇଲା ବରଷା କାଳ ପ୍ରମାଦମାନଙ୍କ ଜନମସ୍ଥଳ
ଜଳଦ କଜ୍ଜ୍ୱଳକାନ୍ତି ଶାର୍ଦ୍ଦୂଳ ସୁଖେ ବିହରିଲେ ଶିଖରିଚୂଳ ।
ଗର୍ଜିତାସନ୍ତତ, ପ୍ରକାଶି ଝଳି ବକାବଳୀବନ୍ତ ।
କୁରଙ୍ଗ ତୁରଙ୍ଗ ଥିଲା ସକାଶେ ଚନ୍ଦ୍ର ସୂର୍ଯ୍ୟ ଲୁଚିରହେ ଆକାଶେ
ମୁନିଏ ମୃଗଚର୍ମ ଥିଲା ଦକୁଁ ହିମାଳୟ ତଳୁ ଗଲେ ଶୃଙ୍ଗକୁ ।
ଋଷିପନ୍ତି ଲୀନ, ଆଗକରି ସେ ଗିଳିଦେଲା ଦିନ ।
ଡାହୁକମାନେ ଡାକ ଦେଲେ ତହିଁ ସିଂହ ଆସୁଅଛି ସନ୍ଦେହ ନାହିଁ
ଶୁଣି ବିୟୋଗିନୀ ଲଭି ଦରକୁ ଛିନ୍ନାଇ ହାର ୟୋଡ଼ାଇ ଡରକୁ
ସେ ମିଥ୍ୟା ନକଲେ କାଳିକାକୁ ୟେଣୁ ଅନାଇ ଦେଲେ ।"

(ଲା.ବ. - ୪୧ଶ ଛାନ୍ଦ)

ବସନ୍ତଋତୁ ବର୍ଣ୍ଣନା ପ୍ରସଙ୍ଗରେ କବି ଦୀନକୃଷ୍ଣ ଲେଖିଛନ୍ତି –

"କୁସୁମ ସମୟ ହୋଇଲା ଉଦୟ ଦକ୍ଷିଣାପବନ ବହିଲା
କାମଦେବଦୂତ ହୋଇ ମହାମତ୍ତ ପଞ୍ଚମ ସ୍ୱରରେ କହିଲା
କନ୍ଦର୍ପ, ଦର୍ପ ହୋଇଲା ଅତିଶୟ
କୁସୁମ ବିଶିଖ କରିବାକୁ ଲାଖ କାମି କାମିନୀ କଲେଭୟ ।
କମଳ ରସାଳ ନୀଳ ଉତପଳ ନିଆଳୀ ଅଶୋକ ବିକାଶ
କାମ ପଞ୍ଚବାଣ କାମୀ ପଞ୍ଚପ୍ରାଣ ଘେନିବାକୁ ହେଲେ ପ୍ରକାଶ ।
କେତକୀ । କୁନ୍ତକି ହୋଇଲା ପ୍ରକଟ ।
କାନ୍ତାକାନ୍ତ ଭେଟ ହୋଇଲା ଅଭେଟ ଜୀବ ୟିବା ହେଲା ନିକଟ ।"

(ର.କ. - ଦ୍ୱାଦଶ ଛାନ୍ଦ)

ଉପେନ୍ଦ୍ରଙ୍କ ଲେଖନୀରେ ବସନ୍ତ ବର୍ଣ୍ଣନା ଆହୁରି ମନୋଜ୍ଞ ହୋଇପାରିଛି –

(କ) "ଅତି ରସମୟ ସମୟ ବସନ୍ତ ବିଚିତ୍ର ପ୍ରମେୟ ତାହାର
ମିତ୍ର ଅନଙ୍ଗକୁ ପ୍ରବଳ କରାଇ ଆଚରି ଚର୍ଚ୍ଚରି ବିହାର
ଆଗତେ, ଆରୋହିଲା ନାଗେଶ୍ୱରକୁ
ଋତୁରାଜପଦୁଁ ସେ ରଜଘେନିଲା ଚାହିଁ ପ୍ରଫୁଲ୍ଲ କେଶରକୁ । (କୋ.ବ୍ର.ସୁ)

(ଖ) "ସୁରଭି ସମ ଏ ହୋଇଛି ଅତି ସୁରଭି ହୋଇ
ଅତି ସୁରଭିଏ ବକୁଳ ଧରିଅଛନ୍ତି ତହିଁ ।

ପିକ କୁହୁ କୁହୁ କରେ ଯେ ତରୁଡ଼ାଳରେ ବସି
କାମ କୁହୁ ଘୋଟି ଯାଇଛି କାମ ଚିତ୍ତରେ ଆସି
ମଧୁ ମତ୍ତ ହୋଇ ମଧୁପ କରୁଅଛନ୍ତି ସ୍ୱନ
ମାର ପ୍ରହାରିଛି ହରେ କି ଲୌହ ବାଟୁଳିମାନ ।" (ରସଲେଖା)

(ଗ) "ପ୍ରବେଶ ସୁରଭି ଘନରସମୟ ଜଡ଼ବର ସୁରଞ୍ଜନ
ସୁଖଦାତାଘନସାର ପ୍ରକାଶରେ ହରିତାପ ପ୍ରଭଞ୍ଜନ ହେ ସାଧୁ ।
କମଳ ତୋଷ ଦାନକର ହୋଇଲା ଦିନକୁ ଦୁର୍ବହ କରି
ସୁବାସ ସୁମନାରେ ସ୍ନେହ ଅଧିକ ସକଳଜନ ଆଦରି ।
କଳକଣ୍ଠ ରବ ଦିଗନ୍ତେ ଶୁଭଇ ମଦନ ପ୍ରବଳ ଯହିଁ
ହେଲା ଶୁଭ ବନବିହାର ଯହିଁରେ ଆନେ ମନ ନ ରସଇ ।
ପୁଷ୍ପରେ ସାରଙ୍ଗ ଲୀଳା ପ୍ରକାଶିଲେ ନାୟକ ବିଚ୍ଛେଦୀଛନ୍ନ
ଆଶାରେ ଦୃଷ୍ଟି ପକାଇ ସେ ଭିତ୍ତିରେ ଲେଖି ବସେ କଣ୍ଠିଦିନ ।"
(ଲା.ବ. - ଷଟ୍‌ତ୍ରିଂଶ ଛାନ୍ଦ)

ପୁନଶ୍ଚ କବି ଉପେନ୍ଦ୍ର ଦୀନକୃଷ୍ଣଙ୍କ ଦ୍ୱାରା ପ୍ରଭାବିତ ହୋଇ 'ରସକଲ୍ଲୋଳ' କାବ୍ୟପରି 'କ' ଆଦ୍ୟ ନିୟମରେ କୃଷ୍ଣଲୀଳାତ୍ମକ କାବ୍ୟ 'କଳାକଉତୁକ' ରଚନା କରିଥିଲେ ।

ରାଜକବି ପୁରୁଷୋତ୍ତମ ସିଂହ ମାନଧାତା 'ଶୋଭାବତୀ' ନାମରେ ଗୋଟିଏ କାବ୍ୟ ରଚନା କରିଥିଲେ । ପୁରୁଷୋତ୍ତମ ସିଂହ ମାନଧାତା ନବଦୁର୍ଗର ରାଜାଥିଲେ । ଐତିହାସିକ ଡକ୍ଟର ହରେକୃଷ୍ଣ ମହତାବ ଲେଖିଛନ୍ତି – "ଯେଉଁ ସମୟରେ ଉପେନ୍ଦ୍ର ଭଞ୍ଜ ନିର୍ବାସିତ ହୋଇ ନୟାଗଡ଼ରେ ଥିଲେ, ସେହି ସମୟରେ ପୁରୁଷୋତ୍ତମ ସେଠାରେ ରାଜାଥିଲେ ।" 'ଶୋଭାବତୀ' କାବ୍ୟଟି ପୁରୁଷୋତ୍ତମ କାବ୍ୟମାନସର ଏକ ଅନୁପମ ସୃଷ୍ଟି । କାଳ୍ପନିକ ବିଷୟବସ୍ତୁ ଉପରେ ଏହା ଆଧାରିତ । କାବ୍ୟଟି ଦଶଛାନ୍ଦ ବିଶିଷ୍ଟ । ନାୟକ ଓ ନାୟିକାର ବିରହାନୁଭୂତିର ବର୍ଣ୍ଣନାରେ କାବ୍ୟଟି ରସୋତ୍ତୀର୍ଣ୍ଣ ହୋଇପାରିଛି । ନାୟକ ପ୍ରିୟାର ଅନୁଚିନ୍ତାରେ ଗଭୀର ଭାବରେ ନିମଗ୍ନ ରହିବା ସଙ୍ଗେ ସଙ୍ଗେ ପ୍ରୀତି ବିନୋଦିନୀ ପ୍ରିୟାର କାର୍ଯ୍ୟକଳାପକୁ ଯେପରି ସ୍ମରଣ କରିଛି, ତାହା କବିଙ୍କ ଲେଖନୀରେ ଜୀବନ୍ତ ହୋଇ ପାରିଛି । କବିଙ୍କ ଭାଷାରେ –

"ବସି ଏକାନ୍ତରେ ପୁଂସ ନିରନ୍ତରେ
ପ୍ରିୟାକୁ ଚିତ୍ତରେ ଗୁଣି
ମଦନ କାତରେ ଅତି ଆରତରେ
ବୋଲଇ ହାହା ରମଣୀ ।
ନୀରଦ କେଶୀ ଶରଦ ଚନ୍ଦ୍ରମୁଖୀ
ଦ୍ୱିରଦ ଗତି ନବୀନା
ସେ ମତ୍ତ କାଶିନୀ ପିୟୂଷ ହାସିନୀ
ବଞ୍ଚିବ ସେହି ମୋ ବିନା
କଷା ନୋହୁଥିବ ନିଶାରେ ନୟନ
ରସା ମଣ୍ଡନାର ମୋର ।
ଅରୁଣଅଧରୀ ସରୁ ମଧ୍ୟମାକୁ
ଗରୁ ହୋଇଥିବ ହାର
ନୀର ବହିଯାଇ ନୀରଜ ନୟନୁ
ଜର ଜର ହେବ ସ୍ତନ ।
ସ୍ମର ଶରଦରେ ହରହର ବର
ବରନା କରିବ ଧ୍ୟାନ ।"

ବିରହ-ବିଧୁରା ନାୟିକା ମଧ୍ୟ କାନ୍ତର ଗୁଣ ସ୍ମରଣ କରି ମ୍ରିୟମାଣା ହୋଇପଡ଼ିଛି । ପ୍ରୀତିକୁଶଳା ନାୟିକା କାନ୍ତ ବିଚ୍ଛେଦରେ ଶୋକାତୁରା ହୋଇପଡ଼ି କାମଦେବଙ୍କୁ ଜଣାଇଛି ତାର କାତରୋକ୍ତି । ନିଜର ପ୍ରାଣବିନିମୟରେ ସେ କାମନା କରିଛି ପ୍ରିୟର ପ୍ରାଣ –

"କହୁଅଛି ମୁଁ କରଯୋଡ଼ି ମାର
ସେ ଯେ ନୃପତି ସୁତ ସୁକୁମାର
ବିନାଦୋଷରେ ତାହାଙ୍କୁ ନ ମାର
ପାରିଲେ ଜୀବନ ହର ମୋହର ।
କହିଲି ଏ ବୁଦ୍ଧି । ଏତେ ମାତ୍ର ରଖ ଜନକ ସିଦ୍ଧି ।"

ଏହା କହି ନାୟିକା ହତଚୈତନ୍ୟ ହୋଇଛି । ସେ କାମପୀଡ଼ାର ନବମ ଦଶାରେ [illegible]ଛନ୍ତି । ତେଣୁ ସଖୀମାନେ କାନରେ ଫୁଙ୍କି ଶୋଭବତୀକୁ ସଚେତନ

କଟାଇଛନ୍ତି । କର୍ଣ୍ଣରେ ମନ୍ତ୍ର ଫୁଙ୍କି ଦେଲାପରି ସଖୀମାନେ ଶୋଭାବତୀ କାନରେ "ଆସୁ ଅଛନ୍ତି ତୋ ପ୍ରାଣଈଶ୍ୱର" କହିଲା ମାତ୍ରେ ସେ ଆକୁଳ ହୃଦୟରେ ଚାହିଁ ବସିଲା । ଦୈବଯୋଗରେ ନାୟକ ଉପସ୍ଥିତ ହୋଇଛି । ବିରହଦଗ୍ଧ ନାୟକ ଓ ନାୟିକାର ମଧୁର ମିଳନ କବିଙ୍କ ଲେଖନୀରେ ହୋଇଛି ଏକାନ୍ତ ହୃଦ୍ୟ ଓ ରସମୟ । କବିଙ୍କ ଭାଷାରେ –

"ସେ କାନ୍ତ କାନ୍ତା ଶ୍ରୀମୁଖ ଦର୍ଶନେ
ରହିଲେ ଦଣ୍ଡେ ସ୍ତମ୍ଭିତ ନୟନେ ।
ନାଗର ବର ରସେ ହୋଇ ଭୋଳ
ବେଗେ କଲା ନିଜ ପ୍ରିୟାକୁ କୋଳ
ଆତୁର ହିଁ ଜଡ଼ି । ହୋଇଲେ ପରସ୍ପରେ ଭିଡ଼ାଭିଡ଼ି ।
ଦରିଦ୍ରଜନେ ହଜିଲା ରତନ
ପାଇଲେ ଯଥା ହରଷ ତା ମନ
ତହୁଁ ଅଧିକେ ରସ ଜାତ ହୋଇ
ପୁଣି ହୋଇଲେ ଚୁମ୍ବ ଦିଆଦେଇ
ଗଣ୍ଠିବେନି ଚିରେ । ପକାଇ ଭିନ୍ନ ନୋହିବା ବିଚାରେ ।"

ସୁତରାଂ 'ଶୋଭାବତୀ' କାବ୍ୟ ନାୟକ ଓ ନାୟିକାର ବିରହ ମିଳନର ହାସ୍ୟ ଅଶ୍ରୁର ଅନୁଭୂତିରେ ଏକାନ୍ତ ଉପଭୋଗ୍ୟ ହୋଇପାରିଛି । 'ଶୋଭାବତୀ' ଏକ ରସମୟ ରଚନା । ରସଚର୍ଯ୍ୟା, ସାଙ୍ଗୀତିକତା, ସାବଲୀଳ ପ୍ରକାଶଭଙ୍ଗୀ ଏବଂ ସର୍ବୋପରି ଶୃଙ୍ଗାରୀକତା ହେଉଛି ଏହାର ମୁଖ୍ୟ ଆବେଦନ ।

ଉପେନ୍ଦ୍ରଙ୍କ ସମସାମୟିକ କବି ଭୂପତି ପଣ୍ଡିତ ରାଜା ଦିବ୍ୟସିଂହ ଦେବଙ୍କ ସମସାମୟିକ ଥିଲେ ପଶ୍ଚିମା ସାରସ୍ୱତ ବ୍ରାହ୍ମଣ । ସେ ତୀର୍ଥାଟନରେ ଓଡ଼ିଶା ଆସିଥିବା ସମୟରେ ଗଜପତି ଦିବ୍ୟସିଂହଦେବ ତାଙ୍କ କବିତ୍ୱର ପରିଚୟ ପାଇଥିଲେ । ତାଙ୍କୁ ଜଟଣୀ ନିକଟସ୍ଥ ରଥିପୁରଗଡ଼ଠାରେ ସମ୍ପତ୍ତିବାଡ଼ି ଯୋଗାଇ ଦେଇ ତାଙ୍କର ଥଇଥାନ ବ୍ୟବସ୍ଥା କରାଇଥିଲେ । ଭୂପତି ପଣ୍ଡିତ ପୁରୀର ଜଣେ ମହନ୍ତ ଚୈତନ୍ୟଦାସଙ୍କ ଦ୍ୱାରା ଦୀକ୍ଷିତ ହୋଇ ବୈଷ୍ଣବ ଧର୍ମ ଗ୍ରହଣ କରିଥିଲେ । କବିଙ୍କ 'ପ୍ରେମପଞ୍ଚାମୃତ' ଗ୍ରନ୍ଥଟି ଖ୍ରୀ. ୧୬୯୪/୯୫ରେ ଲିଖିତ ହୋଇଥିଲା । କବି ଭୂପତି ପଣ୍ଡିତ ବ୍ରଜାଙ୍ଗନାମାନଙ୍କୁ ଚାରିଭେଦରେ ବର୍ଣ୍ଣନା କରିଛନ୍ତି;

ଗୋପକନ୍ୟା, ବେଦକନ୍ୟା, ଦେବକନ୍ୟା ଓ ମୁନିକନ୍ୟା । ଶ୍ରୀକୃଷ୍ଣଙ୍କ ଅନୁସନ୍ଧାନରେ ସେମାନେ ଯଥାକ୍ରମେ ପୂର୍ବ, ଦକ୍ଷିଣ, ଉତ୍ତର ଓ ପଶ୍ଚିମ ଦିଗକୁ ଗମନ କରିଥିଲେ ବୋଲି କବି ବର୍ଣ୍ଣନା କରିଛନ୍ତି । ଏହି ଗ୍ରନ୍ଥଟି ଭାଗବତବାଣୀ ବୃତ୍ତରେ ରଚିତ । କବି ଭୂପତି ପଣ୍ଡିତ ଲେଖିଛନ୍ତି –

"ଯେ ସୁରନର ନାଗଭାଷା । ବିବିଧବାକ୍ୟ ଉପଦେଶା ॥
କୃଷ୍ଣ ମହିମା ଯହିଁ ଶୁଣି । ସେ ସର୍ବ ବାକ୍ୟରେ ମୂର୍ଦ୍ଧନୀ ॥
ଯେବେ ନଥାଇ କୃଷ୍ଣରସ । ସେ ସଂସକୃତେ କାର୍ଯ୍ୟ କିସ ॥
ପାଟବସନେ ଗୁଞ୍ଜ ଫଳ । ଥିଲେ ନୋହଇ ବହୁମୂଲ୍ୟ ॥
ଚିରାକନାରେ ମଣିବର । ଥିଲେ ନତୁଟେ ମୂଲ୍ୟ ତାର ॥
ସୁର-ଭାଖା ହିଁ ରସମୟେ । ସେ ନାରୀକେଳ ଫଳପ୍ରାୟେ ॥
କ୍ଳେଶେ ହୋଅଇ ରସଭୋଗ । ସବୁଙ୍କୁ ନୋହେଁ ଉପଯୋଗ ॥
ଭାଷା ସୁପକ୍ୱ ରମ୍ଭା ପ୍ରାୟ । କୋମଳ ସ୍ୱାଦୁ ରସମୟ ॥
ଅକ୍ଳେଶେ କରି ତାକୁ ଭୋଗ । ସବୁ ଜୀବନେ ଉପଭୋଗ ॥
କି ପରାକୃତ ସଂସକୃତ । ସେ ଭାବଗ୍ରାହୀ ନନ୍ଦସୁତ ॥
ଗାଳି ଶୁଣଇ ଗୋପୀମୁଖେ । ବେଦ ନ ଶୁଣେ ତେଡ଼େ ସୁଖେ ॥
ଏ ଭାବ ମନରେ ବିଚାରି । ଭାଷାକୁ ଅବଜ୍ଞା ନ କରି ॥"

(ପ୍ରଥମ ଛାନ୍ଦ)

କେବଶରାଜ ହରିଚନ୍ଦନ ଉପେନ୍ଦ୍ର ଭଞ୍ଜଙ୍କ ସମକାଳୀନ କବି । ସେ ଥିଲେ ଗଞ୍ଜାମ ଜିଲ୍ଲା ଅନ୍ତର୍ଗତ ସୁରଙ୍ଗି ରାଜ୍ୟର ନରପତି । ତାଙ୍କ ରଚିତ 'ରସସିନ୍ଧୁ ସୁଲକ୍ଷଣା' କାବ୍ୟଟି ଦିବ୍ୟସିଂହ ଦେବଙ୍କ (୧ମ) ୨୭ ଅଙ୍କରେ ରଚିତ ହୋଇଥିଲା । କବି ଲେଖିଛନ୍ତି –

"ବୀର ଶ୍ରୀଦିବ୍ୟସିଂହ ଗଜେଶ ସପ୍ତବିଂଶ ଅଙ୍କେ ମାଘ ମାସ
ଶୁକ୍ଳପକ୍ଷ ଦଶମୀ ବୁଧବାରେ ।
ରସସିନ୍ଧୁ ସୁଲକ୍ଷଣା ପ୍ରକାଶ ହେ ।"

ଐତିହାସିକ କେଦାରନାଥ ମହାପାତ୍ରଙ୍କ ମତରେ ଏହି କାବ୍ୟଟିର ରଚନା ୧୭୧୦ ଖ୍ରୀ.ଅ. ଜାନୁଆରି ୨୪ ତାରିଖରେ ସମ୍ପୂର୍ଣ୍ଣ ହୋଇଥିଲା । ଉପେନ୍ଦ୍ର ଭଞ୍ଜଙ୍କ ପ୍ରାଥମିକ ରଚନା 'ରସଲେଖା'ର ରଚନାକାଳ ମଧ୍ୟ ୧୭୧୦ ଖ୍ରୀଷ୍ଟାବ୍ଦ

ବୋଲି ନିର୍ଣ୍ଣିତ ହୋଇଛି । ଏହି କାବ୍ୟଟି ଶ୍ରୀକୃଷ୍ଣ ଓ ସୁଲକ୍ଷଣାଙ୍କ ପରିଣୟକୁ ଉପଜୀବ୍ୟ କରି ରଚିତ ହୋଇଛି ।

ଉପେନ୍ଦ୍ରଙ୍କ ସମକାଳୀନ ଅନ୍ୟତମ କବି ହେଉଛନ୍ତି ବିଶ୍ୱନାଥ ଖୁଣ୍ଟିଆ । ତାଙ୍କୁ ରାମଲୀଳାର ପ୍ରଥମ ଲେଖକ ଭାବରେ ଗ୍ରହଣ କରାଯାଇଛି । 'ବିଚିତ୍ର ରାମାୟଣ' ଗ୍ରନ୍ଥରେ ସେ ରାମାୟଣର କଥାବସ୍ତୁକୁ ଲୀଳା ଆକାରରେ ରଚନା କରିଛନ୍ତି । ଏହି ଗ୍ରନ୍ଥଟିକୁ ବିଶ୍ୱନାଥ ଖୁଣ୍ଟିଆ ଗଜପତି ଦିବ୍ୟସିଂହ ଦେବ (୧ମ)ଙ୍କ ପଚିଶ ଅଙ୍କରେ ସମ୍ପୂର୍ଣ୍ଣ କରିଥିଲେ । ତେଣୁ ସେ ଲେଖିଛନ୍ତି –

"ଦିବ୍ୟସିଂହ ଦେବ ନୃପ ଗଜପତି ରାଜନେ ।
ନୀଳାଦ୍ରି ଦର୍ଶନେ ଦ୍ୟୁତି ପାକଶାସନେ ।
ସେ ନୃପ ପଞ୍ଚିଶ ଅଙ୍କେ ଜଗନ୍ନାଥ ପ୍ରସନ୍ନେ ।
ସାତକାଣ୍ଡ ରାମାୟଣ ବିଶ୍ୱନାଥ ରଞ୍ଚନେ ।"

ଦିବ୍ୟସିଂହଦେବଙ୍କ ପଚିଶ ଅଙ୍କ ଖ୍ରୀ. ୧୭୦୯/୧୦ ବୋଲି ନିର୍ଣ୍ଣିତ ହୋଇସାରିଛି । ସୁତରାଂ ଉପେନ୍ଦ୍ରଙ୍କ 'ରସଲେଖା' କାବ୍ୟ ରଚନା ପୂର୍ବରୁ ଏହା ରଚିତ ହୋଇସାରିଲାଣି । ଏହା ବ୍ୟତୀତ 'ବିଚିତ୍ରରାମାୟଣ'ର ଆରଣ୍ୟକ କାଣ୍ଡର ଦ୍ୱିତୀୟ ଗୀତଟିକୁ ବିଶ୍ୱନାଥ ଖୁଣ୍ଟିଆ 'ଭଞ୍ଜଙ୍କ ଚଉପଦୀ ଭୂଷଣ ବୃତ୍ତେ' ବୋଲି ଗାଇବାକୁ ସୂଚନା ଥିବରୁ ଜଣାଯାଏ ଯେ, ୧୭୦୯/୧୦ ଖ୍ରୀ. ପୂର୍ବରୁ ଉପେନ୍ଦ୍ରଙ୍କ 'ଚଉପଦୀ ଭୂଷଣ' ଲୋକପ୍ରିୟ ହୋଇ ସାରିଲାଣି । ବିଶ୍ୱନାଥ ଖୁଣ୍ଟିଆଙ୍କ 'ବିଚିତ୍ର ରାମାୟଣ' ୯ମ ଛାନ୍ଦର କିୟଦଂଶ ଏଠାରେ ଉଦ୍ଧାର କରାଗଲା –

"କହ ହନୁମୋର କାନ୍ତର କୁଶଳ ଲକ୍ଷ୍ମଣର ସର୍ବକୁଶଳ ।
ମରକତ ହେମ ବେନି କଳେବର ହୋଇ ନାହାନ୍ତି ନା ଦୁର୍ବଳ ।
ହନୁହେ, ବେନିଭାଇଙ୍କର କୁଶଳ
କୁଶଳ କରି ଲକ୍ଷ୍ମଣ ସେବା କରୁଥାନ୍ତିଟିକି ପାଦକମଳ ।
ମୋର ବିଚ୍ଛେଦ ହୋଇଲା ଦିନୁ ତନୁ ଦୁର୍ବଳ ହୋଇଥିବ ପରା
ଅଧୈର୍ଯ୍ୟ ହୋଇଲେ ଲକ୍ଷ୍ମଣ ତାହାଙ୍କୁ କରାଉଥାନ୍ତିଟିକି ଧୀରା
ହନୁହେ, ମୋତେ ଏଥୁ ନିଶ୍ଚେ ନେବେ କି ?
ବାନରବଳ ଘେନି ସିନ୍ଧୁ ପାରିକି ହୋଇ ଏଥକୁ ଆସିବେ କି ?
ବୋଲଇ ଯେ ହନୁ କନ୍ଧରେ ବସାଇ ଶ୍ରୀରାମ ପାଶେ ଘେନିଯିବି ।

ସ୍ୱଇଚ୍ଛାରେ ମୁହିଁ କେମନ୍ତପ୍ରକାରେ ପୁରୁଷ ଅଙ୍ଗକୁ ଛୁଇଁବି ।
ହନୁହେ, ଚୋରାଇ ରାବଣ ଆଣିଲା
ତୁମ୍ଭେ ଚୋରାଇ ଘେନିଗଲେ ପ୍ରଭୁଙ୍କ ଯଶ ଆଉ କାହିଁ ରହିଲା ?”

ମଧ୍ୟଯୁଗୀୟ କବିମାନଙ୍କ ମଧରେ ଉପେନ୍ଦ୍ର ଭଞ୍ଜ ସ୍ୱୀୟ ପ୍ରତିଭା ବଳରେ ଶ୍ରେଷ୍ଠ ଆସନର ଅଧିକାରୀ ହୋଇପାରିଛନ୍ତି । ସେ ଥିଲେ ବହୁଶାସ୍ତ୍ରଦର୍ଶୀ କବି । ଏତେଗୁଡ଼ିଏ କାବ୍ୟଗ୍ରନ୍ଥର ରଚୟିତା ଭାବରେ ଉପେନ୍ଦ୍ର ମଧ୍ୟଯୁଗର ସମସ୍ତ କବିକୁ ଅତିକ୍ରମ କରିଛନ୍ତି । ଉପେନ୍ଦ୍ର ଥିଲେ ବିଚିତ୍ରକବିତ୍ୱ ଶକ୍ତିର ଅଧିକାରୀ । ପ୍ରଭୁ ଶ୍ରୀରାମଚନ୍ଦ୍ରଙ୍କର ଅପାର କରୁଣାରୁ ସେ ଏହି ଅଲୌକିକ କବିତ୍ୱ ଶକ୍ତିର ଅଧିକାରୀ ହେବା କଥା ମୁକ୍ତ କଣ୍ଠରେ ସ୍ୱୀକାର କରିଛନ୍ତି । ଯଦିଓ ତାଙ୍କ ବଂଶର ଇଷ୍ଟଦେବୀ ବାଗ୍‌ଦେବୀ ବା ବ୍ୟାଘ୍ରଦେବୀ ତଥାପି ଉପେନ୍ଦ୍ର ଥିଲେ ରାମ-ଉପାସକ । ଉପେନ୍ଦ୍ର ସ୍ୱୟଂ ପ୍ରଭୁ ଶ୍ରୀରାମଚନ୍ଦ୍ରଙ୍କୁ ସୁମରଣା କରି ଲେଖିଛନ୍ତି –

(କ) ଗଉତମ ନାରୀର ଉତ୍ତମ ଗତିଦାୟୀ
ଉପଇନ୍ଦ୍ର ବୀରବର ସେ ଶ୍ରୀରାମଧ୍ୟାୟି ଯେ ।

(ଖ) ଜରତବିମ୍ବଅଧର ଭରତ ଜ୍ୟେଷ୍ଠସୋଦର ନିରତେ
କର ମୋ ଚିତ୍ତେ ସଦ୍ମ ହେ
କହେ ଉପଇନ୍ଦ୍ର ଭଞ୍ଜ ପ୍ରଭୋ ରଘୁବଂଶ ରାଜ
ଅଯୋଧ୍ୟା ରାଜନ ପରଂବ୍ରହ୍ମ ହେ ।

(ଗ) ଜାନକୀ କୁଚ କୁଙ୍କୁମ ଅଙ୍କିତ ହୃଦୟ ।
ମୁନିଜନ ଚିତ୍ତେ କାମ ବିକାର ଉଦୟ ।
ତାରକ ତାରକ ମନ୍ତ୍ର ଯାହା ନାମ ଶୁଣି
ଉପଇନ୍ଦ୍ର ବୀରବର ସେହି ରାମ ଗୁଣି ଯେ ।

(ଘ) ବାମେ ରାମାବର ସ୍ଥିତି । ଦକ୍ଷିଣେ ଲକ୍ଷ୍ମଣ ଯତି
ମଧ୍ୟେ ବିଜେ ଯେଉଁ ଶ୍ୟାମଳ ସୁନ୍ଦର ତାଙ୍କୁ ଉପଇନ୍ଦ୍ର ଚିନ୍ତି ।

ଉପେନ୍ଦ୍ର ଯେ ଥିଲେ ଜଣେ ଅନାସକ୍ତ ସାଧକ କବି ଓ ନିସର୍ଗ ଚେତନାର ରୂପକାର – ଏକଥା ତାଙ୍କର ଲେଖାରୁ ଜାଣିହୁଏ । ସକଳ ପାର୍ଥିବ ଆକର୍ଷଣରୁ ମୁକ୍ତ ନ ରହିଲେ, ଦିବ୍ୟ ଜୀବନର ଅଧିକାରୀ ନ ହେଲେ ଏପରି ସୃଜନୀଶକ୍ତିର ଅଧିକାରୀ ହେବା ଅସମ୍ଭବ । ଏକ ରସାଳ, ପୁଷ୍କଳ ଓ ଆଳଙ୍କାରିକ ମନୋରମ

ସାରସ୍ୱତ ସମ୍ପଦ ସୃଷ୍ଟି କରିବାକୁ କେତେ ଯେ ଶ୍ରମ ସ୍ୱୀକାର କରିବାକୁ ପଡ଼େ, କେତେ ଯେ ତ୍ୟାଗ ସ୍ୱୀକାର କରିବାକୁ ପଡ଼େ, ତାହା ଉପେନ୍ଦ୍ର ଅନୁଭବ କରିଛନ୍ତି । ତେଣୁ ସେ କହିଛନ୍ତି – "କବି ବିନା କେ ବୁଝିବ ଏଥି କଷ୍ଟ ଯେତେ ।" ଉପେନ୍ଦ୍ର ତାଙ୍କ ପୂର୍ବବର୍ତ୍ତୀ କବିମାନଙ୍କ ଦ୍ୱାରା ଉଣା ଅଧିକେ ପ୍ରଭାବିତ ହୋଇଛନ୍ତି ନିଶ୍ଚୟ । ଯେପରି ଶିଶୁଶଙ୍କର ଦାସଙ୍କ 'ଉଷାଭିଳାଷ', ରଘୁନାଥ ହରିଚନ୍ଦନଙ୍କ 'ଲୀଳାବତୀ', ସ୍ୱୀୟ ପିତାମହ ଧନଞ୍ଜୟ ଭଞ୍ଜଙ୍କ ଶ୍ରୀରାମ ବିଳାସ, ଇଚ୍ଛାବତୀ, ଅନଙ୍ଗରେଖା, ମଦନମଞ୍ଜରୀ, ବିଷ୍ଣୁଦାସଙ୍କ ପ୍ରେମଲୋଚନା, ଦୀନକୃଷ୍ଣ ଦାସଙ୍କ 'ରସକଲ୍ଲୋଳ' ପ୍ରଭୃତି କାବ୍ୟର ପ୍ରଭାବ ଉପେନ୍ଦ୍ରଙ୍କ କାବ୍ୟସର୍ଜନାକୁ ପ୍ରଭାବିତ କରିଛି । କବି ମଧ୍ୟ ସାରଳାଦାସଙ୍କ ମହାଭାରତ, କୃପାସିନ୍ଧୁ ବଳରାମ ଦାସଙ୍କ ରାମାୟଣ, ଜଗନ୍ନାଥ ଦାସଙ୍କ ଭାଗବତ ଏବଂ ସର୍ବୋପରି ଅଚ୍ୟୁତାନନ୍ଦ ଦାସଙ୍କ ହରିବଂଶରୁ ପୌରାଣିକ ଘଟଣାବଳୀ ଆହରଣ କରିଛନ୍ତି । ଉପେନ୍ଦ୍ର ଭଞ୍ଜଙ୍କ ରଚିତ କାବ୍ୟଗୁଡ଼ିକ ମଧ୍ୟରେ 'ବୈଦେହୀଶ ବିଳାସ' ସର୍ବୋତ୍ତମ । ବାଉନଛାନ୍ଦ ବିଶିଷ୍ଟ 'ବ' ଆଦ୍ୟ ନିୟମରେ ରଚିତ ଏହି କାବ୍ୟ ଭାରତୀୟ ରାମକାବ୍ୟ ପରମ୍ପରାରେ ଏକ ସମୁଜ୍ଜ୍ୱଳ କୃତି । କବି ସୂଚାଇଛନ୍ତି–

(କ) "ବୈଦେହୀଶ ବିଳାସ ଏ ଗୀତ ମନୋରମ<br>ବାନଛାନ୍ଦେ ଶେଷ ଆଦ୍ୟ 'ବ' କାରେ ନିୟମ ଯେ"

(ଖ) "ବିଚିତ୍ର କବିଦ୍ୱମାର୍ଗେ ପ୍ରସରିଲା ବୁଦ୍ଧି<br>ବିରଚିଲେ ରାମାୟଣ ଏମୋ ବଡ଼ ସିଦ୍ଧି ଯେ ।"

ସେହିପରି କାଳ୍ପନିକ କାବ୍ୟଗୁଡ଼ିକ ମଧ୍ୟରେ 'ଲାବଣ୍ୟବତୀ' ଶ୍ରେଷ୍ଠ । ଏକ ସରସ ଛାନ୍ଦକାବ୍ୟ ଭାବରେ 'ଲାବଣ୍ୟବତୀ'ର ମହତ୍ତ୍ୱ ସ୍ୱୀକାର୍ଯ୍ୟ । କାବ୍ୟରସିକମାନଙ୍କର ହୃଦକୁମୁଦ ପ୍ରତି ଏହି କାବ୍ୟଟି ଚନ୍ଦ୍ରମା ସଦୃଶ । କବି 'ଲାବଣ୍ୟବତୀ' କାବ୍ୟର ଚତୁର୍ଥ ଛାନ୍ଦକୁ 'ବେଶପେଶଳ ଛାନ୍ଦ', ଦ୍ୱାତ୍ରିଂଶ ଛାନ୍ଦକୁ 'ମନୋରମ ଛାନ୍ଦ', ସପ୍ତତ୍ରିଂଶ ଛାନ୍ଦକୁ 'ବୁଧମୋହନ ଛାନ୍ଦ', ଊନଚତ୍ୱାରିଂଶକୁ 'ବିଚିତ୍ରଛାନ୍ଦ', ଚତ୍ୱାରିଂଶ ଛାନ୍ଦକୁ 'ରସରତ୍ନାକର ଛାନ୍ଦ', ଦ୍ୱିଚତ୍ୱାରିଂଶ ଛାନ୍ଦକୁ 'ରସିକ ରତ୍ନମାଳା ଛାନ୍ଦ', ତ୍ରିଚତ୍ୱାରିଂଶ ଛାନ୍ଦକୁ 'ରସିକ ଭ୍ରମର ତୋଷଦମାଳତୀ ଛାନ୍ଦ' ନାମରେ ନାମିତ କରି ଏହି ଛାନ୍ଦଗୁଡ଼ିକର କାବ୍ୟିକ ମର୍ଯ୍ୟାଦାକୁ ବର୍ଦ୍ଧିତ କରିଛନ୍ତି । ସବୁଠାରୁ ବଡ଼ କଥା ହେଉଛି ଏହି କାବ୍ୟର ପଞ୍ଚଦଶ ଛାନ୍ଦରେ ବର୍ଣ୍ଣିତ

ଐନ୍ଦ୍ରଜାଲିକର ରାମଚରିତ ପ୍ରଦର୍ଶନ କରାଇବା ପ୍ରସଙ୍ଗ ଯହିଁରେ ରାମାୟଣର ବିସ୍ତୃତ କଥାବସ୍ତୁକୁ ମାତ୍ର କେତୋଟି ପଦରେ ନିଖୁଣ ଭାବରେ ବର୍ଣ୍ଣନା କରିବା ହେଉଛି କବିଙ୍କର ସାର୍ଥକତା । ଦୃଷ୍ଟାନ୍ତ ସ୍ୱରୂପ –

"ଚାରୁଚରୁ ସ୍ୱରୂପ ହୋଇଲେ ପଦ୍ମନାଭ
କୌଶଲ୍ୟା କୈକେୟୀ ସୁମିତ୍ରାଭକ୍ଷ ଗର୍ଭଯେ ।
ଅଭିରାମ ଶ୍ରୀରାମ ଭରତ ଶୁଭରତ
ସଲକ୍ଷଣ ଲକ୍ଷ୍ମଣ ଶତ୍ରୁଘ୍ନ ହେଲେ ଜାତ ଯେ ।
କ୍ରତୁ ରକ୍ଷା ହେତୁ ବିଶ୍ୱାମିତ୍ର ଆସି ନେଲେ
ବନେ ତାଡକୀ ଶମନ ଭୁବନେ ପେଷିଲେ ହେ ।
ସୁବାହୁ ସୁବାହୁବଳେ ମାରି ମାରିଚକୁ
ଆକାଶରେ ଶରେ ଉଡାଇଲେ ଯେ ଯଶକୁ ଯେ ।
ପଥରେ ପଥରେ ନାରୀ କରି କଲେ ମୋଦ
ଦାସ ବତ୍ସଳ ଦାସରେ ଧୁଆଇଲେ ପଦ ଯେ ।
ଖଣ୍ଡପରଶୁ କୋଦଣ୍ଡ ବେନି ଖଣ୍ଡ କରି
ସୀତା ବିବାହ ନିର୍ବାହ ନୃପଦର୍ପ ହରି ଯେ ।
ବଜ୍ରପରି ଭୃଗୁପତି ଭୃଗୁକୁ ଭେଦିଲେ
ଅଭିଷେକ କରିବା ମମତା ପିତା କଲେ ଯେ ।
ମନ୍ଥରା ମନ୍ଥନେ କାନ୍ତାନୁଜ ଘେନି ସଙ୍ଗେ
ବିଚିତ୍ର ଚିତ୍ରକୂଟରେ ବିହରିଲେ ରଙ୍ଗେ ଯେ ।
ବଲ୍କଳେ ଶକ୍ରସୁତ ଚକ୍ର ନେତ୍ର ରାଜି
ଭରତ ପ୍ରବୋଧି ସୁବୁଦ୍ଧିରେ ଗିରିତେଜି ଯେ ।
ବୀରାୟୁଧେ ବିରାଧବଧକୁ ବିଚାରିଲେ ।
ଅମଳାନବସ୍ତ୍ର ବ୍ରହ୍ମ ଶସ୍ତ୍ରକୁ ପାଇଲେ ଯେ ।
ଦଣ୍ଡକାରଣ୍ୟକୁ ମଣ୍ଡି ସୂର୍ପଣଖା ଦଣ୍ଡି
ଖର ଖର ଦୂଷଣ ତ୍ରିଶିର ଶିର ଖଣ୍ଡି ଯେ ।
ହେମ ସାରଙ୍ଗ ରଙ୍ଗରେ ଲଙ୍କା ଦଣ୍ଡଧାରୀ
ସୀତା ସିତାଂଶୁମୁଖୀକି ଉଟଜରୁ ହରିଯେ ।

ମାର୍ଗରେ ବିନାଶି ଖଗ ଖଡ଼ଗ ପ୍ରହାରେ
ରହେ ଶୋକବତୀ ସୀତା ଅଶୋକ ବନରେ ଯେ ।
ବାସେ ନ ଦେଖି ସୁମୁଖୀ ମହାଦୁଃଖୀ ରାମ
ବିଳାପ କଳାପ ମାପ କରଣେ କେ କ୍ଷମ ଯେ ।
ରକ୍ଷଦେଶ ଗମନ ସନ୍ଦେଶ ପକ୍ଷୀ କହି
କବନ୍ଧ ବନ୍ଧନେ ପଡ଼ି ତାହା ନାଶ ବିହି ଯେ ।
ଫଳ ଦାନେ ମୋକ୍ଷଫଳ ଲଭିଲା ଶବରୀ
କ୍ଷୀରପାନେ ବର-ବରଜରେ ବାଞ୍ଛା ପୂରି ଯେ ।
କାମ କାମନାକୁ ମୁନି ଚିତ୍ତେ ଜନ୍ମାଇଲେ
ପମ୍ପାସରେ କୋକଶୋକ କାରକ ହୋଇଲେ ଯେ ।
ମିତ୍ରବଂଶୀ ମିତ୍ରବସି ମିତ୍ରପୁତ୍ର ସଙ୍ଗେ
ଭେଦି ଶାଳ ଦୁନ୍ଦୁଭି ଅସ୍ଥିକି ଟାଳେ ରଙ୍ଗେ ଯେ ।
ଶାଖାମୃଗରାଜ ମୃଗରାଜ କୋଟିବଳ
ଶର ଶରଭରେ କଲେ ବିନାଶ ଚପଳ ଯେ ।
ମାଲ୍ୟବନ୍ତ ଧରଣୀଧରରେ ପୁର ରଞ୍ଚି
ରଘୁବୀର ବିରହେ ବରଷାକାଳ ବଞ୍ଚି ଯେ ।
କୁକ୍‌କୁଟକୁ ମୁକୁଟ ସେ ଗିରିକୁଟେ ଦେଇ
ଲଭି ବଲ୍ଲଭୀ ଉଦନ୍ତ ଦୂତ ପଠିଆଇ ଯେ ।
ଜଳେ ସେତୁ କଲେ ଶିଳେ ନଳେ ଦେଇ ଯଶ
ଲଙ୍କାବେଢ଼ି ଶଙ୍କା କରାଇଲେ ଦୈତ୍ୟ ବଂଶ ଯେ ।
ବିଷଧର ପାଶତ୍ରାସ ନାଶ କଲା ବୀଶ
ଅନୀକିନୀ ଅନେକ ହୋଇଲେ ରଣେ ନାଶ ଯେ ।
ଘଟକର୍ଣ୍ଣ ଘଟତ୍ୟାଗ ଅତିକାୟ କ୍ଷୟ
ପୁରୁହୂତଜିତ ହତ ବ୍ରହ୍ମାସ୍ତ୍ର ଉଦୟ ଯେ ।
ହନୁମାନ ଗନ୍ଧମାର୍ଦ୍ଦନ ଗମନ ଲୀଳା
ଭରତ ଉଦନ୍ତ ପ୍ରାପ୍ତ ଲକ୍ଷ୍ମଣ ଜୀଇଲା ଯେ ।

ଶ୍ରୀରାମଚନ୍ଦ୍ର ନରେନ୍ଦ୍ର ଶରସର୍ପ ନେଇ
ଲଙ୍କପତି ଅଙ୍କପେଟୀ ଭିତରେ ପୂରାଇ ଯେ ।
ଅଭୀକ୍ଷଣ ବିଭୀଷଣ ଅଭିଷେକ କରି
ବଇଦେହୀ ଦହି ଅନଳରେ ହେମପରି ଯେ ।
ପୁଷ୍ପକରେ ପୁଷ୍କରେ ସବଳେ ଗଲେ ଗତି
ଯୋଦ୍ଧାବର ଅଯୋଧାରେ ହୋଇଲେ ନୃପତି ଯେ ।"
(ଲା.ବ.- ପଞ୍ଚଦଶ ଛାନ୍ଦ)

'ଲାବଣ୍ୟବତୀ' କାବ୍ୟଟି ଭଞ୍ଜୀୟ କାବ୍ୟ ମାନସର ଅନୁପମ ସର୍ଜନା । ଏହା ଯଥାର୍ଥରେ ଉପେନ୍ଦ୍ର ପ୍ରତିଭାର ଲାବଣ୍ୟବତୀ । ଉପେନ୍ଦ୍ର କାବ୍ୟସର୍ଜନାର ଆଉ ଗୋଟିଏ ବୈଶିଷ୍ଟ୍ୟ ହେଉଛି ଯେ, ରୀତିକବିମାନଙ୍କର ସମସ୍ତ କାବ୍ୟନାୟିକାଙ୍କୁ ସେ ଲାବଣ୍ୟବତୀର ପ୍ରିୟା, ସହଚରୀ ରୂପେ ନିର୍ଦ୍ଦିଷ୍ଟ କରିଛନ୍ତି । ଏହି ସହଚରୀମାନେ ହେଲେ ହେମମଞ୍ଜରୀ, କାମକଳା, ସୁରେଖା, ଚିତ୍ରରେଖା, ପ୍ରେମଶୀଳା କଳ୍ପଲତା, ରସଲେଖା, ରତ୍ନମାଳା, ହେମମାଳା, ପରିମଳା, ମଦାଳସା, ପ୍ରଭାମଞ୍ଜୁଳା, ପ୍ରେମସୁଧାନିଧି ଇତ୍ୟାଦି । ଉପେନ୍ଦ୍ରଙ୍କର ଛାନ୍ଦଭୂଷଣ ୩୪ ଛାନ୍ଦ ବିଶିଷ୍ଟ କାବ୍ୟ ଏବଂ ଏହି କାବ୍ୟର ଛାନ୍ଦଗୁଡ଼ିକ କ'ଠାରୁ କ୍ଷ ବ୍ୟଞ୍ଜନ ବର୍ଣ୍ଣଅନୁକ୍ରମରେ ଲିଖିତ । 'ଅବନାରସ ତରଙ୍ଗ' ଅବନା ନିୟମରେ ରଚିତ । 'ରସପଞ୍ଚକ' କାବ୍ୟଟି ଯଥାକ୍ରମେ ର-ସ-ପ-ଚ-କ ପାଞ୍ଚୋଟି ଅକ୍ଷରକୁ ଆଦ୍ୟରେ ରଖି ରଚନା କରାଯାଇଛି । ଏହା ଏକ ଅଳଙ୍କାର ଶାସ୍ତ୍ର ଓ କାମଶାସ୍ତ୍ରଭିତ୍ତିକ ଗ୍ରନ୍ଥ । ଉପେନ୍ଦ୍ର ଭଞ୍ଜଙ୍କ କୃତିତ୍ୱ ପ୍ରଦର୍ଶିତ ହୁଏ ତାଙ୍କର 'ଚିତ୍ରକାବ୍ୟ ବନ୍ଧୋଦୟ' ଗ୍ରନ୍ଥରେ । ଏହା ୮୩ ଗୋଟି ବନ୍ଧକୁ ନେଇ ରଚିତ । ତେବେ ଉପେନ୍ଦ୍ରଙ୍କ ବହୁ ଜନାଦୃତ କାବ୍ୟଗୁଡ଼ିକ ମଧ୍ୟରେ ଲାବଣ୍ୟବତୀ, କୋଟିବ୍ରହ୍ମାଣ୍ଡସୁନ୍ଦରୀ, ରସିକ ହାରାବଳୀ, ପ୍ରେମସୁଧାନିଧି, ସୁଭଦ୍ରାପରିଣୟ, କଳାକଉତୁକ, ଛାନ୍ଦଭୂଷଣ, ବୈଦେହୀଶ ବିଳାସ ଓ ରସଲେଖା ପ୍ରଭୃତି ପ୍ରମୁଖ କାବ୍ୟ ଅଟେ ।

କବିଗୁରୁ ଉପେନ୍ଦ୍ର ଭଞ୍ଜ ତାଙ୍କର ସମକାଳୀନ କବିମାନଙ୍କର ଆଦର୍ଶ ଭାବରେ ଗୃହୀତ ହୋଇଛନ୍ତି । ଉପେନ୍ଦ୍ର ଭଞ୍ଜଙ୍କ 'ବୈଦେହୀଶ ବିଳାସ' କାବ୍ୟକୁ ଆଦର୍ଶ ଭାବରେ ଗ୍ରହଣ କରି କବି ଯଦୁମଣି ମହାପାତ୍ର ଉଚ୍ଚକୋଟୀର ରାମକାବ୍ୟ 'ରାଘବ ବିଳାସ' ରଚନା କରିଥିଲେ । କବି ଯଦୁମଣି ଲେଖିଛନ୍ତି –

(କ) "ବୁଧ ଶୁଦ୍ଧବୋଧ ଚରିତ ପ୍ରସିଦ୍ଧ ରାଘବବିଳାସ
ଶ୍ରବଣେ ଦୂରିତ ବିନାଶ ତ୍ୱରିତ ଆନନ୍ଦ ମାନସ ।"

(ଖ) "ରାଘବେ ରାଘବ ତୋଷ ନାମ ରାଘବ ବିଳାସ
ଭାବ ଲାଭକୁ ପ୍ରକାଶ ବିଦୂଷ ଶ୍ରେଣୀ ।"

'ରାଘବ ବିଳାସ' ବାଉନଛାନ୍ଦ ବିଶିଷ୍ଟ କାବ୍ୟ । ଏଠାରେ 'ବୈଦେହୀଶ ବିଳାସ' ଓ 'ରାଘବ ବିଳାସ' କାବ୍ୟର କିଞ୍ଚିତ ଆଲୋଚନା କରାଯାଇଛି । ତେବେ 'ବୈଦେହୀଶ ବିଳାସ' କାବ୍ୟର ଚତୁର୍ଥ ଛାନ୍ଦରେ ଜରତାର ଋଷ୍ୟଶୃଙ୍ଗମୁନିଙ୍କୁ ଆଣିବା ପ୍ରସଙ୍ଗରେ କବି ଲେଖିଛନ୍ତି –

"ବେଶ୍ୟାସାର ଜରତା ତା ରତା ହୋଇ ନେଲା
ବନୁ ଆଜନ୍ମ ତପସ୍ୱୀ ଆଣିବି ବୋଇଲା ଯେ ।
ବୃଷଭ ଗୋଡ଼ାଇ ଧେନୁ ପଛରେ ଯେମନ୍ତ
ବେଦାଧ୍ୟୟନ ଛଡ଼ାଇ ଆଣିବି ତେମନ୍ତ ଯେ ।
ବର୍ଦ୍ଧକୀ ଡକାଇ ସଜଡାଇ ଦିଅ ନାବ
ବେଶ୍ମପରି ମହା ମନୋରମ ହୋଇଥିବ ଯେ ।
ବିବିଧ ପଦାର୍ଥ ଭର୍ତ୍ତି କରିଦିଅ ତହିଁ
ବନରଚନା ହିଁ ହୋଇଥିବ ଭୂପେ କହି ଯେ ।" (ବୈ.ବି)

'ରାଘବବିଳାସ' କାବ୍ୟରେ ଏହି ପ୍ରସଙ୍ଗ ନିମ୍ନ ଭାବରେ ବର୍ଣ୍ଣିତ –

"ମୁନିଙ୍କି ମୁଁ ନିକି ଯାଇ ଆଣିବି ବୋଇଲା
ମୁନିଙ୍କି ମୁଁ ନିକି ନିଶ୍ଚେ ତୋଷିବଇଁ ଭଲା ।
ତକ୍ଷାକୁ ଡକାଇ ତରୀ ବେଗେ ନିର୍ଭାକର
ତକ୍ଷଣରେ ହେବାକୁ ତ ବିଳମ୍ବ ନ କର ।
ଶିଳ୍ପକାର ନାବ ନିର୍ଭା କଲେ ଯତନରେ
ଶିଳ୍ପକାର ବିମଣ୍ଡିତ ସୁଧର୍ମ୍ମା ସଭାରେ ।" (ରା.ବି)

ଏହାପରେ ଋଷ୍ୟଶୃଙ୍ଗ ଓ ବେଶ୍ୟାମାନଙ୍କର ଚାତୁର୍ଯ୍ୟୋକ୍ତିକୁ କବି ଉପେନ୍ଦ୍ର ନିମ୍ନ ଭାବରେ ବର୍ଣ୍ଣନା କରିଛନ୍ତି –

ଋଷ୍ୟଶୃଙ୍ଗ ବେଶ୍ୟାମାନଙ୍କୁ ପଚାରିଲେ –

"ବସାଇ ଆସନେ ପୁଚ୍ଛେ କାହିଁ ତପି ଗଣ
ବସ ମଠ କରି, କହ ମଠ ନ କରିଣ ଯେ ।

ବଖାଣ କି କି ମନ୍ତ୍ରକୁ ଜପ କରି ଜାଣ
ବିଷ୍ଣୁ ଶିବ ସେବା କାହା ଭାବରେ ନିପୁଣ ଯେ ।" (ବୈ.ବି)

ଏହାପରେ ସେହି ରସିକାମାନେ ମୁରୁକି ହସାଦେଇ, ନାକ ଫୁଲାଇ ଓ କଟାକ୍ଷ ଚାଳନା କରି ଗେଲେଇ ହୋଇ କହିଲେ –

"ବନେ ତୁମ୍ଭେ ଭ୍ରମ, ଆମେ ବନୀରେ ବିଳସୁ
ବନୌକାତୁମ୍ଭେ ବନୀତା ଆମ୍ଭେଟିଏ ବଶୁ ଯେ ।
ବୋଲିବାର ରାମମନ୍ତ୍ର ଆଦ୍ୟବର୍ଣ୍ଣ ଭିନ୍ନ
ବିସର୍ଗ ଚତୁର୍ଥ ବର୍ଣ୍ଣ ଏକ କରିଘେନ ଯେ ।
ବସନ୍ତି ଆମ୍ଭ ଦେବତା ଶମ୍ଭୁ ହୃଦ ସ୍ଥଳ
ବକ୍ଷୋରୁହ ଉରେ ଯୋଡ଼ି ଶୀଘ୍ର କଲା କୋଳ ଯେ ।" (ବୈ. ବି)

'ରାଘବ ବିଳାସ' କାବ୍ୟରେ କବି ଯଦୁମଣି ଏ ପ୍ରସଙ୍ଗକୁ ନିମ୍ନ ଭାବରେ ବର୍ଣ୍ଣନା କରିଛନ୍ତି –

"ମଠ କାହିଁ ପୁଚ୍ଛୁ ମଠ ନ କରି କହିଲେ
ମଠ ତୁମ୍ଭ ଆମ୍ଭର ଯେ ଆଶ୍ରମ ବୋଇଲେ ।
ଦେବାର୍ଚ୍ଚନ କର କେଉଁ ମନ୍ତ୍ରପାଠ କରି
ଦେବାର୍ଚ୍ଚନ ଦେହେ ଆମ୍ଭ କାମ ମନ୍ତ୍ର ପୂରି ।
ପାଣି ଅଭିଷେକେ ତୁଷ୍ଟ ସେ ଶମ୍ଭୁ ଦେବତା
ପାଣି ମୁନି କର ଦେଇ ଦେଖାଇ ବନିତା ।" (ରା.ବି)

ରାମାୟଣ ଗ୍ରନ୍ଥର ଏକ ଉଲ୍ଲେଖଯୋଗ୍ୟ ପ୍ରସଙ୍ଗ ହେଉଛି ଧୀବର କର୍ତ୍ତୃକ ଶ୍ରୀରାମଚନ୍ଦ୍ରଙ୍କ ଗଙ୍ଗାପାରି ଓ ମିଥିଳାଯାତ୍ରା । 'ବୈଦେହୀଶ ବିଳାସ' କାବ୍ୟର ନବମ ଛାନ୍ଦରେ ଚୋଖି ରାଗରେ ଏହା ବର୍ଣ୍ଣିତ ।

ଉପେନ୍ଦ୍ରଙ୍କ ଭାଷାରେ –

"ବଷ୍ଟୁପଦୀ ବିଷ୍ଟୁପଦ ଈକାର ଭେଦ ଶବଦ
ତରଣୀର ଗତାଗତ ତହିଁ ଉଚିତ
ବିଶାରଦ ସେ ସାମନ୍ତ ମତରେ ଦାସ ସେବିତ
ତାକୁ ନ ଶୁଣନ୍ତେ ରଘୁନାଥ କଥିତ
ବିଷଧର ପ୍ରାୟେକ ତୁହି
ବେଳେ ନେତ୍ର ଡାଳି ଶୁଣ ଉଦାସ ନୋହି ।

ବଧିର ନୁହଇ ବୀର ବୋଇଲା ତହିଁ ଧୀବର
ଶୁଣିଲିଣି ପଥରେ ପଥର ଅବଳା
ବାଲି ପଡ଼ି ତୋ ଚରଣୁ ଆଶଙ୍କା ଉପୁଜେ ଏଣୁ
ନଉକା ନାୟିକା ହେଲେ ବୁଡ଼ିବ ଭେଳା
ବୃତ୍ତି ଏ ମୋ ପୋଷେ କୁଟୁମ୍ବ
ବସାଇ ନ ଦେବି ପାଦ ନ ଧୋଇ ନାବ ।" (ବୈ.ବି)

କବି ଯଦୁମଣିଙ୍କ ବର୍ଣ୍ଣନା ହେଉଛି –

"ଚକ୍ରପ୍ରାୟେ ବକ୍ତ୍ରାଲୋଚନ ଈକ୍ଷଣେ, କିମ୍ପାଇ ନଭାଷୁ ଗିର
ଜଡ଼ କି ସ୍ୱଭାବ ? ଭାଷୁ ଭାସେ ନାବ ମଧ୍ୟେ ଉଭାଯୋଡ଼ି କର ସେ
ଦାସ ଦାସ ଭାବରେ
ପୂର୍ବୁଁ ପ୍ରକାଶ ଜନରବରେ ସେ, ଦାସ ...
କୀର୍ତ୍ତି ପ୍ରକାଶିତ କାଶ୍ୟପୀରେ ଯେ, ଦାସ ... ।
ପଦତଳେ ଶିଳା ବାଳା ହୋଇ ଖେଳା, ଭେଳା ଅବଳା ଭୟରେ
ନଶୁଣି ବାଚକ ସୂଚକ ରଚକ, ନ ଦିଏ ବୃତ୍ତି ହାତରେ ସେ
ତରୀ ମୋ ପରିତ୍ରାଣ
ଯେବେ ବନେ ସେ ହେବ ମଜ୍ଜନ ଯେ, ତରୀ ...
ସର୍ବେ ଭଜିବାନ୍ତବ ସଦନ ଯେ, ତରୀ ... ।" (ରା.ବି)

'ବୈଦେହୀଶ ବିଳାସ' କାବ୍ୟରେ ଉପେନ୍ଦ୍ର ସୀତାଙ୍କୁ ସ୍ୱୟଂବର ସ୍ଥାନକୁ ଆଣିବା ପରିପ୍ରେକ୍ଷୀରେ ଲେଖିଛନ୍ତି–

"ବିଭୂଷଣ ପୁଷ୍ପେ ଯା କାନ୍ତି ଜାଣ
ବିଭୂଷଣ କରି କନ୍ୟାକୁ ଆଣ
ବାରଣ ଶିରେ ପଦ ଦେଇ ଆସୁ
ବରଣ କରି ରାମ ମନ ତୋଷୁ ସେ
ବୋଲିଦେଲେ କଉଶିକ ଯେ
ବୋଳିଦେଲା ପ୍ରାୟେ ଗୋଳି ଚନ୍ଦନକୁ
ହୋଇଲେ ରଘୁବଂଶିକ ଯେ ।
ବିଧାନ ହୋଇଛି ଯା' ନାମସୀତା

ବର୍ଣ୍ଣନେ ଶୋଭା ଅତି ମଧୁରତା
ବୁଡ଼ି ନେତ୍ର ଆଜହେବ ପବିତ୍ର
ବିଶେଷେ କର୍ଷିଦେଇ ହୃଦକ୍ଷେତ୍ର ସେ ।
ବୁଣିଲାଣି ସ୍ନେହ ବୀଜ ଯେ
ବିଚାରୁ ଏମନ୍ତ ଜନକ ସମ୍ମତି
ଶୁଣିଲେ ସଖୀ ସମାଜ ଯେ ।" (ଦଶମ ଛାନ୍ଦ)

'ରାଘବବିଳାସ' କାବ୍ୟରେ ଯଦୁମଣି ଲେଖିଛନ୍ତି –

"ବିଦୂଷ ଦୂଷଣନାଶ ଶ୍ରବଣ କର ହରଷ ଲଭିବ ମାନସୁ କ୍ଳେଶ ଦୂର
ତପୋତ୍ତମ ହରଷିତେ ଭଗ୍ନ କାର୍ମୁକ ଲୋକନ୍ତେ ଧାତ୍ରୀରେ ଭାଷିତ ମୃଦୁରସେ,
ହେ ବିଭୂଷିତେ, ହଟକାଙ୍ଗୀ ଝଟତିରେ ଆଣ
ଶୁଭଲଗ୍ନ ଘେନିଣ ବରଣ ହେ,
ପଙ୍କଜାରି ଶିରକ୍ଷତେ ଦୃଷ୍ଟିପାତ ବ୍ୟତିକ୍ରାନ୍ତେ ବିଭାକର ସୁଲଗ୍ନେ ଗମନ ହେ ।
ନବ ବାରିଦାଙ୍ଗ ହୃଦ ନନ୍ଦନବନ ପ୍ରସିଦ୍ଧ ଆଶା ଦେବ ପାଦପ ପ୍ରଫୁଲ୍ଲ
ସୁମନ ସୁମନ ଫୁଟି ଆନନ୍ଦ ବାସ ପ୍ରକଟି ସୀତାରସ ବିଶେଷ ଉଚ୍ଛୁଳ
ସେ ପ୍ରମୋଦରେ, ଅସୀମରେ ନୁହଇ ତୁଳନା,
'ସୀତା' ବର୍ଣ୍ଣେ ବିଶେଷିତା ବିଧିବିଧାନରେ ଯୁକ୍ତା ମାନସରେ ଘେନ ତ ସୁମନହେ ।"
(ଏକାଦଶ ଛାନ୍ଦ)

'ବୈଦେହୀଶ ବିଳାସ'ରେ ଉପେନ୍ଦ୍ରଙ୍କର ଚିତ୍ରକୂଟ ବର୍ଣ୍ଣନା –

"ବୋଧେ ଶୃଙ୍ଗଳାରେ ରଘୁନାଥ ସୀତାମତି
ବିଚିତ୍ର ଚିତ୍ରକୂଟଯେ କୁଟଜେ ବ୍ରତତିଯେ ।
ବ୍ରତତିତତି ଜୟନ୍ତୀ ଅତିଭା ବାସନ୍ତି
ବାସନ୍ତୀ ସତିରେ ! ଫୁଲ୍ଲ ଫୁଲ୍ଲରେ ପ୍ରବର୍ତ୍ତି ଯେ ।

× × ×

ଦିବ୍ୟଲୋକରେ ପ୍ରିୟଙ୍କ ମାଧବୀ ସଂଘାତ
ଦିବ୍ୟଲୋକରେ ପ୍ରିୟକ ମାଧବୀ ସଂଘାତ ଯେ ।
ବାଳିକା କନକକାନ୍ତି କନକ କନକ
ବାଳିକା କନକ କାନ୍ତି କନକ କନକ ଯେ ।"

କବି ଯଦୁମଣିଙ୍କ ବର୍ଣ୍ଣନା ଏହିପରି –

"ସୀତା ଶୀତାମ୍ବୁଜମୁଖୀ ଘେନି ହରଷରେ
ସରସରେ ହରଷରେ ଚିତ୍ରକୂଟ ପରେ ।
ବନେ ବନେ ଭ୍ରମନ୍ତି ସେ ହୋଇଣ ଆନନ୍ଦ
ବର ବରଣୀର କର ଧରିଣ ପ୍ରମୋଦ ଯେ ।
କୁନ୍ଦକୁନ୍ଦ ଦନ୍ତୀ ! ଦେଖ ! ଫୁଟିଣ ସୁବାସ
ମଲ୍ଲି ମଲ୍ଲି ହାସି ! ଶୁକ୍ଳ ପ୍ରକାଶ ପ୍ରକାଶ ।
ରୁରୁ ରୁରୁ ନେତ୍ରି ! ଅନା ଶାବକ ଖେଳାଇ
ଦନ୍ତୀ ଦନ୍ତୀ ରତି ! ଦେଖ ଚିତ୍ତତୋଷ ବହି ।
ଦେଖ ଗୋ ଅଶୋକ ଶୋକ ହୃଦୁ ହେବ ଦୂର
ଅଧୀରା ନ ହୋଇ ଧୀରା ଧୀର ଗତି କର ।" (ଅଷ୍ଟମ ଛାନ୍ଦ)

ଓଡ଼ିଆ କାବ୍ୟଯୁଗର ଅନ୍ୟତମ କାଳଜୟୀ ପ୍ରତିଭା ହେଉଛନ୍ତି ଅଭିମନ୍ୟୁ ସାମନ୍ତସିଂହାର । ବିଦଗ୍ଧ କବି ଅଭିମନ୍ୟୁ ସାମନ୍ତସିଂହାର ମଧ୍ୟ ଭଞ୍ଜକବିଙ୍କ ଦ୍ୱାରା ପ୍ରଭାବିତ ହୋଇଛନ୍ତି । ସେହି ମର୍ମରେ ସେ ଗାଇଥିଲେ –

"ଉପଇନ୍ଦ୍ର ପଦ ଅଭିମନ୍ୟୁ ମନୁଁ
ଉପେକ୍ଷା ଯେ ନୋହିବ ତ ଦିନୁ ଦିନୁ ।"

ନିମ୍ନରେ କବି ଅଭିମନ୍ୟୁ କିପରି ଉପେନ୍ଦ୍ରଙ୍କ ପଦ ପଂକ୍ତିଦ୍ୱାରା ପ୍ରଭାବିତ ତାହା ଉଲ୍ଲେଖ କରାଗଲା ।

ଉପେନ୍ଦ୍ର ଭଞ୍ଜ –

"ଏଥୁ ଅନ୍ତେ ଶୁଣ ରସ ଗ୍ରୀଷମେ ନିଶିପ୍ରବେଶ
ଉଦୟ ତାରା ଜୀବେଶ ହେଲେ ଆକାଶେ
ଚକ୍ର ସୁଖ ଚକ୍ର ନକ୍ର ଛେଦନେ ହୀରକ ଚକ୍ର
ଫିଙ୍ଗିଛି ତାତ ସିଦ୍ଧିରେ କାମ କି ରୋଷେ
ବେଶ ହେବ କି ରାତ୍ରିବାଳୀ
ସ୍ଫଟିକ ପେଟୀରେ କିବା କସ୍ତୁରୀ ଦଳି ।
(ଲା.ବ.- ଏକାଦଶ ଛାନ୍ଦ)

ଅଭିମନ୍ୟୁ ଲେଖିଛନ୍ତି –

ତାତ ସିଦ୍ଧିକି ବଳିବ ବିଚାରିକି କାମଦେବ
ମାଣିକ୍ୟ ହୀରା ରଥାଙ୍ଗ ଫିଙ୍ଗି ଦେଇଛି
ବିଯୋଗୀ ସୁଖ ଦୁଃଖଦ ସଂଯୋଗୀ ଦୁଃଖ ସୁଖଦ
ପରସ୍ପରେ ବିରୋଧାଭାସକୁ କରୁଛି । (ବି.ଚି.–ତ୍ରିଂଶଛାନ୍ଦ)

ଉପେନ୍ଦ୍ର ଭଞ୍ଜ –

"ଅଣିମାଦି ସୁଖଦାୟୀ ଶୋଇଅଛି ଅଣିଆଇ
ପଲ୍ୟଙ୍କ ଅଙ୍କରେ ଦିଶେ ଏମନ୍ତ ଶୋଭା
ରସାଣ ରଜତ ବାଡ଼େ କନକଲତା କି ଜଡ଼େ
ବିଶଦ ଘନରେ କିସେ ଚପଳପ୍ରଭା
ବାମକର କପୋଳ ତଳ
କେନ୍ଦୁପଲ୍ଲବେ ଥୁଆ କି ଫୁଲ କମଳ ।"
(ଲା.ବ. – ୧୧ଶ ଛାନ୍ଦ)

ଅଭିମନ୍ୟୁ ସାମନ୍ତ ସିଂହାର –

"ବିଶ୍ୱଚିତ୍ତ ବଶପାଇଁ ପ୍ରୀତି ମୂର୍ତ୍ତିମନ୍ତ ହୋଇ
ଅଣିମାଦି ଦେଇ ଅଣି ହୋଇ ଶୋଇଛି
ପାଣିଦେବା ଗଣ୍ଡତଳେ ଶଶୀ କୋକନଦକୋଳେ
ପହୁଡ଼ିବାର ଶୋଭାକୁ ହସି ଦେଉଛି ।
କୃଷ୍ଣ ବର୍ଣ୍ଣ ଶେଯେ ଶୟନ
ସଜଳ ଘନେ ସ୍ଥକିତ ବିଦ୍ୟୁ ସମାନ ।" (ବି.ଚି. – ୩୦ଶ ଛାନ୍ଦ)

ଲାବଣ୍ୟବତୀ –

"ଭଜୁ ନ ଭଜୁ ବାନ୍ଧବୀ ଆଗ ମୁଁ ନିଦ୍ରାଭାଙ୍ଗିବି
ତନୁ ହେଲେ ଛୁଇଁଥିବି ଏ ବଡ଼ ଲାଭ
ଯେ ପାରେ ବାଳା ମନାଇଁ ନିଶ୍ଚେ ମର୍ତ୍ତ୍ୟେ ଇନ୍ଦ୍ର ସେହି
ମନରେ ଭାବନା କରି ପରମ ଶୁଭ
ଜାନୁ ଧରି ଦେଲା ଝୁଲାଇ
ପୁଂସ କର ଲାଗି ନିଦ୍ରା ବିନାଶ ହୋଇ । (ଏକାଦଶ ଛାନ୍ଦ)

'ସୁଲକ୍ଷଣା' ରେ ଅଭିମନ୍ୟୁଙ୍କ ବର୍ଣ୍ଣନା –

"ସୁନ୍ଦରୀ ଭଜୁ ଅବା ନ ଭଜୁ ମୋତେ
ସୁଅଙ୍ଗୀଗାତ୍ର ମାତ୍ର ଛୁଇଁବି ହସ୍ତେ ଯେ
ସେ ନ ଭଜିଲେ ଜୀବ ଅବଶ୍ୟ ଯିବ
ଶ୍ରୀଅଙ୍ଗ ଛୁଇଁଥିଲେ ଗତି ତ ହେବ ହେ ।
ସୁଚିତ୍ତେ ଏତେ ଭାଳି ଆତୁର ହୋଇ
ସୁତନୁ ଜାନୁଧରି ଦେଲା ଝୁଲାଇ ଯେ
ସୁଲକ୍ଷଣା ଚମକି ଉଠି ବସିଲା
ଶ୍ରୀହସ୍ତେ ନେତ୍ର ଘଷି ଅନାଇଦେଲା ଯେ ।" (ପଞ୍ଚମ ଛାନ୍ଦ)

ଲାବଣ୍ୟବତୀ –

ରାମ ବୋଲି ବିସ୍ମୟ ହୋଇ
ଉପଇନ୍ଦ୍ର ବୀରବର ଏ ରସ କହି । (ଏକାଦଶ ଛାନ୍ଦ)

ବିଦଗ୍ଧ ଚିନ୍ତାମଣି –

କୃଷ୍ଣ ବୋଲି ବିସ୍ମୟ ଚିତ୍ତ
ଅଭିମନ୍ୟୁ ସାମନ୍ତ ସିଂହାର ରଚିତ । (ତ୍ରିଂଶଛାନ୍ଦ)

ଲାବଣ୍ୟବତୀ –

ବିହି ସବୁଠାରୁ ସାରସାର ଭାଗ ଆଣି
ପୁରଟ ପ୍ରତିମା ପରି ରଚିଲା ରମଣୀ ।

ବିଦଗ୍ଧ ଚିନ୍ତାମଣି –

ବିଶ୍ୱକାନ୍ତି ସାର ପୀୟୂଷ ବୋଳି
ବିଧି ବନାଇଛି ଶୋଭା ପିତୁଳି ।

ଲାବଣ୍ୟବତୀ –

ଉଠି ଭାଙ୍ଗନ୍ତେ ଅଳସ କି ଶୋଭା କୁଚକଳସ
ଟେକି ହୋଏ କି ମେରୁକୁ ଜିଣିଲା ଗର୍ବେ
ଉର୍ଦ୍ଧ୍ୱେ ଛନ୍ଦି କରବେନି ଶୋଭା ଲପନକୁ ଘେନି
ଚନ୍ଦ୍ରେ କି ବିଦ୍ୟୁ ପରିଧି ହୋଇଲା ଏବେ
ମୁଖ ଜୃମ୍ଭା ବଶେ ରାଜିତ
ଦର ବିକଶିତ କୋକନଦ ଯେମନ୍ତ ।

ବିଦଗ୍ଧ ଚିନ୍ତାମଣି –

ନିଦ୍ରାମୁଦ୍ରାଗଲା ଭାଙ୍ଗି ଅଳସ ଭାଙ୍ଗିବା ଭଙ୍ଗୀ
କୁଚମଙ୍ଗଳ କଳଶ ଦେଖାଇଲା କି
ଉର୍ଦ୍ଧ୍ୱ କରି ଛନ୍ଦୁ ପାଣି କିଶୋଭା ଶ୍ରୀମୁଖ ଆଣି
ହେମପ୍ରଭାରେ ଚନ୍ଦ୍ରମା ବିଜେ କଲାକି
ଜୃମ୍ଭା କାଳେ ତୁଣ୍ଡ ମାଧୁରୀ
ରଙ୍ଗ ସମ୍ପୁଟକ ଅର୍ଦ୍ଧ ଫିଟିଲା ପରି ।' (ତ୍ରିଂଶଛାନ୍ଦ)

ବୈଷ୍ଣବ କବି ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା ଉପେନ୍ଦ୍ରଙ୍କ ଦ୍ୱାରା ଉଣା ଅଧିକେ ପ୍ରଭାବିତ ହୋଇଛନ୍ତି । ନିମ୍ନ ଦୃଷ୍ଟାନ୍ତରୁ ଏହା ଲକ୍ଷ୍ୟ କରିହୁଏ ।

ଉପେନ୍ଦ୍ର ଲେଖିଛନ୍ତି –

ସାରଙ୍ଗ ରଦ ପଲଙ୍କେ ସାରଙ୍ଗ ପଙ୍କିଳ ପଙ୍କେ
ସାରଙ୍ଗ ମୁଖୀ ସାରଙ୍ଗ ସାରଙ୍ଗରେ ମାତିଲେ । (ସୁଭଦ୍ରା ପରିଣୟ)

ସଦାନନ୍ଦ କବିସୂର୍ଯ୍ୟ ଲେଖିଲେ –

ସଦାନନ୍ଦ ସାରଙ୍ଗ ତରୁତଳେ ସାରଙ୍ଗ –
ଧର ହେଲେ ସାରଙ୍ଗମୁଖୀ ଦେଖଇଟି ।

ଏହିପରି ଭାବରେ ଉପେନ୍ଦ୍ରଙ୍କ ସମକାଳୀନ କତିପୟ କବି ମଧ୍ୟ ତାଙ୍କ ଦ୍ୱାରା ରଚିତ କାବ୍ୟଦ୍ୱାରା ପ୍ରଭାବିତ ହୋଇଛନ୍ତି । ଉପେନ୍ଦ୍ର ଭଞ୍ଜଙ୍କ ପରବର୍ତ୍ତୀ କବିମାନେ ମଧ୍ୟ ତାଙ୍କର କାବ୍ୟକୃତି ଦ୍ୱାରା ପ୍ରଭାବିତ ହୋଇଛନ୍ତି । କବି ବ୍ରଜନାଥ ବଡ଼ଜେନା ମଧ୍ୟ ଉପେନ୍ଦ୍ରଙ୍କ ଦ୍ୱାରା ପ୍ରଭାବିତ ହୋଇ 'ଅ' ଆଦ୍ୟ ନିୟମରେ 'ଅମ୍ବିକାବିଳାସ' କାବ୍ୟ ରଚନା କରିଛନ୍ତି । ଭଞ୍ଜସାହିତ୍ୟ ଓ ସଙ୍ଗୀତ ସମଯୁଗୀୟ କବି ଏବଂ ପରବର୍ତ୍ତୀ କାଳର କବିମାନଙ୍କୁ ଅନେକ ଭାବରେ ପ୍ରଭାବିତ କରିଛି । ସୁତରାଂ ଉପେନ୍ଦ୍ର ହୋଇଛନ୍ତି କବିଗୁରୁ । ମଧ୍ୟଯୁଗୀୟ କବିମାନଙ୍କ ମଧ୍ୟରେ ସେ ହେଉଛନ୍ତି ମଧ୍ୟାହ୍ନ ସୂର୍ଯ୍ୟ ।



# ପଞ୍ଚମ ପରିଚ୍ଛେଦ

## ଶାଶ୍ୱତ କାବ୍ୟଶିଳ୍ପୀ : କବିସମ୍ରାଟ

ମହାକବି କାଳିଦାସ ଲେଖିଛନ୍ତି –

"ବାର୍ଗଥାବିବ ସଂପୃକ୍ତୌ ବାଗର୍ଥ ପ୍ରତିପତ୍ତୟେ
ଜଗତଃ ପିତରୌ ବନ୍ଦେ ପାର୍ବତୀପରମେଶ୍ୱରୌ ।"

(ରଘୁବଂଶମ୍– ପ୍ରଥମଃ ସର୍ଗଃ)

ଅର୍ଥାତ୍ ମହାକବି କାଳିଦାସ କହୁଛନ୍ତି ଯେ ଶବ୍ଦ ଓ ଅର୍ଥ ପରି ସର୍ବଦା ଏକତ୍ରିତ ହୋଇଥିବା ସଂସାର ମାତାପିତା ପାର୍ବତୀ ଓ ପରମେଶ୍ୱରଙ୍କୁ ଶବ୍ଦ ଅର୍ଥ ଜ୍ଞାନ ଆହରଣ କରିବା ନିମନ୍ତେ ହୃଦୟରେ ତାଙ୍କ ପାଦପଦ୍ମରେ ନମସ୍କାର କରୁଅଛି । ସୁତରାଂ ଅର୍ଦ୍ଧନାରୀସ୍ୱର ରୂପପରି କାବ୍ୟରେ ଶବ୍ଦ ଓ ଅର୍ଥର ସମ୍ପର୍କ ନିତ୍ୟ ଓ ଅପରିହାର୍ଯ୍ୟ । ଭାରତୀୟ ବାଙ୍ମୟ ପରମ୍ପରାରେ ଏକଥା ପ୍ରତିପାଦିତ ହୋଇଛି । କାବ୍ୟର ଶରୀର ହେଉଛି ଶବ୍ଦ ଓ ଅର୍ଥ । ଉପେନ୍ଦ୍ର ଭଞ୍ଜ ଥିଲେ ମହାନ ଶବ୍ଦକବି । ସେ କେବଳ କବିସମ୍ରାଟ ନୁହନ୍ତି, ସେ ମଧ୍ୟ ଶବ୍ଦ ସମ୍ରାଟ । ସାହିତ୍ୟ ଜଗତରେ ସେ ଶବ୍ଦ ପାରାବାର ସୃଷ୍ଟି କରିଛନ୍ତି । ଅପୂର୍ବ ଶାବ୍ଦିକତା ଭଞ୍ଜ ଭାରତୀର ବିଶିଷ୍ଟ ଦିଗ । ଉପେନ୍ଦ୍ରଙ୍କ ସାରସ୍ୱତ ସାଧନା ଯୋଗୁଁ ଓଡ଼ିଆ ଶବ୍ଦ ଭଣ୍ଡାର ବହୁଳ ଭାବରେ ସମୃଦ୍ଧ ହୋଇଛି । କାରଣ କବିର ଲେଖନୀରେ ଗୋଟିଏ ଭାଷା ସମୃଦ୍ଧ ହୋଇଥାଏ । ଉପେନ୍ଦ୍ର ବିଭିନ୍ନ କାବ୍ୟରେ ବହୁଳ ଶବ୍ଦର ପ୍ରୟୋଗ କରି ଶବ୍ଦର ବୈଚିତ୍ର୍ୟ ସୃଷ୍ଟି କରିଛନ୍ତି । କବିଙ୍କର 'ବୈଦେହୀଶ ବିଳାସ', 'ସୁଭଦ୍ରାପରିଣୟ' ଓ 'କଳାକଉତୁକ' 'ଅବନାରସ ତରଙ୍ଗ' ଇତ୍ୟାଦିରୁ ଭଞ୍ଜକବିଙ୍କର ଅଦ୍ଭୁତ ଶାବ୍ଦିକତାର ପରିଚୟ ମିଳେ । କ୍ଲିଷ୍ଟ ଓ କୋମଳ ପଦବିନ୍ୟାସ ଦ୍ୱାରା କାବ୍ୟକୃତିରେ ଉଭୟ ନାରିକେଳ ଓ ଦ୍ରାକ୍ଷାପାକର ସମନ୍ୱୟ ଘଟିଛି ।

ଉପେନ୍ଦ୍ର ଭଞ୍ଜ ଅର୍ଥକବି । ତାଙ୍କର କାବ୍ୟରେ ଶବ୍ଦଗୁଡ଼ିକ ଏକାର୍ଥବୋଧକ, ଦ୍ୱି-ଅର୍ଥ ବୋଧକ ଓ ବହୁ ଅର୍ଥବୋଧକ । ବିବିଧ ଅର୍ଥ ବହନ କରୁଥିବା

ଶବ୍ଦମାନଙ୍କୁ ନେଇ ଚମତ୍କାରିତା ପ୍ରଦର୍ଶନ କରିବା ଭଞ୍ଜଙ୍କ କାବ୍ୟସର୍ଜନାର ବିଶିଷ୍ଟଦିଗ ।

ଉପେନ୍ଦ୍ର ଥିଲେ ବିଶିଷ୍ଟ ଆଳଙ୍କାରିକ କବି । ଭଞ୍ଜଭାରତୀ ବିବିଧ ଅଳଙ୍କାରରେ ବିମଣ୍ଡିତା । କବି ତାଙ୍କର ଲୋକପ୍ରିୟ କାବ୍ୟ ଲାବଣ୍ୟବତୀ, କୋଟି ବ୍ରହ୍ମାଣ୍ଡସୁନ୍ଦରୀ, ପ୍ରେମସୁଧାନିଧି, ସୁଭଦ୍ରାପରିଣୟ, ବୈଦେହୀଶ ବିଳାସ, ରସପଞ୍ଚକ, ଚିତ୍ରକାବ୍ୟ ବନ୍ଧୋଦୟ ପ୍ରଭୃତି କାବ୍ୟଗୁଡ଼ିକରେ ବିଭିନ୍ନ ଶବ୍ଦାଳଙ୍କାର ଓ ଅର୍ଥାଳଙ୍କାର ବିନ୍ୟାସ କରିବାରେ ଅପୂର୍ବ ସଫଳତା ଲାଭ କରିଛନ୍ତି । କବି ତ ସ୍ୱୟଂ କହିଛନ୍ତି –

(କ) "ଯେ କବି ଅର୍ଥୀ ପଣ୍ଡିତ ସୁହୃଦ
ରସିକ ଯେହି ଘେନି ମୋ ଏ ଛାନ୍ଦ
ବ୍ୟସ୍ତ ଅଳଙ୍କାର,
ମଣ୍ଡନ ବିଧି ନିର୍ଦ୍ଦୋଷ ବିଚାର ।
ଉତ୍‌ପ୍ରେକ୍ଷା ଉପମା ରୂପକ ତିନି
ବକ୍ରୋକ୍ତି ଶ୍ଳେଷ ଅଭିପ୍ରାୟ ଘେନି ।
ଦତ୍ତଚ୍ୟୁତାକ୍ଷର ଉଦୟ କାହିଁ
ବୁଝ ସଂଖ୍ୟାବାନ ଆୟତ୍ତ ନାହିଁ ।"

(କୋ.ବ୍ର.ସୁ – ଦ୍ୱାଦଶ ଛାନ୍ଦ)

(ଖ) "ବିରଳ ଆଦ୍ୟ ଯମକେ ବିଦ୍ୟକ
ବିଭୂଷିତ ଧ୍ୱନି ପ୍ରାନ୍ତଯମକ
ବିଶ୍ରାମ ଯମକ ଆଦ୍ୟ ପ୍ରାନ୍ତରେ
ବିଶୁଦ୍ଧ ରୂପକ ବିଂଶ ପଦରେ
ବୀରବର କହି
ବାଳିଶେ ବିସ୍ମୟ ବୁଧକୁ ମୋହି ।"

(ବୈ.ବି – ଦ୍ୱାଦଶ ଛାନ୍ଦ)

ଶବ୍ଦାଳଙ୍କାର ମଧ୍ୟରେ ଅନୁପ୍ରାସ ଶ୍ରେଷ୍ଠ । ସାହିତ୍ୟଦର୍ପଣ ଗ୍ରନ୍ଥରେ ପାଞ୍ଚ ପ୍ରକାରର ଅନୁପ୍ରାସର ଉଲ୍ଲେଖ ରହିଛି – ଛେକାନୁପ୍ରାସ, ଶ୍ରୁତ୍ୟନୁପ୍ରାସ, ବୃତ୍ତ୍ୟନୁପ୍ରାସ, ଅନ୍ତ୍ୟାନୁପ୍ରାସ ଓ ଲାଟାନୁପ୍ରାସ । ଉପେନ୍ଦ୍ରଙ୍କ କାବ୍ୟଗୁଡ଼ିକରେ ଏହି

ପଞ୍ଚବିଧ ଅନୁପ୍ରାସ ବ୍ୟତୀତ ପୂର୍ବାନୁପ୍ରାସ, ଯୁଗ୍ମ ପ୍ରାନ୍ତାନୁପ୍ରାସ, ଅପୂର୍ବ ଛେକାନୁପ୍ରାସ, ତ୍ରିଭଙ୍ଗୀ ଅନୁପ୍ରାସ, ଦ୍ୱିଭଙ୍ଗ ଅନୁପ୍ରାସ ପ୍ରଭୃତିର ବ୍ୟବହାର ଦେଖିବାକୁ ମିଳେ । ଉପେନ୍ଦ୍ରଙ୍କର 'ପ୍ରେମସୁଧାନିଧି' କାବ୍ୟର ଷୋହଳ ଗୋଟି ଛାନ୍ଦ ଭିନ୍ନ ଭିନ୍ନ ଅଳଙ୍କାରରେ ରଚିତ ହୋଇଛି । 'ବୈଦେହୀଶ ବିଳାସ' କାବ୍ୟର ୧୯ଶ ଛାନ୍ଦରେ ପନ୍ଦରଗୋଟି ଅଳଙ୍କାର ସନ୍ନିବେଶିତ । ଉପେନ୍ଦ୍ର ବହୁବିଧ ଶବ୍ଦାଳଙ୍କାର ଓ ଅର୍ଥାଳଙ୍କାର ବିନ୍ୟାସ କରି ଅଳଙ୍କାରର ପ୍ରୟୋଗରେ ଅସାଧାରଣ କୃତିତ୍ୱ ପ୍ରଦର୍ଶନ କରିଛନ୍ତି ।

ଉପେନ୍ଦ୍ର ଥିଲେ ଜଣେ କୃତବିଦ୍ୟ ରସକବି । କାବ୍ୟରେ ରସର ମହତ୍ତ୍ୱ ସର୍ବାଦୌ ସ୍ୱୀକୃତ । ଆଳଙ୍କାରିକମାନେ ନଅଗୋଟି ରସର ଅବତାରଣା କରିଛନ୍ତି – ଶୃଙ୍ଗାର, ହାସ୍ୟ, କରୁଣ, ରୌଦ୍ର, ବୀର, ଭୟାନକ, ବିଭତ୍ସ, ଅଦ୍ଭୁତ ଓ ଶାନ୍ତରସ । ଯଦିଚ ଆଚାର୍ଯ୍ୟ ଭରତମୁନି ଆଠଗୋଟି ରସକୁ ସ୍ୱୀକାର କରିଥିଲେ, ପରବର୍ତ୍ତୀ କାଳର ଆଳଙ୍କାରିକମାନେ ରସର ସଂଖ୍ୟା ନଅ ବୋଲି ନିର୍ଦ୍ଧାରଣ କରିଛନ୍ତି । ଏହି ନବରସ ମଧ୍ୟରେ ଶୃଙ୍ଗାରସ ଶ୍ରେଷ୍ଠତା ଲାଭ କରିଛି । କବିର ଶୃଙ୍ଗାରୀ ମନୋଭାବ ଦ୍ୱାରା କାବ୍ୟଜଗତ ରସମୟ ହୁଏ ବୋଲି ଭୋଜରାଜ ତାଙ୍କ ପ୍ରଣୀତ 'ସରସ୍ୱତୀ କଣ୍ଠାଭରଣ'ରେ ମତ ଦିଅନ୍ତି–

"ଶୃଙ୍ଗାରୀଚେତ୍ କବିଃ କାବ୍ୟ ଜାତଂ ରସମୟଂ ଜଗତ୍
ସ ଏବ ବୀତରାଗଶ୍ଚେନ୍ନୀରସଂ ସର୍ବମେବ ତତ୍ ।"

ପୁନଶ୍ଚ କାଳିଦାସ, ବାଣଭଟ୍ଟ, ମାଘ, ଶ୍ରୀହର୍ଷ, ଗୋବର୍ଦ୍ଧନାଚାର୍ଯ୍ୟ, କବିରାଜ ଧୋୟୀ, କବିରାଜ ଜୟଦେବ ପ୍ରମୁଖ କବିମାନେ କାବ୍ୟରେ ଶୃଙ୍ଗାର ରସର ଶ୍ରେଷ୍ଠତାକୁ ପ୍ରତିପାଦନ କରିଛନ୍ତି । ଉପେନ୍ଦ୍ର ଥିଲେ ଅପୂର୍ବ ରସବାଦୀ କବି । ତାଙ୍କ କାବ୍ୟରେ ନବରସର ବର୍ଣ୍ଣନା ରହିଛି । ତଥାପି ପୂର୍ବସୂରୀ କବିମାନଙ୍କ ପଦାଙ୍କ ଅନୁସରଣ କରି ଉପେନ୍ଦ୍ର ଶୃଙ୍ଗାରସରର ଅବତାରଣା କରି ଅପୂର୍ବ କାବ୍ୟମାଧୁର୍ଯ୍ୟ ସୃଷ୍ଟି କରିଯାଇଛନ୍ତି । ଆଳଙ୍କାରିକମାନଙ୍କ ମତରେ ଶୃଙ୍ଗାରସରରେ ମାଧୁର୍ଯ୍ୟଗୁଣ ପ୍ରତିଷ୍ଠା ଲାଭ କରିଥାଏ । ଉପେନ୍ଦ୍ରଙ୍କ କାବ୍ୟରାଜିରେ ସମ୍ଭୋଗ ଓ ବିପ୍ରଲମ୍ଭ ଶୃଙ୍ଗାର ରସର ମନୋଜ୍ଞ ବର୍ଣ୍ଣନା ରହିଛି । କିନ୍ତୁ ତାଙ୍କର ଶୃଙ୍ଗାରଚେତନା ଦେହରୁ ଦେହାତୀତ ହୋଇ ଶାଶ୍ୱତ ସୌନ୍ଦର୍ଯ୍ୟରେ ପରିଣତ ହୋଇଛି । ସର୍ବୋପରି ଉପେନ୍ଦ୍ର ବିରହ ଚିତ୍ରଣରେ ସମସ୍ତ କବିକୁ ଅତିକ୍ରମ

କରିଛନ୍ତି । ବିରହ ବର୍ଣ୍ଣନାରେ ସେ ହିଁ ଶ୍ରେଷ୍ଠ କବି । ବସ୍ତୁତଃ ପ୍ରେମର ପୋଖତ ଶିଳ୍ପୀ ହେଉଛନ୍ତି ବିରାହାତ୍ମକ ।

ଉପେନ୍ଦ୍ର ମଧ ଥିଲେ ଭକ୍ତକବି । ତାଙ୍କର ଭକ୍ତିଭାବନାର ପଟାନ୍ତର ନାହିଁ । ଉପେନ୍ଦ୍ର ଯେଉଁପରି ଭାବରେ ଶ୍ରୀରାମ, ଶିବ, ଶ୍ରୀଜଗନ୍ନାଥଙ୍କୁ ଭକ୍ତିପ୍ରବଣ ହୃଦୟରେ ସ୍ତୁତି କରିଛନ୍ତି, ସେଥିରୁ ତାଙ୍କର ଗଭୀର ଭକ୍ତିଭାବନାର ପରିଚୟ ମିଳେ । ଉପେନ୍ଦ୍ର ଭଞ୍ଜ ପ୍ରସଙ୍ଗକ୍ରମେ ଦୁର୍ଗା, ଚନ୍ଦ୍ର, ସୂର୍ଯ୍ୟ, ଶ୍ରୀକୃଷ୍ଣଙ୍କୁ ସ୍ତୁତି କରିଛନ୍ତି । ଉପେନ୍ଦ୍ର ଥିଲେ ରାମୋପାସକ । ତଥାପି ସେ ଓଡ଼ିଶାର ବଡ଼ଠାକୁର ଶ୍ରୀଜଗନ୍ନାଥଙ୍କୁ ପରଂବ୍ରହ୍ମ ପୁରୁଷ ଓ ମହାବିଷ୍ଣୁ ଭାବରେ ବର୍ଣ୍ଣନା କରି ତାଙ୍କର ଜଗନ୍ନାଥପ୍ରାଣତାର ପରିଚୟ ଦେଇଛନ୍ତି । କୋଟିବ୍ରହ୍ମାଣ୍ଡସୁନ୍ଦରୀ କାବ୍ୟରେ କବି ଉପେନ୍ଦ୍ର ପୁରୁଷୋତ୍ତମ ଶ୍ରୀଜଗନ୍ନାଥ ଓ ପୁରୁଷୋତ୍ତମ ଧାମର ଦିବ୍ୟ ବର୍ଣ୍ଣନା କରି ଉଚ୍ଚକୋଟିର ଭକ୍ତି ଭାବନାର ପରିଚୟ ଦେଇଛନ୍ତି । 'ବୈଦେହୀଶ ବିଳାସ' କାବ୍ୟର ପ୍ରଥମ ଛାନ୍ଦରେ 'ବନ୍ଦଇଦୀନବାନ୍ଧବ ହରି' ପଦପଂକ୍ତିରେ କବି ଉପେନ୍ଦ୍ର ଏକାଧାରରେ ଶ୍ରୀରାମ, ଶ୍ରୀଜଗନ୍ନାଥ, ଶିବ, ବ୍ରହ୍ମା, ସୂର୍ଯ୍ୟ, ଦୁର୍ଗାଙ୍କୁ, ସ୍ତୁତି କରିଥିବାର ପ୍ରମାଣ ମିଳେ । 'ଲାବଣ୍ୟବତୀ' କାବ୍ୟର ମଙ୍ଗଳାଚରଣରେ କବି 'ଜୟଜୟଜୟ ରାମ ଜନକସୁଖଦ'ରେ ଏକାଧାରାରେ ଶ୍ରୀରାମ, ପର୍ଶୁରାମ ଓ ବଳରାମଙ୍କୁ ସ୍ତୁତି କରିଛନ୍ତି । ଉପେନ୍ଦ୍ର ତ ସ୍ୱୟଂ ପ୍ରଭୁଙ୍କ ପାଖରେ ଶରଣାପନ୍ନ ହୋଇ ଗାଇଛନ୍ତି –

"କବି ଉପଇନ୍ଦ୍ର ତବ କୃପାରେ ହୋଇଛି
ଏଥେ ମନୋରଥ ସାର୍ଥେ କି ସଂଶୟ ଅଛି ଯେ ।"

କବି ଉପେନ୍ଦ୍ର ମଧ ତାଙ୍କର ଭକ୍ତିଗୀତିକା ଗୁଡ଼ିକରେ ଏବଂ 'ନୀଳାଦ୍ରୀଶ ଚଉତିଶା'ରେ ତାଙ୍କର ବିମଳ ଭକ୍ତିଭାବନାର ପରିଚୟ ଦେଇଛନ୍ତି ।

ରାଜଶେଖର 'କାବ୍ୟ ମୀମଂସା' ଗ୍ରନ୍ଥରେ କବିମାନଙ୍କୁ ଅଷ୍ଟବିଧ ବୋଲି ଉଲ୍ଲେଖ କରିଛନ୍ତି । ଏହି ଅଷ୍ଟବିଧ କବି ହେଲେ – ରଚନାକବି, ଶବ୍ଦକବି, ଅର୍ଥକବି, ଆଳଙ୍କାରିକ କବି, ଶୃଙ୍ଗାରୀକବି, ମାର୍ଗକବି ଏବଂ ଶାସ୍ତ୍ର-ଅର୍ଥ କବି । ଉପେନ୍ଦ୍ର ବାସ୍ତବରେ ଥିଲେ ଏହି ଅଷ୍ଟ କବିମାନଙ୍କର ଏକ ଅପୂର୍ବ ସମନ୍ୱୟ ।

ଉପେନ୍ଦ୍ରଙ୍କୁ ମଧ ସଙ୍ଗୀତ ସମ୍ରାଟ କୁହାଯାଏ । ଉପେନ୍ଦ୍ରଙ୍କ ବିରଚିତ କାବ୍ୟଗୁଡ଼ିକର ଛାନ୍ଦଗୁଡ଼ିକ ବିଭିନ୍ନ ରାଗରାଗିଣୀଯୁକ୍ତ ଓ ସାଙ୍ଗୀତିକ ବିଭବରେ

ପରିପୂର୍ଣ୍ଣ । ଭଞ୍ଜ ସାହିତ୍ୟର ଅପୂର୍ବ ସାଙ୍ଗୀତିକ ବିଭବ ଯୁଗ ଯୁଗ ଧରି ଓଡ଼ିଆ ଜାତିକୁ ରସବୋଧରେ ଆମୋଦିତ କରିଅଛି । ଉପେନ୍ଦ୍ର ତାଙ୍କ କାବ୍ୟଗୁଡ଼ିକରେ ନଳିନୀଗୌଡ଼ା, ପଟହମଞ୍ଜରୀ, କେଦାର, ରସକୋଇଲା, ବସନ୍ତ, ଭୂପାଳ, ମଙ୍ଗଳଗୁଜ୍ଜରୀ, ସାମଗୁଜ୍ଜରୀ, ଦେଶାକ୍ଷ, ଚୋଖି, କଉଶିକ, କଳହଂସକେଦାର, ବସନ୍ତଭୈରବ, ଶଙ୍କରାଭରଣ, ମାଳବ, କନ୍ନଡ଼ା, କଲ୍ୟାଣଆହାରୀ, ପାହାଡ଼ିଆ କେଦାର, ଘଣ୍ଟାରବ, ଚିନ୍ତାଦେଶାକ୍ଷ, ବସନ୍ତବରାଡ଼ି, ପଞ୍ଚମବରାଡ଼ି, କଳସା, ରାଜବିଜେ, ମୁଖାବରୀ, ବିଭାସଗୁଜ୍ଜରୀ, ମଙ୍ଗଳ, ରାମକେରୀ, ମାଳବଗୌଡ଼ା, କାଳୀ, ରସକୁଲ୍ୟା, ଧନାଶ୍ରୀ, ଚିନ୍ତାଦେଶାକ୍ଷ, କୁମ୍ଭକାମୋଦୀ, କାଫିକାମୋଦୀ, ସିନ୍ଧୁଦେଶାକ୍ଷ, ଚିନ୍ତାବରାଡ଼ି, ଆଶାବରୀ, ବଙ୍ଗଳାଶ୍ରୀ, ଭାଟିଆରୀ ପ୍ରଭୃତି ରାଗରାଗିଣୀ ଯୁକ୍ତ କରିଛନ୍ତି । ଏହା ବ୍ୟତୀତ ତାଙ୍କର ବିଭିନ୍ନ ଛାନ୍ଦଗୁଡ଼ିକ ବିଭିନ୍ନ ବାଣୀରେ ଗାଇବା ପାଇଁ ନିର୍ଦ୍ଦେଶ ଦିଆଯାଇଛି । ଭଞ୍ଜ ସାହିତ୍ୟର ଦୁର୍ବୋଧତା ଓ କ୍ଲିଷ୍ଟତା ସତ୍ତ୍ୱେ ଏହାର ସାଙ୍ଗୀତିକ ବିଭବ ଯୋଗୁଁ ଏହା କୃଷି କ୍ଷେତ୍ରରେ କୃଷକ, ନୃତ୍ୟପୁରରେ ବାରାଙ୍ଗନା, ସଭାର ପଣ୍ଡିତ ଓ ପଥର ପଥିକ – ସମସ୍ତଙ୍କ ଦ୍ୱାରା ଆଦୃତ ହୋଇଛି । ତେଣୁ ପଣ୍ଡିତ ଗୋପବନ୍ଧୁ ଗାଇଥିଲେ –

"ଗାଏ ତବ ଗୀତ ସଭାରେ ପଣ୍ଡିତ
ପଥେ ପାନ୍ଥହୃଷ୍ଟମନା
ବିଲେ ବୋଲେ ଚଷା ଅନ୍ତଃପୁରେ ଯୋଷା
ନୃତ୍ୟରଙ୍ଗେ ବାରାଙ୍ଗନା ।"

ଉପେନ୍ଦ୍ର ଥିଲେ ମଧୁର ଦାମ୍ପତ୍ୟପ୍ରେମର ରୂପକାର । ଉପେନ୍ଦ୍ରଙ୍କ ମତରେ ଦାମ୍ପତ୍ୟ ପ୍ରେମର ତୁଳନା ନାହିଁ । ପ୍ରେମର ମାଧୁର୍ଯ୍ୟ ଦାମ୍ପତ୍ୟ ଜୀବନରେ ଫୁଟି ଉଠେ । ମଣିଷ ଜୀବନରେ ପ୍ରୀତିର ଭୂମିକା ଏତେ ବଳିଷ୍ଠ ଯେ, ତା' ନିକଟରେ କ୍ଷୁଧା, ତୃଷା ଓ ନିଦ୍ରା ବିଧୁର ହୋଇଥାଏ । ତେଣୁ କବି କହିଛନ୍ତି –

"ମନ ଉପରେ ତ ରାଜା ପୀରତି
କେହି ପାରିବ ମନୁଷ୍ୟ ବରତି
ନବ ଅନୁରାଗ ଦିନେ ଦିନେକ
ସୁଖ ଜାତ ହେଉଥାଇ ଅନେକ ।

ପ୍ରୀତି ହୋଇ ଯେବେ ଏଡ଼େ ମଧୁର
କ୍ଷୁଧା ତୃଷା ନିଦ୍ରା ହେବ ବିଧୁର
ପୁଣି ଦଇବେ ହୋଇଲେ ଦମ୍ପତି
ପାଦତଳେ ମିଳେ ଇନ୍ଦ୍ରସମ୍ପତ୍ତି ।"

(ର.ହା-୪ର୍ଥଛାନ୍ଦ)

ରମଣୀ ଏବଂ ରତି– ଜୀବନର ଦୁଇଗୋଟି ଆବଶ୍ୟକତା । ଏହାକୁ ଅସ୍ୱୀକାର କରିହୁଏ ନାହିଁ । ତେଣୁ ଏହି ଦୁଇଟିର ଶ୍ରେଷ୍ଠତା ପ୍ରତିପାଦନ କରି ଉପେନ୍ଦ୍ର କହନ୍ତି –

"ରତି ହୋଇ ଯେଉଁ ଦ୍ୱିଅକ୍ଷର
ପାଶୋରି ଯିବାକୁ ପଞ୍ଚଶର
ନିଜ ବଲ୍ଲଭୀ ନାମ ତାହା ଦେଉଛି ଏଣୁ ସେ ନାଗର ଗଣେ ସାର ।
ବିଞ୍ଚୁଥିବ ରାମା ପଣତରେ
ଯେଉଁ ନାଗରକୁ ରତ୍ୟାନ୍ତରେ
ସେ କି ପ୍ରଂଶସିବ ଦକ୍ଷିଣମରତ ସୁଶୀତଳ ବୋଲି ବସନ୍ତରେ ।
ରସିକ ମଧ୍ୟେ ନିଶ୍ଚୟେ ସାର
ଜଗତପ୍ରଭୁ ରଥାଙ୍ଗଧର
କାମିନୀଟି ଏଡ଼େବୋଲି କମଳାଙ୍କୁ କରି ନପାରନ୍ତି କ୍ଷଣେଦୂର ।
ମହାଯୋଗୀ ଜାଣ ମହାଦେବ
ତାଙ୍କ କେ ବଡ଼ ସଂସାରେ ଥିବ
ଯୁବତୀ ଏମନ୍ତ ଅର୍ଦ୍ଧଅଙ୍ଗକରି ଛାଡ଼ି ନ ପାରିଲେ ଏକ ଲବ ।"

(ର.ହା. ୮ମ ଛାନ୍ଦ)

ଉପେନ୍ଦ୍ର ଥିଲେ ଜୀବନ ଓ ଯୌବନର କବି । ତେଣୁ ସେ ପ୍ରେମର ପୁଣ୍ୟସ୍ଥଳୀ ଦେହକୁ ସ୍ୱୀକାର କରିଛନ୍ତି । କାରଣ ପ୍ରେମର ଅନୁଭବ ହୁଏ ଦେହରୁ ଦେହାତୀତକୁ । ଦେହର ପ୍ରଭୁ ମନ, ମନର ପ୍ରଭୁ ପ୍ରୀତି ଏବଂ ପ୍ରୀତିର ପ୍ରଭୁ ନାରୀ । କବିଙ୍କ ଭାଷାରେ –

"ଦେହ ଉପରେ ମନ ପ୍ରଭୁ ପ୍ରମାଣ ଧନ
ମନର ପ୍ରଭୁ ପ୍ରୀତିରେ
ପ୍ରୀତିର ପ୍ରଭୁ ନାରୀ ତାକୁ ପୁଣି ପାଶୋରି
କେହୁ ପାରିବ ଧୃତିରେ ।"

ନାୟକ ଓ ନାୟିକା ମଧ୍ୟରେ ରହିଥିବା ଏକନିଷ୍ଠ ପ୍ରେମଭାବକୁ କବି ବର୍ଣ୍ଣନା କରି କହିଛନ୍ତି –

"ତୁ ମୋ ପ୍ରତିଚକ୍ଷୁ ଯେଣୁ ହୋଇଛୁ ଅନ୍ତର
ଦିଶୁନାହିଁ କିଛି କାହିଁ ଆନ ପ୍ରତିକାର
ନୂଆ ଅନ୍ଧପ୍ରାୟ ହୋଇ
ଅନୁକ୍ଷଣେ ଆକୁଳ ବଢୁଛି ପ୍ରାଣସହୀ ।
ଦୂରେ ଥିଲେ ପାଶେ ଅଛି ଏହା ଥିବୁ ଘେନି
କେତେ ଦୂରେ ଚନ୍ଦ୍ର କେତେ ଦୂରେ କୁମୁଦିନୀ
ପ୍ରୀତି ଅଭେଦ ତାଙ୍କର
ଯେତେ ଦୂରେ ଥିଲେ ଯେ ଯାହାର ସେ ତାହାର ।
ଯେତେ ଦୂରେ ପତ୍ର ପଡ଼ିଥିଲେରେ ନବୀନା
ଚିହ୍ନାକି ନୁହଇ ଆନେ ବୃକ୍ଷନାମ ବିନା
ବନ୍ଧୁ ତେମନ୍ତ ମୁଁ ତୋର
ସବୁଠାରେ କୁହାଉଛି ସୁନ୍ଦରୀ କୋୟର ।" (ପ୍ରେମସୁଧାନିଧି)

ନାୟିକା ପ୍ରତି ନାୟକର ଭଲପାଇବା ଏତେ ନିବିଡ଼ ଯେ ପ୍ରିୟାର ଅନୁପସ୍ଥିତିରେ ତାର ମଧୁକ୍ଷରା ସ୍ମୃତି ନାୟକକୁ ନିରନ୍ତର ବିବ୍ରତ କରୁଛି । ଯେଣେ ଅନାଇଲେ ନାୟିକାର ମୁହଁ ତାକୁ ଦେଖାଯାଉଛି । ଏହା ହିଁ ତ ନିବିଡ଼ ପ୍ରେମର ନିଦର୍ଶନ । କବିଙ୍କ ଭାଷାରେ –

"ଯେଣେ ଅନାଇଲେ ଇନ୍ଦ୍ରଜାଲ ପ୍ରାୟେ ଦିଶୁ
ମୁକୁର ବିମ୍ବପରାୟେ ପାଶକୁ ନ ଆସୁ
ଏଡ଼େ ହଟ କାହିଁପାଇଁ
ମୋହ ଜାଣିବାରେ ମୁଁ ତ ଦୋଷ କରିନାହିଁ ।"

ପ୍ରିୟା ହେଉଛି ପ୍ରିୟର ଗତିମୁକ୍ତିର ଦାତ୍ରୀ । ପ୍ରିୟା କେବଳ ଦେହଜ ପ୍ରେମର ନାୟିକା ନୁହେଁ । ପୁରୁଷର ଧର୍ମ, ଅର୍ଥ, କାମ, ମୋକ୍ଷର ହେତୁ ହେଉଛି ପ୍ରିୟା । ସୁତରାଂ ଭଞ୍ଜଭାରତୀରେ ପ୍ରିୟାର ସ୍ଥାନ ବହୁ ଉଚ୍ଚରେ । କବି ଗାଇଛନ୍ତି–

"ବାନ୍ଧବୀ ପାଶରେ ଥାଉ ଥାଉ
ତା ପଦ୍ମ ମୁଖକୁ ଚାହୁଁ ଚାହୁଁ
ଯେଉଁ ପୁରୁଷ ପ୍ରାଣତ୍ୟାଗ କରିଛି
ତା' ସମ ସୁକୃତୀ କାହିଁ ଆଉ ।"

(ର.ହା- ୮ମ ଛାନ୍ଦ)

ସେହିପରି ଉପେନ୍ଦ୍ର ଅନ୍ୟତ୍ର କହିଛନ୍ତି–

"ଆଉ ଭେଟିବି ନୋହୁଛି ପରତେ
ଭେଟ ହେବା ଉପାୟ ଅଛି ଏତେ
ପୁଣି ବିରହ ଅନଳେ ଦହନ
ହୁଅନ୍ତା ଏ ମୋର ତନୁ ଦହନ ।
ଭସ୍ମ ଉଡ଼ାଇ କୃପାରେ ପବନ
ନେଇ ପକାନ୍ତା କାନ୍ତା ସନ୍ନିଧାନ ।
କିସ ବୋଲି ବାଳା କରନ୍ତା ଦୃଷ୍ଟି
ତହିଁପରେ ହୁଅନ୍ତା ସୁଧା ବୃଷ୍ଟି ।
ହୋଇ ମୂର୍ତ୍ତିମନ୍ତ ମୁଁ ଚାହିଁ ମୁଖ
କର ଯୋଡ଼ି ଜଣାନ୍ତି ସବୁ ଦୁଃଖ ।" (ର.ହା.ବ)

ଉପେନ୍ଦ୍ର ଏକପତ୍ନୀବ୍ରତର ଉପାସକ । ତାଙ୍କ ମତରେ ପରଧନ, ପରସ୍ତ୍ରୀ ହରଣ କରିବା ଅର୍ଥ ହେଉଛି ମରଣକୁ ବରଣ କରିବା । ତେବେ 'ବୈଦେହୀଶ ବିଳାସ' କାବ୍ୟରେ ଶ୍ରୀରାମ ଓ ସୀତାଙ୍କର ବାସର ରାତିର ମିଳନ ଅବସରରେ ଉକ୍ତି-ପ୍ରତ୍ୟୁକ୍ତି ଏକପତି-ଏକପତ୍ନୀ ବ୍ରତର ମହାନ ବାର୍ତ୍ତା ବହନ କରିଆସିଛି । ସେହିପରି 'ବୈଦେହୀଶ ବିଳାସ' କାବ୍ୟର ତ୍ରୟୋବିଂଶ ଛାନ୍ଦରେ ସୂର୍ପଣଖାର ସମସ୍ତ ମନଭୁଲା କଥାକୁ ରାମଚନ୍ଦ୍ର କିପରି ଅଗ୍ରାହ୍ୟ କରିଛନ୍ତି, ତାହା କବିଙ୍କ ଲେଖନୀରେ ନିମ୍ନ ଭାବରେ ପ୍ରତିପାଦିତ । ଏଥିରୁ ମଧ ଭଞ୍ଜକବିଙ୍କର ଏକପତ୍ନୀବ୍ରତର ଆଦର୍ଶ ଆକଳନ କରିହୁଏ ।

ସୂର୍ପଣଖା କହିଛି –

"ବଶୀଭୂତ ହୋଇ ତବ ଶୋଭାକୁ ଚାହିଁ
ବସିବାକୁ ତୁମ୍ଭ କୋଳେ ଆସିଛି ମୁହିଁ ।
ବନ୍ଧନ କରି ଭୁଜରେ ଜାଣଇ ସ୍ୱତଃ
ବନ୍ଧରେ ଯେ ସୁଖଚକ୍ର ପୁରୁଷାୟିତ ।
ବିଶ୍ରବା ନନ୍ଦିନୀ ମୁଁ ଯେ କୁଳରେ ସାଧୁ
ବିଶ୍ରବାଇ ଓଷ୍ଠୁ ପିଅ ମଧୁର ମଧୁ ।
ବସ୍ତ୍ରଜାତ ହରେ ଦେଲେ କମଳ କର
ବସ୍ତ୍ରଳେ ସେ ଫଳେ ହେବ ରାଜାସ୍ୱର୍ଗର ।
ବାରବେନି ପୁରେ ରାଜା ମୋର ସୋଦର
ବାରତାପାଇ ହୋଇବେ ହରଷଭର ।
ବିରଞ୍ଚି ଲେଖିଛି ଭାଲପଟେ ତୁମ୍ଭର
ବିରଚିବ ନନ୍ଦନ ବନରେ ବିହାର ।
ବିନୋଦ ଯେଉଁ ରାମାରେ କରିବ ମତି
ବିନୋୟୀ ନୋହୁ ଧରିବି ମୁଁ ସେହି ମୂର୍ତ୍ତି ।"

(ବୈ.ବି.-ତ୍ରୟୋବିଂଶ ଛାନ୍ଦ)

ଏହି ବାଣୀ ଶୁଣି ରାମଚନ୍ଦ୍ର କହିଛନ୍ତି –

"ବୋଇଲେ ରଘୁନନ୍ଦନ ରେ ରାମାବର
ବ୍ରତ ଆଚରଣ ଏକ ପତ୍ନୀ ମୋହର ।
ବଡ଼ କୁଳେ ଜାତ ଭୂପ ଭଗିନୀ ତୁହି
ବୃଷସ୍ୟନ୍ତି ଆଚରଣ ଭଲ ତ ନୋହି ।
ବାସ୍ତୋଷ୍ପତି ଅଧିକାରେ କି କାର୍ଯ୍ୟ ମୋର
ବହି ନପାରେ ଅନେକ ନେତ୍ର ଶରୀର ।
ବିଟଭାବ ଲମ୍ପଟରେ ତେମନ୍ତ ସେହି
ବିଅର୍ଥେ ଶିଳା ସ୍ୱରୂପ ନ ବହ ତୁହି ।"

(ବୈ.ବି.-ତ୍ରୟୋବିଂଶ ଛାନ୍ଦ)

ସୂର୍ପଣଖା ପୁନଶ୍ଚ ରାମଚନ୍ଦ୍ରଙ୍କୁ କହିଛି –

"ବିଶେଷେ ରତିରେ କେ ହୋଇବ ବିଚାର
ବଣିକ ଭାବରେ ତହିଁ ବଣିଜ କର ।"

ଏହା ଶୁଣି ରାମଚନ୍ଦ୍ର କହିଥିଲେ –

"ବିଷ୍ଣୁପଦୀଜଳ କେଡ଼େ ନିର୍ମଳ ଯୋଷା
ବାରିଦ ଆବିଳ ଜଳେ ଚାତକ ଆଶା ।"

ଅର୍ଥାତ୍ ରାମଚନ୍ଦ୍ର କହୁଛନ୍ତି, ହେ ନାରୀ, ତୁମେ ଦେଖ ଯେ ଗଙ୍ଗାଜଳ ଦେଖିବାକୁ କେତେ ଶୁଭ୍ର । କିନ୍ତୁ ଚାତକ ପକ୍ଷୀ ଆକାଶରୁ ଖସୁଥିବା ଜଳକୁ ହିଁ ପାନ କରେ । ଏହାପରେ କାମୁକୀ ସୂର୍ପଣଖା ଲକ୍ଷ୍ମଣଙ୍କ ନିକଟକୁ ଯାଇ ବିନୀତ ଭାବରେ ଲକ୍ଷ୍ମଣଙ୍କୁ ନିଜର ଅଭିଳାଷ ବିଷୟ ଜଣାଇଛି । କିନ୍ତୁ ଏକପତ୍ନୀ ବ୍ରତଧାରୀ ଲକ୍ଷ୍ମଣବୀର ମଧ୍ୟ ସୂର୍ପଣଖା ପ୍ରତି ଆସକ୍ତିଭାବ ରଖିନାହାନ୍ତି ବରଂ ରାକ୍ଷସୀର ପ୍ରେମ ନିବେଦନକୁ ପ୍ରତ୍ୟାଖ୍ୟାନ କରିଛନ୍ତି । କବିଙ୍କ ଭାଷାରେ –

"ବିନୟୀ ହୋଇ ନିକଷା ତନୟୀ କହି
ବକ୍ତବ୍ୟ ତରୁଣ ରାମ-ସେବକ ମୁହିଁ ।
ବସେ ରାତ୍ର ଯୋଗୀ ପ୍ରାୟ ନିଦ୍ରାକୁ ତେଜି
ବାହୁଡ଼ରେ ବରାଙ୍ଗନା ମୋତେ ନ ଭଜି ।"

ଉପେନ୍ଦ୍ର ଭାରତୀରେ ସ୍ତ୍ରୀର ସ୍ଥାନ ବହୁ ଉଚ୍ଚରେ । ସ୍ତ୍ରୀର ମର୍ଯ୍ୟାଦା ରକ୍ଷା କରିବା ପ୍ରତ୍ୟେକ ଆର୍ଯ୍ୟର କର୍ତ୍ତବ୍ୟ । ସ୍ତ୍ରୀ ବିହୀନ ଜୀବନ ପାପୀର ଜୀବନ । ତେଣୁ ଉପେନ୍ଦ୍ର କହନ୍ତି –

"କି ହେବ ଇନ୍ଦ୍ର ହୋଇଲେ ସର୍ବ ସମ୍ପଦ ସେ
ସ୍ତୀରୀହୀନଠାରୁ ପାପୀ ନାହିଁ ମହୀ ଦେଶେ ଯେ ।"

(ଲା.ବ.-ଅଷ୍ଟାବିଂଶ ଛାନ୍ଦ)

"ହୀରା ନୀଳା ମାଣିକ୍ୟ ମୁକୁତା ବିଦ୍ରୁମର
ମୂଲ୍ୟ ଅଛି ମୂଲ୍ୟ ନାହିଁ ସ୍ତିରୀ ରତନର ଯେ ।"

(ଲା.ବ.-ଅଷ୍ଟାବିଂଶ ଛାନ୍ଦ)

ଉପେନ୍ଦ୍ର ଭଞ୍ଜ ପ୍ରୀତିର ଉପାସକ । ତେଣୁ ସେ ପ୍ରୀତିକୁ ସମସ୍ତ ଭୋଗ ବିଳାସ ମଧ୍ୟରେ ଶ୍ରେଷ୍ଠବୋଲି ପ୍ରତିପାଦନ କରିଛନ୍ତି । ଚକ୍ରବାକ ପକ୍ଷୀର ଉକ୍ତିରେ ରତିର ଶ୍ରେଷ୍ଠତା ପ୍ରତିପାଦିତ –

"ବ୍ୟାକୁଳରେ ହୋଇ କ୍ଷୀଣୀ
ବଲ୍ଲଭେ ଭାଷେ ପକ୍ଷିଣୀ
ବିଭୋଗରେ ରତି ସାର
ବିଦ୍ୟ ସଂସାର ଏ ।" (ଷଡ଼ବିଂଶ ଛାନ୍ଦ)

ସେହିପରି ବିଚ୍ଛେଦଠାରୁ ବଡ଼ ବିପତ୍ତି ନାହିଁ ବୋଲି କବିଙ୍କର ଅଭିମତ ରହିଛି । କବିଙ୍କ ଭାଷାରେ –

"ବିପଦ କି ଶିରଚ୍ଛେଦ
ବଡ଼ ବିପଦ ବିଚ୍ଛେଦ
ବଂଶ ବଢ଼ିବା ଅର୍ଜ୍ଜନ
ବ୍ୟର୍ଥ ସର୍ଜନ ଏ ।" (ଷଡ଼୍‌ବିଂଶ ଛାନ୍ଦ)

କବିସମ୍ରାଟ ଉପେନ୍ଦ୍ର ଭଞ୍ଜ କାବ୍ୟରେ ଉପମା ପ୍ରୟୋଗରେ ଅଦ୍ୱିତୀୟ କହିଲେ ଅତ୍ୟୁକ୍ତି ହେବ ନାହିଁ । କବି ତ ସ୍ୱୟଂ କହିଛନ୍ତି – "ଭାଗ୍ୟରୁ ଏ ଉପମା କାରକ ମୁଁ ଯେ ହେଲି ।" ନିମ୍ନରେ କେତୋଟି ଉପମାର ଉଦାହରଣ ପ୍ରଦାନ କରାଗଲା –

(କ) "ବାହି ଖଡୁ ଝାଡ଼ି ମନ ମୀନକୁ ନେଇ
ବାହି କୁଚ-କୁବେଣୀରେ ଥୋଇ ଲୋଡ଼ଇ ।"

ଅର୍ଥାତ୍ ଧୀବର ଯେପରି ଜାଲ ବାହିକୁ ଝାଡ଼ିଦେଇ ମାଛମାନଙ୍କୁ ଖାଳେଇ ଭିତରେ ରଖିଥାଏ, ସେହିପରି କାମୁକୀ ସୂର୍ପଣଖା ତାହାର ଖଡୁବାହି ଝାଡ଼ିଦେଇ ଯୁବକମାନଙ୍କ ମନରୂପକ ମତ୍ସ୍ୟକୁ ତାହାର ସ୍ତନରୂପକ ଖାଳେଇରେ ଥୋଇଦେବାକୁ ଉଦ୍ୟମ କରୁଥାଏ ।

(ଖ) "ବିଶିଷ୍ଟେ ଭ୍ରୁରୁ କମ୍ପାଇ ଡୋଳା ଖେଳାଇ
ବିଶିଖ କମାଣେ ସନ୍ଧି ବିନ୍ଧି ନ ଦେଇ ।"

ଅର୍ଥାତ୍ ସୂର୍ପଣଖା ଯେପରି ଅତିମାତ୍ରାରେ ତାହାର ଭ୍ରୂଲତାକୁ ନଚାଇ ଚକ୍ଷୁଡୋଳାକୁ ଚାଳନା କରୁଥାଏ, ସେଥିରୁ ମନେହୁଏ ଯେ, ସୂର୍ପଣଖା ତାହାର ଭ୍ରୂଲତାରୂପକ ଧନୁରେ ଚକ୍ଷୁଡୋଳା ସଦୃଶ ଶରକୁ ଯୋଖି ଯୁବକମାନଙ୍କୁ ବିନ୍ଧୁଅଛି । ପୁନଶ୍ଚ–

(ଗ) "ବହିଲା ପ୍ରାୟେ କଳିନ୍ଦ ପର୍ବତୁ କାଳିନ୍ଦୀ
ବକ୍ଷସ୍ଥଳେ ପଡ଼େ ଅଶ୍ରୁ ଗଲେ କାନ୍ଦି କାନ୍ଦି ।"

ଅର୍ଥାତ୍ କଳିନ୍ଦ ପର୍ବତରୁ ଯମୁନା ନଦୀ ବାହାରି ବହିଗଲା ପରି ରାମଚନ୍ଦ୍ର ସୀତାଙ୍କ ବିହୁନେ କାନ୍ଦି କାନ୍ଦି ଗଲାବେଳେ ଆଖିରୁ ଲୁହଧାରା ଖସି ଛାତି ଉପରେ ବହି ଯାଉଥିଲା ।

(ଘ) କବି ଉପେନ୍ଦ୍ର ବର୍ଣ୍ଣନା କରିଛନ୍ତି ଯେ, ନବଯୌବନପ୍ରାପ୍ତ ଲାବଣ୍ୟବତୀର ଶୋଭାକୁ ଦେଖି ଉପମା ବର୍ଗ କିପରି କାତର ହୋଇ କ'ଣ କରିବା ବୋଲି ବିଚାର କଲେ ତାହା ନିମ୍ନରେ ପ୍ରତିପାଦିତ ହୋଇଛି –

"ଶୁଣ ରସିକେ ନବ ଯଉବନୀ, ହୋଇ ବନିତା ମଣ୍ଡିଲା ଅବନୀ
ଏଣୁ ଉପମାଗଣେ ନିରନ୍ତର, କି କରିବା ଭାବି ହେଲେ କାତର ।
ଝଳି କାନ୍ତିରେ ଲଭିଣ ଭୀତିକି, କଲା କଣ୍ଟକ ଦୁର୍ଗକୁ କେତକୀ ।
ପାଞ୍ଚେ ମନ୍ଦର କୁଚ ବଢ଼ିବାରେ, କିମ୍ବା ବୁଡ଼ି ନ ମଲି ପାରାବାରେ ।
ନାସାଚୁଡ଼ା ଫୁଲିବାର ଅନାଇ, ଭାଷାବନ୍ଧେ ଶୁକ ମନ ମନାଇ
ମୁଖେ ପ୍ରଚାର ପରିଚାରପଣ, ସୁଖେଦର୍ପ ହତୁ କଲା ଦର୍ପଣ ।"

(୩ୟ ଛାନ୍ଦ)

ସୂର୍ପଣଖାର ନାଶାକର୍ଣ୍ଣଛେଦନ ପର ଘଟଣା ବର୍ଣ୍ଣନାରେ କବି ଉପେନ୍ଦ୍ର ଯେଉଁ ଉପମା ପ୍ରୟୋଗ କରିଛନ୍ତି ତାହା ହେଉଛି –

(ଙ) ବିନାଶୁ ନାଶା ଶ୍ରବଣ ସୂର୍ପଣଖା
ପ୍ରବେଶ ଲଙ୍କାର
ବୃକ୍ଷ ପାଟଳୀରୁ ଫୁଲ ଝାଡ଼ି ଉଡ଼ି
ଯାଉଛି କି କୀର ।
ବହେ ନେତ୍ରୁ ଅଶ୍ରୁ ପତ୍ରକି ପଡୁଛି
ପଡ଼ିଲା ତୁଷାର
ବାରବାୟୁରେ ଧୈର୍ଯ୍ୟ ମୂଳ ଉପୁଡ଼ି
ପଡ଼ିଲା ପ୍ରକାର । (ବୈ.ବି – ଚତୁର୍ବିଂଶ ଛାନ୍ଦ)

ଉପେନ୍ଦ୍ରଙ୍କ ସାହିତ୍ୟରେ ଓଡ଼ିଶାର ମହାନ ସଂସ୍କୃତି ତଥା ପର୍ବପର୍ବାଣିଗୁଡ଼ିକ ସ୍ଥାନ ପାଇଛି । ଶ୍ରୀଜଗନ୍ନାଥଙ୍କ ଚନ୍ଦନଯାତ୍ରା କବିଙ୍କ ଲେଖନୀରେ ମଞ୍ଜୁଳ ଭାବରେ

ବର୍ଣ୍ଣିତ । ଏହି ଚନ୍ଦନଯାତ୍ରା ବର୍ଣ୍ଣନା ଯେପରି ଦିବ୍ୟ, ସେହିପରି ଆଧ୍ୟାତ୍ମିକ ଭାବନା ଉଦ୍ରେକକାରୀ । କବି ଲେଖିଛନ୍ତି –

"ନରେନ୍ଦ୍ର ତଡାଗେ କରୀନ୍ଦ୍ର ସୁରେନ୍ଦ୍ର ପରିହରି
ନାବରେ ଭାବରେ ବିଜୟ କରି ସୁଖେ ବିହରି ।
ପଛେ ରହି ସ୍ୱଛେ ବରହୀପୁଛେ ଦ୍ୱିଜେ ସେବନ୍ତି
ରଞ୍ଜନ ବ୍ୟଞ୍ଜନ ସଜନ କରେ ଧରି ବିଞ୍ଚନ୍ତି ।
ସଂସାର ସାର ଘନସାର ପିଚିକା କେ ମାରଇ
କ୍ଷୀରନିଧି ଧୀର ଲହରୀ ପରିଚାମର ଶୋହି ।" (ର.ହା)

କବି ଉପେନ୍ଦ୍ର ପବିତ୍ର ଦୋଳୋତ୍ସବ ଓ ହୋଲିପର୍ବକୁ ମଧ ମଞ୍ଜୁଳ ଭାବରେ ବର୍ଣ୍ଣନା କରିଛନ୍ତି । ଯେପରି –

(କ) 'ଦୋଳ ଲୀଳା ସରିଗଲାନି ହରିର ଶରୀର ହେଲା ନିସ୍ୱେଦକୁ'

ଫଗୁ ଖେଳ ଓ ହୋଲିଉତ୍ସବ ବର୍ଣ୍ଣନା କରିବାକୁ ଯାଇ କବି ଲେଖିଛନ୍ତି –

(କ) 'ମୁଠାରୁ ଫିଟିଯିବାରେ ଏ ପ୍ରତୀତି ଫଗୁଫିଙ୍ଗିବାରେଂ ଲଳନା
ବସନ୍ତରାଜା ବଶକୁ କି କରନ୍ତି ରଙ୍ଗପାଟ ଚେଳ ଚାଳନା
ସେ ରଜ ! ଯାଇ ଶୂନ୍ୟେ ଗୁଣ୍ଡ ହୋଇଲା
ଅତ୍ୟନ୍ତ ଗୁଣିକ ଦିଗ ପରିବାର ମାଣିକ୍ୟଛତ୍ର କି ଧଇଲା ।'

(ଖ) "ରମଣୀ ରମଣୀୟ କଲେ ଅବିର ଗୁଣ୍ଡିରେ ସେ ବନ ସରଣୀ
ମହୀମହିଳା ଋତୁକାଳ ଲଭିଲା ଏସନ ମାନସକୁ ଆଣି
ସେ ଧୂଳି । କାହିଁ ପବନଯୋଗେ ଉଡ଼ି
ଶୁଭସୂଚକ କହି ଜଉତିଷ କି ଯାଉଛି ଶିରେ ବାନ୍ଧି ଶାଢ଼ୀ ।
ପନୀର ନୀର ପିଚିକା ନିରନ୍ତର ଖେଳନ୍ତେ ନୀରରୁହଦୃଶା
ମଞ୍ଜୁ ମଞ୍ଜୀର ଘନରବ ମଧୁର ବସନ୍ତେ କରେ କି ବରଷା
ବିଜୁଳି । ପରି ଝଳି ଭୂଷାରତନ ।
ଅଙ୍ଗରାଗେ ଅନ୍ଧଭୃଙ୍ଗ ଉଡ଼ିପଡ଼େ ହୋଏ କି କରକା ପତନ ।
କୁଙ୍କୁମ ପିଚିକା ବାଜି ଜରଜର ସୁନ୍ଦର ଉରଜ କାହାର
କନକାଚଳରୁ କିବା ହରିତାଳ ପ୍ରବାହ ହେଉଛି ବାହାର ।

କର୍ପୂର ! ଗୁଣ୍ଡି ମଣ୍ଡିତ କାହାସ୍ତନ ।
ସୁବର୍ଣ୍ଣ ସ୍ୱୟମ୍ଭୁ ଶମ୍ଭୁ ଯୁଗଳ କି ହୋଇଲେ ଭସ୍ମ ବିଲେପନ ।

× × ×

କାଶ୍ମୀର ରଜକେ ମାରନ୍ତେ ପାଲଟି
ଗ୍ରୀବା ବକ୍ରକରି ଚାହିଁଲା
ମନ୍ଦ ମରୁତେଜି ଉଲଟି ନଳିନ ଅଳି ସଂପୃକ୍ତରେ ରହିଲା
କେ କାହା, ମୁଖେ କସ୍ତୁରୀ ପଙ୍କଢାଳି
ମୃଗାଙ୍କ କଳଙ୍କ ଛଡ଼ାଇଦେବାରୁ
ବହିଯାଉଛି କିବା କାଳୀ ।” (ଲା.ବ.- ପଞ୍ଚମଛାନ୍ଦ)

ସେହିପରି ଉପେନ୍ଦ୍ର ପବିତ୍ର କାର୍ତ୍ତିକ ମାସରେ ଦୀପଦାନ, ପ୍ରୟାଗସ୍ନାନ ଏବଂ ସର୍ବୋପରି ମକର ପର୍ବ ପ୍ରଭୃତିକୁ ପ୍ରସଙ୍ଗକ୍ରମ ବର୍ଣ୍ଣନା କରିଛନ୍ତି –

“ରସିକ ବିଚାର କରେ ଦୀପଦାନ କାର୍ତ୍ତିକରେ
ପ୍ରୟାଗେ ସ୍ନାନ ନ କରେ ଯେହୁ ମକରେ ।”

(ପ୍ରେ.ସୁ. - ୭ମ ଛାନ୍ଦ)

କବି ଉପେନ୍ଦ୍ର ଥିଲେ ଜଗନ୍ନାଥଙ୍କର ପରମ ଭକ୍ତ । ତାଙ୍କର ଜଗନ୍ନାଥ-ପ୍ରାଣତାର ପଟାନ୍ତର ନାହିଁ । ସେ ‘କୋଟିବ୍ରହ୍ମାଣ୍ଡସୁନ୍ଦରୀ’ କାବ୍ୟରେ ଶ୍ରୀଜଗନ୍ନାଥ ବର୍ଣ୍ଣନାରେ ବେଶ୍ ପ୍ରବଣତା ପ୍ରଦର୍ଶନ କରିଛନ୍ତି । ସର୍ବୋପରି ଏହି କାବ୍ୟରେ ସ୍ନାନଯାତ୍ରାର ମହିମ୍ନ ବର୍ଣ୍ଣନା ରହିଛି –

“ଜ୍ୟେଷ୍ଠ ପୌର୍ଣ୍ଣମାସୀ ପୂର୍ବନିଶି ଅବଶେଷେ
ସେବକ ଉତ୍ସୁକେ ମିଳି ମହାପ୍ରଭୁ ପାଶେ ।
ସେ କାଳକୁ ଅନୁସରି ଯାତ୍ରୀ ନରନାରୀ
ଯେ ଯାହାର ନିତ୍ୟକର୍ମ ତ୍ୱରା ହୋଇସାରି
ହରିହରି ଦ୍ୱାରେ ମିଳି ହରି ଧ୍ୱନି କଲେ
ହରିତ ପୂରିତ ତୂରିତରେ ତହିଁ ହେଲେ ।
ପଡ଼ିଲା ତୁଳୀ ପାହାଡ଼ା ବିଜୟ ନିମିତ୍ତେ
ବାଜିଲା ମେଘା ମୃଦଙ୍ଗ ମର୍ଦ୍ଦଳ ସହିତେ । × × ×
ଏମନ୍ତେ ସ୍ନାନ ମଣ୍ଡପେ ସିଂହାସନ ପର
ବିଜେ ମହାପ୍ରଭୁ ଘେନି ଭଗ୍ନୀ ସହୋଦର ।” (ଇତ୍ୟାଦି)

ସ୍ନାନଯାତ୍ରା ଏବଂ ଗୁଣ୍ଡିଚା ଯାତ୍ରା – ଏହି ଉଭୟ ଯାତ୍ରା ମହାପ୍ରଭୁଙ୍କର ସ୍ୱୟଂ ଲୀଳା । ତେଣୁ ମହାକବି ଉପେନ୍ଦ୍ର ଭଞ୍ଜ ଲେଖିଛନ୍ତି –

"ସ୍ନାନ ଗୁଣ୍ଡିଚା ଏ ବେନି ସ୍ୱୟଂ ଲୀଳାଯାର
ପତିତପାବନ ଅର୍ଥେ ପ୍ରାସାଦୁ ବାହାର ହେ ।"

ନାଗଚତୁର୍ଥୀ ବର୍ଣ୍ଣନା ମଧ୍ୟ ଉପେନ୍ଦ୍ରଙ୍କ ସାହିତ୍ୟରେ ରହିଛି । ଯଥା–

ନାଗଚତୁର୍ଥୀ ବ୍ରତ କଲା ଫଳେ
ମନୋରମାକୁ ମୁଁ ଦେଖିଲି ଡୋଳେ । (ରସଲେଖା)

ପ୍ରକୃତି ବର୍ଣ୍ଣନାରେ ଉପେନ୍ଦ୍ର ମଧ୍ୟ ଥିଲେ ଜଣେ ସିଦ୍ଧିବାନ ଶିଳ୍ପୀ । ତାଙ୍କ କାବ୍ୟଗୁଡ଼ିକରେ ଷଡ଼ଋତୁର ମନୋଜ୍ଞ ବର୍ଣ୍ଣନା ଦେଖିବାକୁ ମିଳେ । ପ୍ରଭାତ ବର୍ଣ୍ଣନା, ସନ୍ଧ୍ୟାବର୍ଣ୍ଣନା, ଚାନ୍ଦିନୀନିଶା ବର୍ଣ୍ଣନାରେ କବି ନିଜର ପରାକାଷ୍ଠା ପ୍ରଦର୍ଶନ କରିଛନ୍ତି । ଏହା ବ୍ୟତୀତ ବନବର୍ଣ୍ଣନା, ପର୍ବତବର୍ଣ୍ଣନା, ନଦୀବର୍ଣ୍ଣନା, ସମୁଦ୍ରବର୍ଣ୍ଣନା, ପାଞ୍ଚ ପ୍ରକାର ସମୁଦ୍ର ବର୍ଣ୍ଣନା, ମାଲ୍ୟବନ୍ତ ବର୍ଣ୍ଣନା, ଚିତ୍ରକୂଟ ବର୍ଣ୍ଣନା ପ୍ରଭୃତିରେ କବି ଅଶେଷ ସଫଳତା ଲାଭ କରିଛନ୍ତି । 'ବୈଦେହୀଶ ବିଳାସ'ରେ ଅଗସ୍ତି ମୁନିଙ୍କର ଆଶ୍ରମର ଚିତ୍ର ବର୍ଣ୍ଣନା ପ୍ରସଙ୍ଗରେ କବି ଉଲ୍ଲେଖ କରିଛନ୍ତି ଯେ ଏହି ସ୍ଥାନ ହେଉଛି ଅମାୟିକ ହିଂସାଶୂନ୍ୟତାର ଏକ ମନୋଜ୍ଞ ସ୍ଥାନ ।

କବି ଲେଖିଛନ୍ତି –

"ବାତାପି ସୂଦନ ଆଶ୍ରମ । ବିପିନେ ପ୍ରବେଶ ଶ୍ରୀରାମ ॥
ବଇରୀ ହିଂସା ତହିଁ ହତ । ବଇରୀ ସନ୍ନିଧି କପୋତ ॥
ବାୟସ କଉଶିକ ମେଳ । ବସି ଅଛନ୍ତି ଏକ ଡାଳ ॥
ବ୍ୟାଳ ଫଣାକୁ ଟେକି ଖେଳି । ବରହୀପାଶେ ନୃତ୍ୟଶାଳୀ ॥
ବାରଣ ସିଂହ ଏକ ସ୍ଥାନ । ବିରଚି ଅଛନ୍ତି ଶୟନ ॥
ବ୍ୟାଘ୍ର କୁରଙ୍ଗ ରଙ୍ଗ ବହି । ବୃକାଳୀ ମିଳୁଛନ୍ତି ତହି ॥"

(ଦ୍ୱାବିଂଶ ଛାନ୍ଦ)

କବିସମ୍ରାଟ୍ ଉପେନ୍ଦ୍ର ଭଞ୍ଜ ଥିଲେ ପ୍ରକୃତିର ବିଚିତ୍ର ଚିତ୍ରକର । ପ୍ରକୃତିର ବିଭିନ୍ନ ବିଭାବ ତାଙ୍କ କାବ୍ୟରାଜିରେ ମଞ୍ଜୁଳ ରୂପଶ୍ରୀ ଧାରଣ କରିଛି । ସନ୍ଧ୍ୟାର ଚମତ୍କାର ବର୍ଣ୍ଣନା କରିବାକୁ ଯାଇ କବି ଲେଖିଛନ୍ତି –

"ବିଧୁନ୍ତୁଦ ପ୍ରାୟ ହୋଇ ସନ୍ଧ୍ୟା ଆସିଲା
ବିବସ୍ୱାନ ଗ୍ରାସୀ ରଙ୍ଗ ଭାବ ଦିଶିଲା ।
ବାଳୀସେ କାଳୀ ପିଧାନୀ କି ପାଟଶାଢ଼ୀ
ବହିଲେ କି ସରସ୍ୱତୀ କାଳିନ୍ଦୀ ଜଡ଼ି ।
ବନଜାରି କର କିଛି ଆସିଲା ଦିଶି
ବାରୁଣୀ ତ୍ରିବେଣୀ ଘାଟେ ପଡ଼ିଲା ଘୋଷି ।
ବିସ୍ମୃତ ପକ୍ଷେ ଦିବାନ୍ଧ ପ୍ରମୁଖ ଦ୍ୱିଜେ
ବିକାଶି ଶ୍ଳୋକ ବାଣିକି ବିହାରେ ମଜେ ।"

(ବୈ.ବି. - ପଞ୍ଚମଛାନ୍ଦ)

ସେହିପରି ଅନ୍ୟତ୍ର ମଧ୍ୟ ସନ୍ଧ୍ୟାବର୍ଣ୍ଣନା କବିଙ୍କ ଲେଖନୀରେ ନିମ୍ନମତେ ଚିତ୍ରିତ –

"ବୋଲଇ ତାମସୀ ଯେ ସେ ବାହାର
ବତାଇ ଦେଇ ସନ୍ଧ୍ୟା ଛଳେ କର ।
ବାରୁଣୀ କୁଣ୍ଡେ ବୁଡ଼ାଇ ଇନକୁ
ବିନାଶ କରିବା ଇଚ୍ଛି ଦିନକୁ ।
ବ୍ୟାଳଧରି କିବା ନେଇ ଆକର୍ଷି
ବାୟସଚୟ ଯିବା ତଥା ଦିଶି ।
ବୋବିଦେଲା ପକ୍ଷୀ ନାଦ ଛଳର
ବଦନେ କାଳି ପଡ଼ିଲା ଦିଗର ।
ବିକଟକାଳକୁ ଯହୁଁ ଦର୍ଶନ
ବୁଡ଼ିଲା ପଦ୍ମିନୀ ପଦ୍ମ ନୟନ ।
ବସା ଘେନି ନିଶାଚର ପ୍ରକଟ
ବର୍ଜି ତର୍ଜି କଲେ ହୁଁ ହୁଁ ହୁଁ ରଟ ।
ବିରସ ତେଜି ବାହାର ଭୁଜଙ୍ଗେ
ବିକୃତ ଭୟଙ୍କର ହେଲା ତୁଙ୍ଗେ ।"

ବନର ଶୋଭାବର୍ଣ୍ଣନାରେ ଉପେନ୍ଦ୍ର ଜଣେ ଅସାଧାରଣ ଶିଳ୍ପୀ । କବିଙ୍କ କୃତ 'ବୈଦେହୀଶ ବିଳାସରେ' ବନବର୍ଣ୍ଣନାର ଚମତ୍କାର ଚିତ୍ର ଦେଖିବାକୁ ମିଳେ । ବନପ୍ରଦେଶରେ ରହିଥିବା ବୃକ୍ଷମାନଙ୍କୁ କବି ତପିପନ୍ତି ସହ ତୁଳନା କରିଛନ୍ତି । କବିଙ୍କ ଭାଷାରେ –

"ବୃକ୍ଷତତି ତପିପନ୍ତି ତହିଁ ଏକା କୃତି
ବଲ୍‌କଳ ପିଧାନ କରି ଜଟାଧରିଛନ୍ତି ।
ବେଦିସାର ମୂଳସଦା ସୁମନା ଫଳଦ
ବାସବୃତ ପର୍ଣ୍ଣଚୟ ଅତିଥିର ହୃଦ୍ୟ ।
ବନାଧାର ପ୍ରାୟେ ଲତା ତଳ ମନୋହର
ବିଶ୍ରାମିଛନ୍ତି କମଳ ହଂସ ତାପ ଦୂର ।
ବିଘଟିତ ଘନପୁଷ୍ପ ଭ୍ରମର ସହିତ
ବିନୋଦୀ ଜନମାନଙ୍କର ହରୁଅଛି ଚିତ୍ତ ।" (ସପ୍ତମ ଛାନ୍ଦ)

କବି ବର୍ଣ୍ଣନା କରିଛନ୍ତି ଯେ ବନର କୌଣସି ଅଂଶ ଦେବମାତା ଅଦିତିଙ୍କ ପରି ଦୃଶ୍ୟମାନ ହେଉଅଛି । କବି ଲେଖିଛନ୍ତି –

"ବନର କେଉଁ ପ୍ରଦେଶ ଅଦିତି ପ୍ରକାର
ବସୁକ ଅନୁଭାବରେ ଶିଖି ଶୋଭାକର ।
ବରୁଣଦେବ ବଲ୍ଲଭ ଉଦୟ କରିଛି
ବହୁ ସୁମନା ସନ୍ତୋଷକର ହୋଇଅଛି ।"

ସେହିପରି ବନର କେଉଁ ଅଞ୍ଚଳ ଦାନବମାତା ଦିତିଙ୍କ ପରି ପ୍ରତୀୟମାନ ହେଉଛି । କବିଙ୍କ ଭାବନା ଏହିପରି –

"ବନର କେଉଁ ପ୍ରଦେଶ ଦିତି ଛବି ଧରି
ବିଜନିତ ଦୈତ୍ୟଗଣ ରୂପ ଅଛି ଧରି ।
ବିସ୍ତାରିଛି ପବନ ଲୀଳାକୁ ନିରନ୍ତର
ବିଶେଷତ ମୁନିନଗରେ ସେ ମନୋହର ।"

ସେହି ବନଭୂମିର କେଉଁ ପ୍ରଦେଶ ଗରୁଡ଼ଙ୍କ ମାତା ବିନତାଙ୍କ ପ୍ରାୟ ଦୃଶ୍ୟମାନ ହେଉଅଛି ।

"ବନର କେଉଁ ପ୍ରଦେଶ ରଞ୍ଜନେ ରଞ୍ଜନ
ବିନତା ପ୍ରାୟେ ଅରୁଣ ସୁପର୍ଣ୍ଣ ସୁମନ ।"

ସେହିପରି କବି ଉପେନ୍ଦ୍ର ବର୍ଣ୍ଣନା କରିଛନ୍ତି ଯେ ବନଭୂମିର କୌଣସି କୌଣସି ପ୍ରଦେଶ ନାଗମାତା କଦ୍ରୁଙ୍କର ଶୋଭାକୁ ଧାରଣ କରିଛି । କାରଣ ମାତା କଦ୍ରୁଙ୍କ ସମୀପରେ ନାଗଶ୍ରେଷ୍ଠ ମାନେ ଆନନ୍ଦମନରେ ବିହାର କରିଥାନ୍ତି । ତଦନୁରୂପ

ସେହି ବନାନୀରେ ନାଗେଶ୍ୱର ବୃକ୍ଷମାନଙ୍କ ଶୋଭା ଦର୍ଶକମାନଙ୍କର ମନୋରଞ୍ଜନ କରୁଅଛି । କବିଙ୍କ ଭାଷାରେ –

"ବନର କେଉଁ ପ୍ରଦେଶ କଦ୍ରୁଛବି ବହି
ବିହୃଷ୍ଟ ହର ହୋଇଛି ନାଗଇଶ୍ୱର ହିଁ ।"

ଅଧିକନ୍ତୁ ବନର କୌଣସି ପ୍ରଦେଶ ସଙ୍ଗୀତଶାଳାର ଭ୍ରମ ସୃଷ୍ଟିକରୁଛି । ସଙ୍ଗୀତ ଶାଳାରେ ଯେପରି ଶୂନ୍ୟ ନର୍ତ୍ତକୀମାନେ ନୃତ୍ୟ କରିଥାନ୍ତି, ସେହିପରି ଭରତିଆ ପକ୍ଷୀମାନେ ବଣରେ ନାଚି ନାଚି ମେଳା ମହୋତ୍ସବ ସୃଷ୍ଟି କରିଛନ୍ତି –

"ବନର କେଉଁ ପ୍ରଦେଶ ସଙ୍ଗୀତର ଶାଳା
ବ୍ୟୋମଲାସିକା ନର୍ତ୍ତନେ ହୋଇଅଛି ମେଳା ।"

କବି ପୁନଶ୍ଚ ଲେଖିଛନ୍ତି –

"ବିରଳ ଗନ୍ଧର୍ବଗାନେ ଖ୍ୟାତ ସାତ ସ୍ୱର
ବିତାଳ ହୋଇଣ ରାଗ ଜାତ ମନୋହର ।
ବସନ୍ତ ବାସ କରିଛି କେଦାର ହିଁ ମେଳ
ବିଚଳିତ ଯହିଁରେ ସଦା ସୁ-ମରଦଳ ।"

ଏହିପରି ବନବର୍ଣ୍ଣନାରେ କବିଙ୍କର ଚମତ୍କାରିତା ଲକ୍ଷ୍ୟ କରାଯାଇଥାଏ । ଏଥିରୁ ଅନୁମିତ ହୁଏ ଯେ ବନର ଶୋଭାଶ୍ରୀ କବି ଉପେନ୍ଦ୍ରଙ୍କର ଅତୀବ ପ୍ରିୟଥିଲା ।

କବିସମ୍ରାଟ ଉପେନ୍ଦ୍ର ଭଞ୍ଜ 'ବୈଦେହୀଶ ବିଳାସ' କାବ୍ୟର ସପ୍ତମ ଛାନ୍ଦରେ କାମ୍ୟକବନର ଶୋଭାକୁ ବର୍ଣ୍ଣନା କରିବା ପରିପ୍ରେକ୍ଷୀରେ ଅହଲ୍ୟା ଉଦ୍ଧାର, କାମ୍ୟକବନର ଶୋଭା ସହିତ ଅହଲ୍ୟାଙ୍କର ଶୋଭା ମଧ୍ୟରେ ସାମ୍ୟ ରହିଥିବା କଥା ବର୍ଣ୍ଣନା କରି ତାଙ୍କର କବିଚାତୁରୀ ପ୍ରଦର୍ଶନ କରିଛନ୍ତି । ତାଙ୍କ ଭାଷାରେ –

ବିଶ୍ୱାମିତ୍ର ମୁନି କହିଲେ –

"ବିପୁଳ କାମ୍ୟକ ବନେ ଥରେ ଭ୍ରମିଯିବା
ବୋଲି ବାହାରିଲେ ମୁନି ଘେନି ବେନି ଯୁବା ।
ବାଟେ ସେ ବନରେ ପଡ଼ିଥିଲା ଦିବ୍ୟଶିଳା
ବିଶୋଉ ରାମଚରଣ ଲାଗି ସେ ଅବଳା
ବିସ୍ମୟ ହୋଇ ଅନାଇଁ ଭାବି ରଘୁପତି
ବନୀତାର ବନିତାର ପ୍ରଭା ଏକା କୃତି ।"

ରାମଚନ୍ଦ୍ରଙ୍କ ଚରଣ ସ୍ପର୍ଶରେ ସେହି ଦିବ୍ୟଶିଳା ଅବଳାରେ ପରିଣତ ହେଲା । ରାମଚନ୍ଦ୍ର ଆଶ୍ଚର୍ଯ୍ୟ ହୋଇ ଦେଖିଲେ ଯେ, କାମ୍ୟକବନର ଶୋଭା ଓ ଏହି ନାରୀଙ୍କର ପ୍ରଭା ଏକାପରି ଜଣାପଡୁଛି ।

କବିଙ୍କ ବର୍ଣ୍ଣନାରେ –

"ବନପ୍ରିୟ ତୋଷଦାନୀ ରମଣୀ ଏ ଲୋକେ
ବନପ୍ରିୟ ତୋଷଦାନୀ ରମଣୀୟେ ଲୋକେ ।"

ଅର୍ଥାତ୍ ଏହି କାମ୍ୟକବନ କୋକିଳମାନଙ୍କର ଆନନ୍ଦଦାୟକ ସ୍ଥାନ ଏବଂ ଏହି ବନ ସଂସାରରେ ଅତ୍ୟନ୍ତ ରମଣୀୟ । ସେହିପରି ଏହି ବନିତା (ଅହଲ୍ୟା) ମୁନିମାନଙ୍କର ତୋଷଦାୟିନୀ ଏବଂ ସାଧାରଣତଃ ଲୋକମାନଙ୍କ ଦୃଷ୍ଟିରେ ଅତ୍ୟନ୍ତ ରମଣୀୟ ।

"ବିରାଜି ବରକନକ କଦମ୍ବ ରୁଚିରେ
ବିରାଜି ବରକନକ କଦମ୍ବ ରୁଚିରେ ।"

ଅର୍ଥାତ୍ କବି କହୁଛନ୍ତି ଯେ ଏହି କାମ୍ୟକବନ ପକ୍ଷୀ ସମୂହ, ବଟ ବୃକ୍ଷରାଜି, ପଲାଶ ଗଛ, କଦମ୍ବ ବୃକ୍ଷରାଜିରେ ସୁନ୍ଦର ଦେଖା ଯାଉଅଛି । ସେହିପରି ଏହି ନାରୀଶ୍ରେଷ୍ଠ (ଅହଲ୍ୟା) ଅପୂର୍ବ କାନ୍ତିରେ ସୁନ୍ଦର ଦେଖାଯାଉଛନ୍ତି । ସୁବର୍ଣ୍ଣ ସମୂହ ଏକାଠି କଲେ ଯେଉଁ କାନ୍ତି ଜାତ ହେବ, (ଅହଲ୍ୟା) ସେହିଭଳି କାନ୍ତି ଧାରଣ କରି ଦୀପ୍ତିମୟୀ ହୋଇଛନ୍ତି ।

"ବାସରେ ଆଚ୍ଛନ୍ନ ଶୋଭା ତୁଙ୍ଗ ପୟୋଧର,
ବାସରେ ଆଚ୍ଛନ୍ନ ଶୋଭା ତୁଙ୍ଗ ପୟୋଧର ।"

ଅର୍ଥାତ୍, ଏହି ବନଭୂମି ପୁନ୍ନାଗ ଓ ନାରିକେଳ ବୃକ୍ଷମାନଙ୍କରେ ପୂର୍ଣ୍ଣ ହୋଇଥିବାରୁ ଦିନବେଳା ପୂର୍ଣ୍ଣ ସୂର୍ଯ୍ୟତେଜ ଥିଲେ ମଧ ସେଠାରେ ସୁଶୀତଳ ଛାୟା ଶୋଭା ପାଉଛି । ସେହିପରି ଏହି ବନିତା ନିଜର ଉନ୍ନତ ପୟୋଧର ଯୁଗଳକୁ ବସ୍ତ୍ରଦ୍ୱାର ଆଚ୍ଛାଦିତ କରି ରଖିଛନ୍ତି ।

"ବେଣୀ କେଶରେ ରଞ୍ଜନ ସିନ୍ଦୂର ଚିତାରେ
ବେଣୀ କେଶରେ ରଞ୍ଜନ ସିନ୍ଦୂର ଚିତାରେ ।"

ଏହି କାମ୍ୟକ ବନ ବେଣୀ ଅର୍ଥାତ୍ ଦେବତାଡ଼ ଗଛ, ନାଗେଶ୍ୱର ବୃକ୍ଷ, ସିନ୍ଦୂର ବୃକ୍ଷ ଓ ରକ୍ତଚନ୍ଦନ ବୃକ୍ଷଦ୍ୱାରା ସୁଶୋଭିତ ହୋଇଛି । ସେହିପରି

ଅହଲ୍ୟାଙ୍କ ପକ୍ଷରେ ହେବ ଯେ ସେ କେଶଦ୍ୱାରା ବେଣୀଧାରଣ କରିଛନ୍ତି ଏବଂ ସିନ୍ଦୂର, ଚିତା ଧାରଣ କରି ରମଣୀୟ ଶୋଭା ଧାରଣ କରିଛନ୍ତି ।

ଅଧିକନ୍ତୁ କବି ଉପେନ୍ଦ୍ର ବର୍ଣ୍ଣନା କରିଛନ୍ତି –

"ବଳା ମଲ୍ଲି କଢ଼ି ଫୁଲ ମଣ୍ଡନ ଅତୁଲ
ବଳା ମଲ୍ଲି କଢ଼ି ଫୁଲ ମଣ୍ଡନ ଅତୁଲ ।"

ଅର୍ଥାତ୍, ଏହି କାମ୍ୟକ ବନ ବଳା (ବାଡ଼ିଅଁଳା ବୃକ୍ଷ) ମଲ୍ଲିକଢ଼ି ଏବଂ ନାନା ପ୍ରକାର ବନଫୁଲରେ ମଣ୍ଡିତ ହୋଇ ଅତୁଳନୀୟ ଶୋଭା ଧାରଣ କରିଛି । ସେହିପରି ଏହି ରମଣୀ (ଅହଲ୍ୟା) ପାଦରେ ବଳାଧାରଣ କରିଛନ୍ତି, କାନରେ ମଲ୍ଲୀକଢ଼ି ଲଗାଇଛନ୍ତି, ଏବଂ ହସ୍ତରେ ଅତୁଲ ଲଗାଇ ନିଜକୁ ମଣ୍ଡନ କରିଛନ୍ତି ।

ଉପେନ୍ଦ୍ର ଥିଲେ ଷଡ଼ଋତୁର ମୁଗ୍ଧ ରୂପକାର । ତେଣୁ ସେ ନାରୀଙ୍କୁ ଷଡ଼ଋତୁ ସହିତ ତୁଳନା କରିଛନ୍ତି । ଏହା ହିଁ ତାଙ୍କର ବର୍ଣ୍ଣନା ବୈଚିତ୍ର୍ୟ । 'ବୈଦେହୀଶ ବିଳାସ' କାବ୍ୟରେ କବି ସୀତାଙ୍କୁ ଷଡ଼ଋତୁ ସହିତ ତୁଳନା କରିଛନ୍ତି । ଏ ବର୍ଣ୍ଣନା ଅତୀବ ମଞ୍ଜୁଳ ଓ କାବ୍ୟିକ । ଦୃଷ୍ଟାନ୍ତ ସ୍ୱରୂପ –

"ବାସିତା ସୀତାଙ୍କୁ ଘେନି ତ୍ରିକାଳ ବଞ୍ଚନ
ବିଭରତି ଦିଗନ୍ତରେ ନୀଳକଣ୍ଠ ସ୍ୱନ ଯେ ।
ବିରେଚନ ସୁଖଦିନ ଦରଶନ କରେ
ବନେ କେଳିକୃତ ଚିତ୍ତ ଆଦର ନିଶାରେ ଯେ ।
ବିଗ୍ରହୁ ସୀତାର ଜାତ ହିମଜଡ଼େ ଉଷ୍ମ
ବସନ୍ତେ ଗ୍ରୀଷମେ ଅତି ଶୀତଳ ତା ବର୍ଷ୍ମ ଯେ ।
ବରଷା ଶରଦେ ଦୁଇମତ ଥାଇ ଦହି
ବିଦଗ୍ଧ ହେମାଙ୍ଗୀ ଗନ୍ଧସାରବାସୀ ସେହି ଯେ ।"

(ଷୋଡ଼ଶ ଛାନ୍ଦ)

ଭଞ୍ଜସାହିତ୍ୟର ଆଉ ଗୋଟିଏ ବିଶିଷ୍ଟ ଦିଗ ହେଉଛି ସମାଜର ବିଭିନ୍ନ ବର୍ଗର ଲୋକମାନଙ୍କୁ ସାହିତ୍ୟରେ ସ୍ଥାନିତ କରିବା । ଉପେନ୍ଦ୍ରଭଞ୍ଜ ସମାଜର ବିଭିନ୍ନ ବର୍ଗର ଲୋକମାନଙ୍କର ସଂସ୍ପର୍ଶରେ ଆସିଥିଲେ । ତେଣୁ ତାଙ୍କ କାବ୍ୟମାନଙ୍କରେ ସେ ପ୍ରସଙ୍ଗକ୍ରମେ ବିଭିନ୍ନ ସମ୍ପ୍ରଦାୟକୁ ଚିତ୍ରଣ କରିଛନ୍ତି । ଦୃଷ୍ଟାନ୍ତ ସ୍ୱରୂପ –

(୧) କୃଷକର ଚିତ୍ର –

"ଶସ୍ୟ ସମ୍ପତ୍ତି ହୋଇଲା ଏବେ
ଦେଖି ହରଷ କୃଷକ ଦେବେ ।
ବିଚାରକଲେ ବସିଣସର୍ବେ ଏକଇ ସ୍ଥାନେ ଯେ
ସାହୁ କୃଷ୍ଣବଲ୍ଲଭୀ ଲଭି ସନ୍ତୋଷ ଯେ
ଶୁଝାମୂଳ ଧନକୁ ପାଇବା ଆଶ ଯେ ।" (ସୁ.ପ.- ୬ଷ୍ଠ ଛାନ୍ଦ)

ବଣିକର ଚିତ୍ର –

"ବଣିଜାର ହସ୍ତ ସ୍ୱର୍ଗପ୍ରତୀତି
ବିଶ୍ୱାବସୁ ଛନ୍ତି ସବୁ ଜାଣନ୍ତି ।" (ବୈ.ବି. - ୬ଷ୍ଠ ଛାନ୍ଦ)

ଶିବପୂଜକ ମାଳି ସମ୍ପ୍ରଦାୟ –

"ବାରକରେ ଖାତ ଶିବପୁରେ ଉତ୍ସବେ
ବାଦନ ଯେ ଶଙ୍ଖ ମାଳୀଗଣ ହିଁ ଭାବେ ।" (ବୈ.ବି.-୫ମ ଛାନ୍ଦ)
"ମାଳୀଆଳି ଦକ୍ଷିଣାବର୍ତ୍ତକ ବିନାକମ୍ବୁ
ନ ଘେନନ୍ତି ଦେବାକୁ ହରଚରଣେ ଅମ୍ବୁ ଯେ ।"
(ଲା.ବ. ଦ୍ୱିତୀୟ ଛାନ୍ଦ)

ବର୍ଦ୍ଧକୀକୁଳର ଚିତ୍ର–

"ବର୍ଦ୍ଧକୀଚୟ କିମୟ ବିଶ୍ୱକର୍ମାଗୁରୁ
ବେଦିକା ମଣ୍ଡପ କଲେ ଅତିଶୟ ଚାରୁ ଯେ ।"
(ବୈ.ବି. ୧୪ଶ ଛାନ୍ଦ)

ଜ୍ୟୋତିଷ –

"ଗ୍ରହ ପାଞ୍ଜିକି କହେ ଜ୍ୟୋତିଷ"
"ଜ୍ୟୋତିବନ୍ତେ ଥିଲେ ବସି
ଜ୍ୟୋତିଷ ଏକାଳେ ଭାଷି ।" (କୋ.ବ୍ର.ସୁ - ୩୨ ଛାନ୍ଦ)
"ପାଟଯୋଷୀ ଡାକି ଭଲ ବେଳକୁ ଜାଣିଲେ
ଉତ୍ତମ ସୁଝିଲା ବେନି ଜାତକ ବୁଝିଲେ ।" (ଲା.ବ. ୨୮ ଛାନ୍ଦ)
ବେହରଣ ଭାଙ୍ଗି ବିଭାଦିନମୂଳକରି
ବିଶୁଦ୍ଧତାରଲଗ୍ନକୁ ଜ୍ୟୋତିଷେ ବିଚାରିଯେ ।"
(ବୈ.ବି. ୧୪ଶ ଛାନ୍ଦ)

କବି ତନ୍ତୁବାୟ ଓ ଗଉଡ଼ ମାନଙ୍କର ଚିତ୍ର ପ୍ରଦାନ କରି କହିଛନ୍ତି –

"ବନ୍ଧୁ କୁମୁଦର କି ତନ୍ତୁବାୟ
ବିଶଦ ନୀଳ ଅମ୍ବର ଉଦୟ ।
ବ୍ରଜନିକର ଜାହ୍ନବୀ ଲକ୍ଷଣେ
ବିଶୁଦ୍ଧ ପୟ ଉଦୟ କରଣେ ।"

ଧୀବର – 'ବୈଦେହୀଶ ବିଳାସ' କାବ୍ୟର ନବମଛାନ୍ଦରେ ଧୀବର ପ୍ରସଙ୍ଗ ସ୍ଥାନିତ ।

ଏହା ବ୍ୟତୀତ ଏହି ଗ୍ରନ୍ଥରେ ମଧ୍ୟ ଉଲ୍ଲେଖ ଅଛି –

"ବିନ୍ଧି ମତ୍ସ୍ୟ ଯଥା ଧୀବର ମୀନରେ ।"

(ବୈ.ବି. – ୪୯ଶ ଛାନ୍ଦ)

ମାଳିନୀ ଓ କଂସାରୀ ଚିତ୍ର –

"ବାରିଧି କୁମାରୀ ପରି ମାଳିନୀ
ବିସ୍ତାରୀ ସୁମନା ଭଦ୍ର ଶ୍ରୀଦାନୀ
ବେଷ୍ଟନେ ପାତ୍ରଗଣ ସାବଧାନେ
ବସେ କଂସାରୀ ରାଜନ ଯେସନେ ।" (ବୈ.ବି.)

ବ୍ରାହ୍ମଣୀ ଚିତ୍ର –

"ବାହ୍ମଣୀ ସାତସ-ଅଳଙ୍କାର କରି ତହିଁ
ବସ୍ତ୍ର ପାଟେ ଲଲାଟେ ସିନ୍ଦୂର ଚିତା ଦେଇ ଯେ ।"

(ବୈ.ବି. ୧୪ଶ ଛାନ୍ଦ)

ଚିତ୍ରକାର –

"ବିଚିତ୍ର କର୍ମା ଚିତ୍ରକାର ଥିଲା ଡକାଇ ବିହି ।"

(କୋ.ବ୍ର.ସୁ – ୧୮ଶ ଛାନ୍ଦ)

"ସଚିତ୍ର କରନ୍ତି ଭିତିମାନ ଚିତ୍ରକାରେ" (ସୁ.ପ. – ୧୬ଶ ଛାନ୍ଦ)

ଶବର ସମ୍ପ୍ରଦାୟ –

"ଶବର ଶବରୀମାନେ ଯେ ବିଳସନ୍ତି ସାନୁରେ ।"

(ସୁ.ପ. - ୫ମ ଛାନ୍ଦ)

"ଶବରୀ ଶର୍ବରୀଶେଷୁ ଅରଣ୍ୟକୁ ଯାଇ
ହରି ବିଦାରିତ କରି - ମୋତି ପଡ଼ିଥାଇ ଯେ ।

ବଦରୀ ଆଦରି ନେଇ ସରୋବରେ ଧୋଇ
ବିକା ତା ନ ଯିବ ବୋଲି ଆସନ୍ତି ପକାଇ ଯେ ।"

(ଲା.ବ. – ଦ୍ୱିତୀୟ ଛାନ୍ଦ)

ବୈଦ୍ୟକୁଳର ଚିତ୍ର –

"ହରିତକୀ ପାଇଁ ତିଆରିଲେ ବୈଦ୍ୟକୁଳ
ଭାରବାହେ ଭାରରେ ଆଣନ୍ତି ଜାତିଫଳ ଯେ ।"

(ଲା.ବ. – ଦ୍ୱିତୀୟ ଛାନ୍ଦ)

ଷଡ଼ଋତୁ ବର୍ଣ୍ଣନାରେ କବିଙ୍କର ଚାତୁର୍ଯ୍ୟ ପରିଲକ୍ଷିତ ହୁଏ । ଗ୍ରୀଷ୍ମଋତୁ ବର୍ଣ୍ଣନା କରିବାକୁ ଯାଇ କବି ଗାଇଛନ୍ତି –

"ଶୁଣହେ ସାଧବ ମାଧବ ଶେଷେ ଝଲିକା କହି
ଏ ଗ୍ରୀଷମ ଋତୁ ବିଷମ ସମ ନୁହନ୍ତି କେହି ।
ସତ ଏ ପରଶ ମାତ୍ରରୁ ଜାତ ଗାତ୍ରରୁ ସ୍ୱେଦ
ଭାନୁ ବୃହଭାନୁ ଯା' ଯୋଗୁଁ କଲେ ତେଜସ୍ୱୀଭାବ ।
ପ୍ରଭାକୁ ପ୍ରକାଶେ ଆକାଶେ ପ୍ରଭାକରେ ଦିବସେ
ଜଳେ କୃଶାନୁ ସାନୁ ସାନୁ ମାନଙ୍କରେ ଅନିଶେ ।
ଧରଣୀ ସରଣି ଧୂଳିକି କଲା ତପତ ତହିଁ ।
ପଥିକ ପଦବିପଦକୁ ପଦ ପଦକେ ଦେଇ ।"

(କୋ.ବ୍ର.ସୁ - ୧୮ଶ ଛାନ୍ଦ)

ବର୍ଷାଋତୁ ବର୍ଣ୍ଣନା ଉପେନ୍ଦ୍ରଙ୍କର କାବ୍ୟଗୁଡ଼ିକରେ ବେଶ୍ ବାସ୍ତବ ହୋଇପାରିଛି । କବି ଲେଖିଛନ୍ତି –

"ପ୍ରବେଶ ହୋଇଲା ବରଷା କାଳ । ପ୍ରମାଦମାନଙ୍କ ଜନମ ସ୍ଥଳ ॥
ଜଳଦ କଜ୍ଜଳକାନ୍ତି ଶାର୍ଦ୍ଦୂଳ । ସୁଖେ ବିହରିଲେ ଶିଖରୀ ଚୂଳ ॥
ଗର୍ଜ୍ଜିଲା ସନ୍ତତ । ପ୍ରକାଶି ଝଳି ବକାବଳୀ ଦନ୍ତ ॥
କୁରଙ୍ଗ ତୁରଙ୍ଗ ଥିଲା ସକାଶେ । ଚନ୍ଦ୍ରସୂର୍ଯ୍ୟ ଲୁଚି ରହେ ଆକାଶେ ॥
ମୁନିଏଁ ମୃଗଚର୍ମ ଥିଲା ଦକୁଁ । ହିମାଳୟ ତଳୁ ଗଲେ ଶୃଙ୍ଗକୁ ॥
ଋଷି ପନ୍ତିଲୀନ । ଆଗ କରିସେ ଗିଳିଦେଲା ଦିନ ॥
ଡାହୁକମାନେ ଡାକଦେଲେ ତହିଁ । ସିଂହ ଆସୁଅଛି ସନ୍ଦେହ ନାହିଁ ॥

ଶୁଣି ବିଯୋଗିନୀ ଲଭି ଦରକୁ । ଚିହ୍ନାଇ ହାର ଯୋଡ଼ାଇ ଡରକୁ ॥
ସେ ମିଥ୍ୟା ନ କଲେ । କାଳିକାକୁ ଯେଣୁ ଅନାଇ ଦେଲେ ॥"

(ଲା.ବ. – ୪୧ ଛାନ୍ଦ)

କବି ଉପେନ୍ଦ୍ର 'କୋଟିବ୍ରହ୍ମାଣ୍ଡସୁନ୍ଦରୀ' କାବ୍ୟର ୨୫ଶ ଛାନ୍ଦରେ ବର୍ଷା, ଶୀତ ଓ ଗ୍ରୀଷ୍ମ – ଏହି ତିନୋଟି ଋତୁର ବର୍ଣ୍ଣନା କରି ଅପୂର୍ବ ଶବ୍ଦଯୋଜନା ପାଟବର ପରିଚୟ ଦେଇଛନ୍ତି । ଏହି ଗୋଟିଏ ଛାନ୍ଦକୁ ତିନୋଟି ରାଗରେ ତିନିଗୋଟି ଋତୁର କବି ବର୍ଣ୍ଣନା କରିଛନ୍ତି । ପ୍ରଥମେ ଅକ୍ଷୁର୍ଣ୍ଣ ଭାବରେ ପାଦ ଦୁଇଟିକୁ ପାଠକଲେ ତାହା ହେବ ଚିନ୍ତାଦେଶାକ୍ଷ ରାଗ ଏବଂ ଏଥିରୁ ବର୍ଷାଋତୁ ଅର୍ଥ ପ୍ରକାଶ ପାଇବ । ଦ୍ୱିତୀୟରେ ପ୍ରତ୍ୟେକ ପାଦର ପ୍ରଥମ ଅକ୍ଷରକୁ ବାଦ୍‌ଦେଇ ପାଠକଲେ ତା'ର ରାଗହେବ କାଫିକାମୋଦୀ ଏବଂ ତାହା ଶୀତକାଳକୁ ବୁଝାଇବ । ସେହିପରି ତୃତୀୟରେ ପ୍ରତ୍ୟେକ ପାଦର ପ୍ରଥମ ଦୁଇ ଅକ୍ଷରକୁ ବାଦ୍‌ଦେଇ ଆବୃତ୍ତି କଲେ ରାଗହେବ ମାଳବରାଡ଼ି ଏବଂ ତାହା ଗ୍ରୀଷ୍ମଋତୁକୁ ବୁଝାଇବ । ଯଥା –

"ଆସାରସ ଘନ କାଳ ହୋଇ ଉଦୟ ।
ଅସିତ ପରବଳରୁ ଦରଶମୟ ।"

ଏହାର ରାଗ ହେଉଛି ଚିନ୍ତାଦେଶାକ୍ଷ । ଅର୍ଥହେଉଛି – ଆସାର (ଧାରାପାତ) ସଘନ (ନିବିଡ଼) ହେବାର କାଳ (ବର୍ଷାକାଳ) ଉଦିତ ହେବାରୁ ଅସିତ (କୃଷ୍ଣବର୍ଣ୍ଣ) ଘୋଟିଯିବାକୁ ଦରଶ (ଅମାବାସ୍ୟାପରି) ଅନ୍ଧକାରମୟ ବୋଧ ହେଲା ।

ଦ୍ୱିତୀୟରେ, ଗୋଟିଏ ଗୋଟିଏ ଅକ୍ଷରକୁ କାଟିଦେଇ ପାଠକଲେ ତାହା ହେବ –

"ସାରସ ଘନ କାଳ ହୋଇ ଉଦୟ
ଶୀତ ପରବଳରୁ ଦରସମୟ ।"

ଏହାର ରାଗ ହେଉଛି କାଫିକାମୋଦୀ । ଏହାର ଅର୍ଥ ହେଉଛି (ସାରସ-ଘ୍ନ) କାଳ ଅର୍ଥାତ୍ ଶୀତକାଳ ଉଦିତ ହେବାରୁ ଶୀତର ପ୍ରାବଲ୍ୟ ହେତୁ କୁହୁଡ଼ି ଯୋଗେ 'ଦର' ଅର୍ଥାତ୍ ଶଙ୍ଖ ପ୍ରାୟ ଶୁକ୍ଳ ଦେଖାଗଲା ।

ତୃତୀୟରେ ମୂଳ ପଦଟିର ପ୍ରତ୍ୟେକ ପାଦରୁ ଦୁଇଟି ଅକ୍ଷର ଚ୍ୟୁତକରି ପାଠକଲେ ମାଳବରାଡ଼ି ରାଗ ହେବ । ଯଥା–

"ରସଘନକାଳ ହୋଇ ଉଦୟ
ତପର ବଳରୁ ଦର ସମୟ ।"

ଅର୍ଥାତ୍ ରସଘ୍ନ (ଜଳ ନାଶକ) କାଳ (ଗ୍ରୀଷ୍ମକାଳ) ଆରମ୍ଭ ହେବାରୁ ତପର (ଗ୍ରୀଷ୍ମର) ପ୍ରବଳତାରୁ ଏହା ଦର (ଭୟର) ସମୟ ହେଲା ।

ସେହିପରି ଶରତରତୁ ଚିତ୍ରଣ କରିବାକୁ ଯାଇ କବି ଉପେନ୍ଦ୍ର ଚମତ୍କାର ବର୍ଣ୍ଣନାବିଳାସ ଦ୍ୱାରା ଏହି ଋତୁକୁ ଉପସ୍ଥାପନ କରିଛନ୍ତି । ଅନ୍ୟ କୌଣସି ରୀତି କବିଙ୍କ ରଚନାରେ ଶରତବର୍ଣ୍ଣନାର ଏପରି ମନୋଜ୍ଞ ଭାବନା ଲକ୍ଷ୍ୟ କରିହୁଏନା । ଯଥା–

"ବରଷାକାଳ ଅନ୍ତକରେ ଶରଦ ବହି ଶିବ ଆଡ଼ମ୍ବର
ବରଧୂତ ଘନାଘନ ଖଣ୍ଡକୃତେ କେଶରୀ ସରି ଆବର ।
ବର ପରାୟେ ବରକନ୍ୟାଲିଙ୍ଗନେ ବଢ଼ାଇ ଶୋଭାପ୍ରବର
ବରଣ କୃତ୍ୟ ରଜକ ପ୍ରଭାବକୁ ନିର୍ମଳକାରୀ ଅମ୍ବର ।
ବରକ୍ଷଣ ଶରେ କୃଷ୍ଣସାର ହରେ ଯଥା ଲୁବ୍ଧକ ଶବର
ବରଧନ ଲୀଳା ଶୁଷ୍କରେ ତରଣୀ କରାଇ ସେ କି ଧୀବର ।
ବର ଉଜ୍ଜ୍ୱଳ ଚନ୍ଦ୍ର ଶିରୀ ଜନ୍ମାଇ ଯେମନ୍ତ ସରିତବର
ବରଗ ବରଗ ସୁମନା ଉତ୍‌ଫୁଲ୍ଲକାରକେ କି ପୀତାମ୍ବର ।"

(ବୈ.ବି. - ତ୍ରିଂଶ ଛାନ୍ଦ)

ଋତୁରାଜ ବସନ୍ତର ବର୍ଣ୍ଣନାରେ କବି ଉପେନ୍ଦ୍ରଙ୍କ ଲେଖନୀ ବେଶ୍ ଚଳଚଞ୍ଚଳ । କବିଙ୍କର ବିଭିନ୍ନ କାବ୍ୟରେ ବସନ୍ତର ମନୋଜ୍ଞ ବର୍ଣ୍ଣନା ବେଶ୍ ଚିତ୍ତାକର୍ଷକ । ନିମ୍ନରେ ବସନ୍ତ ରାଗରେ ବସନ୍ତଋତୁର ବର୍ଣ୍ଣନା କରିବାକୁ ଯାଇ କବି ଲେଖିଛନ୍ତି –

"ବସନ୍ତ ସମୟ ଅତି ରସମୟ ରଭସ ପ୍ରବେଶ ଆସି ଯେ ।
ବିଦ୍ରୁମ ଛବି ସୁଦ୍ରୁମ ଲତା ଭାବି ପଲ୍ଲବେ ସରାଗ ଦିଶି ଯେ ।
ବିକଶି । ବିକଶି କୁସୁମମାନ ଯେ ।
ବୋଲାଇଲେ ଜବ ନବ ପୁଷ୍ପବତୀ ଭାବରସ କଲେ ଦାନ ଯେ ।
ବାସନ୍ତୀ ମଲ୍ଲୀ ନିଆଳୀ ଛୁରୀଅନା ଯହିଁ ହେଲେ ଇଚ୍ଛାବତୀ ଯେ
ବାସକୁ ଆସି ଭ୍ରମରଜାରେ ରସି ମଧୁମାଦକରେ ମାତି ଯେ ।
ବସନ୍ତ । ବାତ ବାସ ହରେ ଏକା ଯେ ।

ବସାଇ ନ ଦିଅ ପାଶେ ମଧୁପକୁ କେତକୀ ସତୀ ନାୟିକା ଯେ ।
ବର୍ଯ୍ୟାନାରୀପରି ଫୁଲମାଳ ଧରି କେବଳ କିଂଶୁକ ଥାଇ ଯେ ।
ବେଶ୍ୟାପରି ଚ୍ୟୁତ କୋଳେ ପରଭୃତ ବସାଇ ଗୀତ ଗୁଆଇ ଯେ ।
ବିହିତ । ବିହି ପୁନ୍ନାଗ ସୁନାରୀ ଯେ
ବିଦେଶ ବାହୁଡ଼ା ସମୟେ ବସନ୍ତେ ପୁଲକ ଯାଇ ସଞ୍ଚରି ଯେ ।"

(ବୈ.ବି. – ଚତୁସ୍ତ୍ରିଂଶ ଛାନ୍ଦ)

କବିଙ୍କର ପ୍ରସିଦ୍ଧ କାବ୍ୟ 'ବୈଦେହୀଶବିଳାସ'ର ଅଷ୍ଟାବିଂଶ ଛାନ୍ଦ ଶ୍ରୀରାମ ସୁଗ୍ରୀବଙ୍କ ମିତ୍ରତା ସ୍ଥାପନ ପ୍ରସଙ୍ଗଟି ବେଶ୍ ବୁଧମନବୋଧକ । ରାଗ ଦେଶାକ୍ଷ ଏବଂ ଚକ୍ରକେଳି ବାଣୀରେ କବି ଲେଖିଛନ୍ତି –

"ବୋଲେ ସୁଗ୍ରୀବେ ରାମକ୍ଳେଶ ଭାଷା । ବେନିଜନେ ପଡ଼ିଛି ଏକ ଦଶା ॥
ବିଭାବସୁ ବଂଶେ ଜାତ ଆମ୍ଭର । ବିଧିରେ ତ ତୁମ୍ଭେ ତାଙ୍କ କୁମର ॥
ବସୁ ଅଯୋଧ୍ୟା କିଷ୍କିନ୍ଧା ରାଜନ । ବିଭୂତିରେ ବନେ ହେଲା ସଦନ ॥
ବାମା ବିଚ୍ଛେଦ ପର ଧରଷଣେ । ବଞ୍ଚି ଦିନଫଳ ମୂଳ ଭକ୍ଷଣେ ॥
ବଞ୍ଚି ଅନୁଜ ମନ୍ତ୍ରୀ ପ୍ରବୋଧନେ । ବୋଧ ହୋଇ ରହିଥାଇଁ ଜୀବନେ ॥
ବାଧା ମାତା ଭ୍ରାତାରେ ଉପୁଜିଛି । ବଇରିକି ସାଧିବା ଇଚ୍ଛା ଅଛି ॥
ବ୍ୟବହାରେ ମିତ୍ର ହେବା ଉଚିତ । ବୋଲେ ସୁଗ୍ରୀବ ଶୁଣ ରଘୁସୁତ ॥
ବୁଲ ଧରଣୀ ନିର୍ଭୟରେ ତୁମ୍ଭେ । ବାଳି ଡରେ ଗିରିରେ ଲୁଚୁଆମ୍ଭେ ॥
ବଳବନ୍ତ ହେଲେ ଯଥା କେଶରୀ । ବଧେ ଗଜାଦି ଶରଭକୁ ଡରି ॥
ବିହିପାରିବି କେଉଁ ଉପକାର । ବୋଲେ ମିତ୍ରହେବା ତୁମ୍ଭ ଆମ୍ଭର ॥
ବୋଲେ ରଘୁବୀର ଶୁଣି ଉତ୍ସୁକେ । ବିନ୍ଧି ପକାଇବି ବାଳି ବାଣକେ ॥
ବ୍ରହ୍ମଲୋକେ ଥିଲେ ସୀତା ଖୋଜାଇ । ବାଦରଚନେ ଆଣିବି ସେ କହି ॥
ବୀର ଏ ରୂପ ମୋର ସଙ୍ଗେ ଅଛି । ବାଳଭାନୁ ଜନ୍ମୁ ଡ଼େଇଁ ଧରିଛି ॥
ବୋଲା ବୋଲି ସେ ହୋଇ ଏତେ ମାତ୍ର । ବହ୍ନି ସାକ୍ଷୀ କରାଇ ହେଲେ ମିତ୍ର ॥"

ଉପେନ୍ଦ୍ର ଅନ୍ତର୍ଲିପି ଓ ବହିର୍ଲିପି ମାଧମରେ କାବ୍ୟରେ ଯେଉଁ ପ୍ରଶ୍ନୋତ୍ତରୀ ପ୍ରସଙ୍ଗ ଉପସ୍ଥାପନ କରିଛନ୍ତି, ସେଥିରୁ ତାଙ୍କର ଧୀମତ୍ତା ଓ ପାଣ୍ଡିତ୍ୟର ପରଖ ମିଳିଯାଏ । ଏଠାରେ ଗୋଟିଏ ବହିର୍ଲିପିର ଦୃଷ୍ଟାନ୍ତ ଉଲ୍ଲେଖ କରାଗଲା । ଶ୍ରୀରାମ

- ସୀତାଙ୍କ ବନବିହାର କାଳର କୌଣସି ଦିନକର ମିଳନ ସମୟରେ ଶ୍ରୀରାମ କହିଛନ୍ତି –

"ବହିର୍ଲିପି କହି ବେନି ବେନି ବର୍ଣ୍ଣ ଲେଖି
ବାମନାଶି ଦକ୍ଷିଣ ବର୍ଣ୍ଣକୁ ଭଜ ସଖି ଗୋ ।
ବନ୍ଦ୍ୟକେ ଜଗତେ, କେହ୍ନୁ ତିଳକର ସ୍ଥାନ (ଶିବ, ଭାଲ)
ବସିରାଜା କି କରି, ବେଶ୍ୟାର କି ରଞ୍ଜନ ଯେ (ସଭା, ରୂପ)
ବ୍ୟୋମକେଶମୋହିନୀକେ, ଶିଶୁ କେ ପାଳଇ ? (ଚଣ୍ଡୀ, ମାତା)
ବଡ଼ଖେଳରେ କେ ଘେନ, ଘନ କି ମୁଞ୍ଚଇ ଯେ ? (ପଶା, ନୀର)
ବିରଚେ କେହ୍ନୁ ପ୍ରବନ୍ଧ, ଋଷି କି କରନ୍ତି ? (କବି, ତପ)
ବହେ ଉତ୍ତୁଙ୍ଗ ଶୃଙ୍ଗକେ, ବିପ୍ରେ କି ହୁଅନ୍ତି ଯେ ? (ଗିରି, ବ୍ରତ)
ବିଷ୍ଣୁ ଆୟୁଧକେ ଚକ୍ର ବିନା, କେ ଅଗମ୍ୟ ! (ଗଦା, ବନ)
ବ୍ରହ୍ମା କି ପାଳନ୍ତି, କେହ୍ନୁ ରଚନ୍ତି ସଂଗ୍ରାମ ଯେ ? (ଲୋକ, ବୀର)"

ଶ୍ରୀରାମଙ୍କର ଏହି ପ୍ରଶ୍ନର ଉତ୍ତରରେ ଉପର୍ଯ୍ୟୁକ୍ତ ଷୋହଳଗୋଟି ଶବ୍ଦ ଲେଖି ପ୍ରତ୍ୟେକ ଶବ୍ଦର ବାମ ଅକ୍ଷର ଲିଭାଇ ଦେଇ ଦକ୍ଷିଣ ଅକ୍ଷରମାନ ପଢ଼ିଲେ ତାହା ହେବ – "ବଲଭା ପଣ୍ଡିତାସାର ବିପରୀତ ଦାନ କର ।" ସୁତରାଂ ସୁଚତୁରା ବୈଦେହୀ ଶ୍ରୀରାମଙ୍କୁ କହିଛନ୍ତି –

"ବୁଝି ମୈଥିଳୀ ଭାଷିତ ଗୁରୁ କରି ନାହିଁ ।"

ଉତ୍ତରରେ ଶ୍ରୀରାମଚନ୍ଦ୍ର କହିଛନ୍ତି –

"ବୋଲେ ରାଘବ ଅଗୁରୁ ବିଦ୍ୟାସିନା ସେହି ଯେ ।"

(ବୈ.ବି. – ୧୯ଶ ଛାନ୍ଦ)

ଏହିପରି କବିସମ୍ରାଟ ଉପେନ୍ଦ୍ରଙ୍କର ଉକ୍ତିଚାତୁର୍ଯ୍ୟ ତାଙ୍କର କାବ୍ୟସାମ୍ରାଜ୍ୟକୁ ଉପଭୋଗ୍ୟ ଓ ମାନସରଞ୍ଜନ କରିପାରିଛି ।

ଉପେନ୍ଦ୍ରଙ୍କ ବର୍ଣ୍ଣନାରେ କେତେ ଯେ ଯାଦୁକରୀ ଶକ୍ତି ଅଛି ତାହା କେତୋଟି ପଂକ୍ତିରୁ ଅବଧାରଣା କରିହୁଏ । ଶ୍ରୀରାମ, ଲକ୍ଷ୍ମଣ ଓ ସୀତା ବନଗମନ ପୂର୍ବରୁ ମା' କୌଶଲ୍ୟାଙ୍କ ଉପଦେଶ ବାଣୀକୁ କବି ଯେପରି ଲେଖିଛନ୍ତି, ତାହାଅତ୍ୟନ୍ତ ମର୍ମସ୍ପର୍ଶୀ ଏବଂ ତାହା ପାଠକଲେ ଚକ୍ଷୁ ସ୍ୱତଃ ଲୋତକାପ୍ଳୁତ ହୋଇଯାଏ–

"ବଂଶନଳୀରେ ରଖି ଲେଖି ବସନ ଦେଲେ ସୀତା ପାଇଁ ଆଣି
ବହିଲେ ସେ ପାତ୍ର ଲକ୍ଷ୍ମଣ ଇକ୍ଷ୍ବାକୁ କୁଳର ଯେ ଚୂଡ଼ାମଣି ।
ବାହାରିଲେ ସେ ତିନି
ବଧୂ ବୋଧନ୍ତି ରାମଜନନୀ ।
ବିପିନରେ ପୀନ ଉରଜା ଅପୂର୍ବଦ୍ରବ୍ୟ ଦେଖି ନ ମାଗିବୁ
ବେନି ସହୋଦର ମଧ୍ୟରେ ଆଦର ବିପଥରେ କରିଥିବୁ ।
ବାଷ୍ପେତିନ୍ତିଲା ଉର
ବାଣୀ ନ ସ୍ଫୁରେ କଣ୍ଠୁ ତାଙ୍କର ।"

ପୁନଶ୍ଚ –

"ବୋଇଲେ ସୁମିତ୍ରା ପୁତ୍ରେ ସେବିଥିବୁ ଶ୍ରୀରାମ ମାନସ ଜାଣି
ବିନିଦ୍ରେ ସର୍ବ ଶର୍ବରୀକି ହରିବୁ ହୋଇ ଧନୁଶର ପାଣି ।
ବଧୂଯାଉଛି ସଙ୍ଗେ ।
ବଡ଼ ମାୟାବୀ ରାକ୍ଷସ ପୁଙ୍ଗେ ।"

କବି ଉପେନ୍ଦ୍ର ଭଞ୍ଜ କାବ୍ୟ ରଚନାର ସମସ୍ତ ବିଧି ଅନୁସାରେ କାବ୍ୟସର୍ଜନା କରିଛନ୍ତି । ସର୍ବୋପରି ବିବିଧ କାବ୍ୟପାକମାନଙ୍କର ରୀତି ତାଙ୍କ କାବ୍ୟ ଜଗତରେ ଗୃହୀତ ହୋଇଛି । ସଂସ୍କୃତରେ ମୁଖ୍ୟତଃ ଷଡ଼ବିଧ କାବ୍ୟପାକ ସମ୍ପର୍କରେ କୁହାଯାଇଛି । ଯଥା –

"ପନସୋ ନାରିକେଳଂ ଦ୍ରାକ୍ଷା ଖର୍ଜୁର ଏବ ଚ
କଦଳୀଗୁଡ଼ ଇତ୍ୟେବଂ ପାକା ଷଡଭିଧୀୟତେ ।"

ଅର୍ଥାତ୍ ଷଡ଼ବିଧ କାବ୍ୟପାକ ହେଉଛି – ପଣସପାକ, ନାରିକେଳପାକ, ଦ୍ରାକ୍ଷାପାକ, ଖର୍ଜୁରପାକ, କଦଳୀପାକ ଏବଂ ଗୁଡ଼ପାକ । ଉପେନ୍ଦ୍ରଙ୍କ 'ବୈଦେହୀଶ ବିଳାସ' କାବ୍ୟରେ ପଣସପାକ, ଲାବଣ୍ୟବତୀ କାବ୍ୟରେ ନାରିକେଳପାକ, କୋଟିବ୍ରହ୍ମାଣ୍ଡସୁନ୍ଦରୀ କାବ୍ୟରେ ଦ୍ରାକ୍ଷାପାକ, ସୁଭଦ୍ରା ପରିଣୟ କାବ୍ୟରେ ଖର୍ଜୁରପାକର ଦୃଷ୍ଟାନ୍ତ ପରିଲକ୍ଷିତ ହୁଏ ।

ସର୍ବୋପରି ବିଶ୍ୱନାଥ କବିରାଜଙ୍କ କୃତ 'ସାହିତ୍ୟଦର୍ପଣ'ଗ୍ରନ୍ଥରେ ଉଲ୍ଲେଖ ରହିଥିବାର କାବ୍ୟଲକ୍ଷଣଗୁଡ଼ିକୁ ମଧ୍ୟ ଉପେନ୍ଦ୍ର ଗ୍ରହଣ କରିଛନ୍ତି । ସାହିତ୍ୟ ଦର୍ପଣକାର ଉଲ୍ଲେଖ କରିଛନ୍ତି –

"ସର୍ଗବନ୍ଧୋ ମହାକାବ୍ୟଂ ତତ୍ରୈକୋ ନାୟକସ୍ସୁରଃ
ସଦ୍‌ବଂଶ କ୍ଷତ୍ରିୟୋ ବ୍ୟାପି ଧୀରୋଦାତ୍ତ ଗୁଣାନ୍ୱିତଃ ।
× × ×
ଆଦୌ ନମସ୍କ୍ରିୟା ଶୀର୍ବା ବସ୍ତୁନିର୍ଦ୍ଦେଶ ଏବବା
କ୍ୱଚିନ୍ନିନ୍ଦା ଖଳାଦୀନାଂ ସତାଂଚ ଗୁଣକୀର୍ତ୍ତନଂ ।
× × ×
ସନ୍ଧ୍ୟା-ସୂର୍ଯ୍ୟେନ୍ଦୁ-ରଜନୀ-ପ୍ରଦୋଷ-ଧ୍ୱାନ୍ତ-ବାସରାଃ ।
ପ୍ରାତ-ର୍ମଧ୍ୟାହ୍ନ-ମୃଗୟା-ଶୈଳର୍ତ୍ତୁ ବନସାଗରାଃ ।
ସମ୍ଭୋଗ-ବିପ୍ରଲମ୍ଭୌଚ ମୁନି-ସ୍ୱର୍ଗ ପୁରାଧ୍ୱରାଃ ।"

କାବ୍ୟର ଏହି ସମସ୍ତ ଲକ୍ଷଣଗୁଡ଼ିକୁ ଉପେନ୍ଦ୍ର ଗ୍ରହଣ କରିଛନ୍ତି ।

ଆଲୋଚନାର ନିଷ୍କର୍ଷରେ ଏତିକି କୁହାଯାଇପାରେ ଯେ ଭଞ୍ଜ ସାହିତ୍ୟରେ ସମାଜର ବିଭିନ୍ନ ବର୍ଗର ଲୋକମାନଙ୍କୁ ସ୍ଥାନିତ କରିବାର ପ୍ରୟାସ କରାଯାଇଛି । ଉପେନ୍ଦ୍ର ଭଞ୍ଜ ପ୍ରସଙ୍ଗକ୍ରମେ କୈବର୍ତ୍ତ, କେଳା, ଶବର, ନାପିତୁଣୀ, ମାଳିନୀ, କୃଷକ, ସାଧବ, ସାଧବଯୁବତୀମାନଙ୍କର ବର୍ଣ୍ଣନା କରିଛନ୍ତି । ଉପେନ୍ଦ୍ର ଭଞ୍ଜ ନଗର ବର୍ଣ୍ଣନାରେ ମଧ୍ୟ ତାଙ୍କର ପାରଦର୍ଶିତା ପ୍ରଦର୍ଶନ କରିଛନ୍ତି । ପୁଷ୍ପପୁରନଗର, ଚମ୍ପାନଗରୀ, ସିଂହଳ କଟକ, ଅଯୋଧ୍ୟାନଗର ବର୍ଣ୍ଣନାରେ କବିଙ୍କର ଚାତୁର୍ଯ୍ୟ ବେଶ୍ ପରିଲକ୍ଷିତ । ଉପେନ୍ଦ୍ର ଭଞ୍ଜଙ୍କ ସାହିତ୍ୟ ଶବ୍ଦପାଣ୍ଡିତ୍ୟ, ଆଳଙ୍କାରିକତା, ରସବିଚାର, ସାଙ୍ଗୀତିକତା, ଶୃଙ୍ଗାରୀଚେତନା, ବିଭୁପ୍ରୀତି, ବହୁଶାସ୍ତ୍ରଦର୍ଶିତା, ଜ୍ୟୋତିଷଜ୍ଞାନ, ଭୂଗୋଳଜ୍ଞାନ, ଆୟୁର୍ବେଦ ଜ୍ଞାନ, ନାରୀରଶ୍ରେଷ୍ଠତା ପ୍ରତିପାଦନ, ସମାଜଚିତ୍ର, ପ୍ରକୃତିଚିତ୍ର – ପ୍ରତ୍ୟେକ କ୍ଷେତ୍ରରେ ଅପୂର୍ବ ସଫଳତା ଲାଭ କରିଛି । ଉପେନ୍ଦ୍ର ଭଞ୍ଜ କେବଳ କବି ସମ୍ରାଟ ନୁହଁନ୍ତି, ସେ ମଧ୍ୟ ଶବ୍ଦ ସମ୍ରାଟ ଓ ସଙ୍ଗୀତ ସମ୍ରାଟ ରୂପେ ସୁପରିଚିତ । ଏଠାରେ ସ୍ମରଣଯୋଗ୍ୟ ଯେ ଆଚାର୍ଯ୍ୟ ଭାମହ 'କାବ୍ୟାଳଙ୍କାର' ଗ୍ରନ୍ଥରେ ଉଲ୍ଲେଖ କରିଛନ୍ତି–

"ଉପେୟୁଷାମପି ଦିବଂ ସନ୍ନିବନ୍ଧବିଧାୟିନାମ୍
ଆସ୍ତଏବ ନିରାତଙ୍କଂ କାନ୍ତଂ କାବ୍ୟମୟଂ ବପୁଃ ।
ରୁଣଦ୍ଧି ରୋଦସୀ ଚାସ୍ୟ ଯାବତ୍ କୀର୍ତ୍ତିରନଶ୍ୱରୀ
ତାବତ୍ କିଳାୟମଧ୍ୟାସ୍ତେ ସୁକୃତୀ ବୈବୁଧଂ ପଦମ୍ ।"

ଅର୍ଥାତ୍ ଉତ୍ତମ କାବ୍ୟ ପ୍ରଣୟନ କରିଥିବା ସତ୍‌କବି ମୃତ୍ୟୁବରଣ କଲେ ମଧ୍ୟ ତାଙ୍କର ରମଣୀୟ କାବ୍ୟଶରୀର ନିର୍ଭୟ ହୋଇଥାଏ । ଦିବଂଗତ କବିର ଭୌତିକ ଶରୀର ନଷ୍ଟ ହୁଏ ସତ, କିନ୍ତୁ ତାହାର କାବ୍ୟାତ୍ମକ ଶରୀର ଜରା-ମୃତ୍ୟୁ ଭୟ ନଥାଏ । ଅର୍ଥାତ୍ ଶ୍ରେଷ୍ଠ କାବ୍ୟ ପୁରାତନ ହୁଏନାହିଁ ବା ନଷ୍ଟ ହୁଏନାହିଁ । ରସିକ ହୃଦୟ ସିଂହାସନରେ ଆସୀନ ହୋଇଥାଏ । ପୁନଶ୍ଚ ଯେତେଦିନ ପର୍ଯ୍ୟନ୍ତ ସତ୍ କବିର ଯଶ ଆକାଶ ଓ ପୃଥିବୀକୁ ଆଲୋକିତ କରୁଥାଏ, ସେ ପର୍ଯ୍ୟନ୍ତ ସେ ପୁଣ୍ୟକର୍ମା ଦେବପଦକୁ ଅଳଙ୍କରଣ କରେ । ଏହି ଉକ୍ତିଟି ଉପେନ୍ଦ୍ରଙ୍କ ପ୍ରତି ପ୍ରଯୁଜ୍ୟ ।

ଉତ୍କଳୀୟ ସାରସ୍ୱତ ଜଗତରେ କାଳଜୟୀ ସାରସ୍ୱତ ସାଧକ ଉପେନ୍ଦ୍ର ଭଞ୍ଜ କବିଗୁରୁ ରୂପେ ପ୍ରତିଷ୍ଠା ଲାଭ କରିଛନ୍ତି । ତାଙ୍କ ସର୍ଜନାଶୀଳତାର ପଟାନ୍ତର ନାହିଁ । ଓଡ଼ିଶାର ସମାଜ, ସଂସ୍କୃତି ଓ ପରମ୍ପରାର ସେ ବଳିଷ୍ଠ ରୂପକାର । ଭଞ୍ଜ ସାହିତ୍ୟ କାଳରୁ କାଳୋତ୍ତୀର୍ଣ୍ଣ ହୋଇପାରିଛି । ବାଣୀପୁତ୍ର ଉପେନ୍ଦ୍ର ଉତ୍କଳୀୟ ସାରସ୍ୱତ ଜଗତରେ ଯଥାର୍ଥରେ ମହାକବି । କବି ଉପେନ୍ଦ୍ର ତାଙ୍କର ଶ୍ରମ, ସାଧନା, ଶାସ୍ତ୍ରାନୁଶୀଳନ, ପ୍ରତିଭା ଓ ବିଭୁକୃପା ବଳରେ ଅସଂଖ୍ୟ ଦୁର୍ଲଭ ଗ୍ରନ୍ଥ ରଚନା କରି ଓଡ଼ିଆ ସାହିତ୍ୟକୁ ସମୃଦ୍ଧ କରିଛନ୍ତି । ଅପୂର୍ବ ଶାବ୍ଦିକତା, ଅର୍ଥଗୌରବ, ଉପମାରବୈଚିତ୍ର୍ୟ, ପୌରାଣିକତା ଆଳଂକାରିକତା, ସଙ୍ଗୀତର ଅପୂର୍ବ ମୂର୍ଚ୍ଛନା– ତଥା ରସ, ଗୁଣ, ଧ୍ୱନି, ବକ୍ରୋକ୍ତି, ଏସବୁର ସମନ୍ୱୟ ଯୋଗୁଁ ଭଞ୍ଜ ସାହିତ୍ୟ ଯୁଗପତ୍ ରସଜ୍ଞ ବିଜ୍ଞ ଜନମାନଙ୍କୁ ଅପୂର୍ବ ଭାବରସରେ ଆମୋଦିତ କରିଆସିଛି । ପ୍ରଫେସର ବାଉରୀବନ୍ଧୁ କର ଯଥାର୍ଥରେ ଲେଖିଛନ୍ତି– "ଉପେନ୍ଦ୍ର ଭଞ୍ଜ ଓଡ଼ିଆ ଭାଷାରେ ସଂସ୍କୃତ ସାହିତ୍ୟଠାରୁ ଅଧିକ ମନୋଜ୍ଞ ଭାସ୍କର୍ଯ୍ୟପୂର୍ଣ୍ଣ କାବ୍ୟରଚନା କରିଛନ୍ତି । ତାଙ୍କ କାବ୍ୟକବିତା ଶବ୍ଦର ବିରାଟ ମନ୍ଦିର । ପୁଣି ସେ ମନ୍ଦିରରେ ରୂପଶ୍ରୀ ନାୟିକାମାନଙ୍କର ସମାବେଶ । ଏ ମନ୍ଦିରର ତୁଳନା ସମଗ୍ର ଓଡ଼ିଆ ସାହିତ୍ୟରେ ନାହିଁ । ସେଥିସକାଶେ ବୋଧହୁଏ ସେ ହେଉଛନ୍ତି କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ ।" ବାସ୍ତବିକ୍ ଭଞ୍ଜସାହିତ୍ୟ କ୍ଲାସିକ୍ ସାହିତ୍ୟରେ ପରିଣତ ହୋଇପାରିଛି । ସୁତରାଂ ଓଡ଼ିଶାରେ ଭଞ୍ଜସାହିତ୍ୟ ଚର୍ଚ୍ଚାର ପରମ୍ପରା ଏବେ ବି ଅପ୍ରତିହତ। ବାଣୀପୁତ୍ର ଉପେନ୍ଦ୍ର ଯଥାର୍ଥରେ ଏକ କାଳଜୟୀ ପ୍ରତିଭା ।



## ସହାୟକ ଗ୍ରନ୍ଥସୂଚୀ ....

ଅଧିକାରୀ, ପରମାନନ୍ଦ (ସମ୍ପାଦନା) ଆମ ଉପେନ୍ଦ୍ରଭଞ୍ଜ ଆମ ସାହିତ୍ୟ, ଡାଇମଣ୍ଡ ପବ୍ଲିଶର୍ସ, କଟକ, ୧୯୭୯ ।

ଆଚାର୍ଯ୍ୟ, (ଡକ୍ଟର) ସୁଦର୍ଶନ – ଓଡ଼ିଆ କାବ୍ୟ କୌଶଳ ।

ଆଚାର୍ଯ୍ୟ, ଡକ୍ଟର ବୃନ୍ଦାବନ ଚନ୍ଦ୍ର – ଓଡ଼ିଆ ସାହିତ୍ୟର ସଂକ୍ଷିପ୍ତ ପରିଚୟ ।

କର, ଡକ୍ଟର ବାଉରୀବନ୍ଧୁ – ଓଡ଼ିଆ ସାହିତ୍ୟର ଇତିହାସ ।

ଦାଶ, ଦାମୋଦର – ଉପେନ୍ଦ୍ର ଭଞ୍ଜ ଜୀବନୀ, ୧୯୬୬ ।

ଦାସ, ପଣ୍ଡିତ ଗୋପବନ୍ଧୁ – ଅବକାଶ ଚିନ୍ତା, ୨୦୧୨ ।

ନନ୍ଦ, ଚନ୍ଦ୍ରଶେଖର – ସାର୍ବଜନିକ ସାର୍ବକାଳିକ କବି ଉପେନ୍ଦ୍ର ଭଞ୍ଜ, ବିଦ୍ୟାପୁରୀ, ୨୦୦୬ ।

ପଟ୍ଟନାୟକ, ଅନନ୍ତ ପଦ୍ମନାଭ – କବି ସମ୍ରାଟ ଉପେନ୍ଦ୍ରଭଞ୍ଜ, ଉତ୍କଳ ବିଶ୍ୱବିଦ୍ୟାଳୟ ।

ପାଢ଼ୀ, ବେଣୀମାଧବ (ଡକ୍ଟର) – ଭଞ୍ଜୀୟ କାବ୍ୟଭାବନା, ଗ୍ରନ୍ଥ ମନ୍ଦିର, ୨୦୧୧ ।

ବଳ, ଗଙ୍ଗାଧର (ଡକ୍ଟର) – ଉପେନ୍ଦ୍ର ଭଞ୍ଜ, ସାହିତ୍ୟ ଅକାଡ଼େମି, ୨୦୦୨ ।

ବ୍ରହ୍ମା, ଗୋରୀକୁମାର – (ସମ୍ପାଦିତ) ବୈଦେହୀଶବିଳାସ ।

ଭଞ୍ଜ, ଉପେନ୍ଦ୍ର – ଲାବଣ୍ୟବତୀ

ଭଞ୍ଜ, ଉପେନ୍ଦ୍ର – କୋଟି ବ୍ରହ୍ମାଣ୍ଡସୁନ୍ଦରୀ

ଭଞ୍ଜ, ଉପେନ୍ଦ୍ର – ପ୍ରେମ ସୁଧାନିଧି

ଭଞ୍ଜ, ଉପେନ୍ଦ୍ର –. ରସଲେଖା

ଭଞ୍ଜ, ଉପେନ୍ଦ୍ର – ସୁଭଦ୍ରାପରିଣୟ

ଭଞ୍ଜ, ଉପେନ୍ଦ୍ର – କଳା କଉତୁକ

ଭଞ୍ଜ, ଉପେନ୍ଦ୍ର – ଛାନ୍ଦଭୂଷଣ

ଭଞ୍ଜ, ଉପେନ୍ଦ୍ର – ଗୀତାଭିଧାନ

ମହାପାତ୍ର, ପ୍ରେମାନନ୍ଦ (ଡକ୍ଟର) ଉପେନ୍ଦ୍ର ଭଞ୍ଜ ଓ ସାରସ୍ୱତ ପୀଠ : ମାଳିସାହି ।

ମହାନ୍ତି, ବିଚିତ୍ରାନନ୍ଦ – ଭଞ୍ଜକବି ପରିଚୟ, କମଳାବୁକ୍‌ଷ୍ଟୋର, ୧୯୫୮ ।

ମହାପାତ୍ର, କେଦାରନାଥ – ଖୁରୁଧା ଇତିହାସ ।

ମହାପାତ୍ର, ଚକ୍ରଧର – ଯଦୁମଣି ଗ୍ରନ୍ଥାବଳୀ

ମହାପାତ୍ର, ଡକ୍ଟର ପ୍ରେମାନନ୍ଦ – 'ଓଡ଼ିଆ ସାହିତ୍ୟକୁ ନୟାଗଡ଼ ଜିଲାର ଅବଦାନ' (ଅପ୍ରକାଶିତ ପିଏଚ୍.ଡି. ଥେସିସ୍) ।

ମହାପାତ୍ର, ଡକ୍ଟର ପ୍ରେମାନନ୍ଦ – ମନସ୍ୱୀସାଧକ ପଣ୍ଡିତ ବିନାୟକମିଶ୍ର, ୨୦୦୮ ।

ମହାରଣା, ସୁରେନ୍ଦ୍ରକୁମାର – ଓଡ଼ିଆ ସାହିତ୍ୟର ଇତିହାସ, ୨୦୧୦ ।

ମିଶ୍ର, କିଶୋର ଚନ୍ଦ୍ର – ଉପେନ୍ଦ୍ର ଭଞ୍ଜଙ୍କ କାବ୍ୟରେ ଉପମା : ଏକ ଅଧ୍ୟୟନ, ୧୯୮୭ ।

ମିଶ୍ର, ଜୟକୃଷ୍ଣ – ଉପେନ୍ଦ୍ର ଭଞ୍ଜ : ଏକ ସମୀକ୍ଷା, ଓଡ଼ିଶା ରାଜ୍ୟ ପାଠ୍ୟପୁସ୍ତକ ପ୍ରଣୟନ ଓ ପ୍ରକାଶନ ସଂସ୍ଥା, ଭୁବନେଶ୍ୱର – ୧୯୮୭ ।

ମିଶ୍ର, ପଣ୍ଡିତ ବିନାୟକ – ଓଡ଼ିଆ ସାହିତ୍ୟର ଇତିହାସ, ୧୯୨୮ ।

ମିଶ୍ର, କବିଭୂଷଣ ଆନନ୍ଦ ଚନ୍ଦ୍ର – କବି ଯଦୁମଣି ଓ ଅନ୍ୟାନ୍ୟ ଗଦ୍ୟ, ୧୯୫୮ ।

ରଥ, ବିଧୁପ୍ରଭା (ଡକ୍ଟର) – ଲାବଣ୍ୟବତୀର ସୌନ୍ଦର୍ଯ୍ୟ ତାତ୍ତ୍ୱିକ ଅନୁଶୀଳନ, ପୃଥ୍ୱୀପନ୍ନା ପ୍ରକାଶନୀ, ୨୦୦୬ ।

ଶତପଥୀ, ପ୍ରଭାକର – ବାଣୀ ବରପୁତ୍ର ମନସ୍ୱୀ ମହାକବି ଉପେନ୍ଦ୍ର, ୧୯୯୫ ।

ଶତପଥୀ, ଶ୍ରୀଧର – ଭଞ୍ଜ ସନ୍ଦର୍ଭ, ୧୯୭୫ ।

ସାହୁ, ବାଉରିବନ୍ଧୁ (ଡକ୍ଟର) – କବି ସମ୍ରାଟଙ୍କ କାବ୍ୟକୃତି, ରାକା ପ୍ରକାଶିନି, ବ୍ରହ୍ମପୁର, ୧୯୯୭ ।

ସିଂହ, ଜଗବନ୍ଧୁ – ପ୍ରାଚୀନ ଉତ୍କଳ (୨ୟ ଭାଗ), ୧୯୮୨ ।

## ପତ୍ରପତ୍ରିକା –

୧. ବହିତ୍ର – ୪ – ବୈଦେହୀଶ ବିଳାସ ବିଶେଷାଙ୍କ, ସଂ – ନିଶାକର ପାଢ଼ୀ, ୧୯୮୪ ।

୨. ବ୍ରହ୍ମକଳ୍ପ – ଦ୍ୱୈ – ମାସିକ ଆଧ୍ୟାତ୍ମିକ ସାହିତ୍ୟ ପତ୍ରିକା, ନଭେମ୍ବର, ଡିସେମ୍ବର, ୨୦୦୩ ।

୩. ଭଞ୍ଜପ୍ରଭା – କଳିଙ୍ଗଭାରଣ, କଟକ, ଦ୍ୱିତୀୟ ସଂସ୍କରଣ, ୧୯୭୫ ।

୪. ଶତରୂପା – ମାଳିସାହି ପ୍ରାଥମିକ ବିଦ୍ୟାଳୟ ଶତବାର୍ଷିକୀ ସ୍ମରଣିକା, ୨୦୦୪ ।

୫. ଶ୍ରଦ୍ଧା, କୃଷ୍ଣଚନ୍ଦ୍ର କ୍ଲବ, ନୟାଗଡ଼, ମୁଖପତ୍ର, ୨୦୧୪ ।







ଡକ୍ଟର ପ୍ରେମାନନ୍ଦ ମହାପାତ୍ର ସାଂପ୍ରତିକ ସମୟର ଜଣେ ପ୍ରତିଭାବାନ ସାରସ୍ୱତ ଗବେଷକ, ପ୍ରାବନ୍ଧିକ, ସମାଲୋଚକ, ସୁବକ୍ତା ଓ କବି । ସେ ଓଡ଼ିଶା ସରକାରଙ୍କ ଉଚ୍ଚଶିକ୍ଷା ବିଭାଗ ଅଧୀନରେ ବିଭିନ୍ନ ସରକାରୀ ମହାବିଦ୍ୟାଳୟରେ ସଫଳତାର ସହିତ ଅଧ୍ୟାପନା କରି ଆସୁଛନ୍ତି ।

ବିକ୍ରମଦେବ କଲେଜ ଜୟପୁର, ସରକାରୀ ମହାବିଦ୍ୟାଳୟ ଭବାନୀପାଟଣା, ସରକାରୀ ମହିଳା ମହାବିଦ୍ୟାଳୟ ଫୁଲବାଣୀ, ବି.ଜେ.ବି. ସ୍ୱୟଂଶାସିତ ମହାବିଦ୍ୟାଳୟ ଭୁବନେଶ୍ୱର ଠାରେ ଅଧ୍ୟାପନା କରିଥିବା ସହ ସଂପ୍ରତି ରେଭେନ୍ସା ବିଶ୍ୱବିଦ୍ୟାଳୟ କଟକ ଠାରେ ଓଡ଼ିଆ ବିଭାଗର ପ୍ରାଧ୍ୟାପକ ଭାବରେ କାର୍ଯ୍ୟରତ । ଶ୍ରୀ ମହାପାତ୍ର 'ଓଡ଼ିଆ ସାହିତ୍ୟକୁ ନୟାଗଡ଼ ଜିଲ୍ଲାର ଅବଦାନ' ଶୀର୍ଷକ ସନ୍ଦର୍ଭ ପ୍ରସ୍ତୁତ କରି ଉତ୍କଳ ବିଶ୍ୱବିଦ୍ୟାଳୟ, ଭୁବନେଶ୍ୱରରୁ ପିଏଚ୍.ଡି. (Ph.D.) ଡିଗ୍ରୀ ଲାଭ କରିଛନ୍ତି । ଇତିମଧ୍ୟରେ 'ମନସ୍ୱୀ ସାଧକ: ପଣ୍ଡିତ ବିନାୟକ ମିଶ୍ର', 'ଉପେନ୍ଦ୍ର ଭଞ୍ଜ ଓ ସାରସ୍ୱତ ପୀଠ: ମାଳିସାହି', 'ନୟାଗଡ଼ ଜିଲ୍ଲାର କଥିତ ଭାଷା: ଏକ ସର୍ବେକ୍ଷଣ', 'କହେ ଟାଡ଼ିସରୁ ବାଇ', 'ଓଡ଼ିଶାର କଥିତ ଭାଷା ପରିକ୍ରମା', 'ଓଡ଼ିଆ ସାରସ୍ୱତ ସ୍ତବକ' ଶୀର୍ଷକ ଗବେଷଣାଧର୍ମୀ ପୁସ୍ତକ ପ୍ରକାଶିତ ହୋଇଛି ।

'କାଳଜୟୀ ପ୍ରତିଭା କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ' ପୁସ୍ତକଟି ତାଙ୍କର ଅଧ୍ୟୟନ ଓ ଗବେଷଣାର ଫଳଶ୍ରୁତି । ପୁସ୍ତକଟି ଛାତ୍ରଛାତ୍ରୀ, ଗବେଷକ ଗବେଷିକା ଏବଂ ସୁଧୀ ପାଠକ ମହଲରେ ଆଦୃତି ଲାଭ କରିବ ବୋଲି ଆଶା କରାଯାଏ ।

– ପ୍ରକାଶକ

ISBN-81-8119-032-7




ଚିନ୍ମୟ ପ୍ରକାଶନ